# ସୃଷ୍ଟି ଓ ସମୀକ୍ଷା

୧୯୮୦-୮୧

ଖ୍ରୀଷ୍ଟ
ମହାବିଦ୍ୟାଳୟ
କଟକ

# ସୃଷ୍ଟି ଓ ସମୀକ୍ଷା

( ଭକ୍ତକବି ମଧୁସୂଦନ ରାଓ ସ୍ମରଣିକା )

୧୯୮୦-୮୧

( ଖ୍ରୀଷ୍ଟ ମହାବିଦ୍ୟାଳୟ 'ଓଡ଼ିଆ ସାହିତ୍ୟ ସମାଜ'ର ମୁଖପତ୍ର )

ସଂପାଦନା :

ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.

ରିଡ଼ର ଓ ମୁଖ୍ୟ ଅଧ୍ୟାପକ

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ-୧

# ଓଡ଼ିଆ ସାହିତ୍ୟ ସମାଜ ଓ ଓଡ଼ିଆ ସେମିନାର
## ୧୯୮୦-୮୧

**ସଭାପତି :**
ଭାରପ୍ରାପ୍ତ ଅଧ୍ୟକ୍ଷ—ପ୍ରାଧ୍ୟାପକ ଶ୍ରୀ ମୃତ୍ୟୁଞ୍ଜୟ ନାୟକ, ଏମ୍. ଏ.

**ଉପସଭାପତି :**
ପ୍ରାଧ୍ୟାପକ—ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.

**ସଂପାଦକ : ସାହିତ୍ୟ ସମାଜ**
ଶ୍ରୀ ଅମିୟ କୁମାର ବିଶ୍ୱାଳ ( ଚତୁର୍ଥ ବର୍ଷ କଳା )

**ସହ ସଂପାଦିକା : ସାହିତ୍ୟ ସମାଜ**
କୁମାରୀ କବିତା ଖଟାଇ ( ତୃତୀୟ ବର୍ଷ ଓଡ଼ିଆ ଅନର୍ସ )

**ସଂପାଦକ : ଓଡ଼ିଆ ସେମିନାର**
ଶ୍ରୀ ମନୋଜକୁମାର ସାମନ୍ତରାୟ ( ଚତୁର୍ଥ ବର୍ଷ ଓଡ଼ିଆ ଅନର୍ସ )

**ସହ ସଂପାଦକ : ଓଡ଼ିଆ ସେମିନାର**
ଶ୍ରୀ ଶକ୍ତିପ୍ରସନ୍ନ ସାମନ୍ତରାୟ ( ତୃତୀୟବର୍ଷ ଓଡ଼ିଆ ଅନର୍ସ )

# ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକଗଣ

ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ., ମୁଖ୍ୟ ଅଧ୍ୟାପକ ଓ ପ୍ରାଧ୍ୟାପକ
ଡକ୍ଟର ଦେବେନ୍ଦ୍ର ମହାନ୍ତି, ଏମ୍. ଏ. ପିଏଚ୍. ଡି. ପ୍ରାଧ୍ୟାପକ
ଶ୍ରୀ ମୃତ୍ୟୁଞ୍ଜୟ ନାୟକ, ଏମ୍. ଏ. ( ପ୍ରାଧ୍ୟାପକ ଓ ଭାରପ୍ରାପ୍ତ ଅଧ୍ୟକ୍ଷ )
ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଏମ୍. ଏ. (ପ୍ରାଧ୍ୟାପକ)
ଶ୍ରୀ ମହେଶ୍ୱର ମହାନ୍ତି, ଏମ୍. ଏ. (ଅଧ୍ୟାପକ)
ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ, ଏମ୍. ଏ. (ଅଧ୍ୟାପକ)
ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଦାସ, ଏମ୍. ଏ. ( ଅଧ୍ୟାପକ )
ଶ୍ରୀ ପ୍ରାଣରଞ୍ଜନ ଦାସ, ଏମ୍. ଏ. ( ଅଧ୍ୟାପକ )
ଶ୍ରୀ ରଙ୍ଗାଧର ନାୟକ, ଏମ୍. ଏ. ( ଅଧ୍ୟାପକ )

ସଙ୍ଗଚ୍ଛଧ୍ୱଂ ସମ୍ବଦଧ୍ୱଂ ସବୋମନାଂସି ଜାନତାମ୍ ।
ସମାନୋ ମନ୍ତ୍ରଃ ସମିତି ସମାନୀ, ସମାନଂ ମନଃ ସହ ଚିତ୍ତମେଷାମ୍ ।
ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ, ସମାନେନ ବୋ ହବିଷା ଜୁହୋମି ।
ସମାନୀବ ଆକୂତିଃ ସମାନା ହୃଦୟାନି ବଃ ।
ସମାନ ମସ୍ତୁବୋମନୋ, ଯଥା ବଃ ସୁସହାସତି ।

( ଋଗ୍‌ବେଦ ସଂହିତା—୮।୮।୪୯ )

ତୁମ୍ଭେମାନେ ପରସ୍ପର ମିଳିତ ହୁଅ, ବିରୋଧ ପରିତ୍ୟାଗ କରି ପରସ୍ପର ଏକବିଧ ବାକ୍ୟ ବ୍ୟବହାର କର ଏବଂ ଏକପ୍ରକାର ଅର୍ଥ ବୁଝ । ସମସ୍ତଙ୍କର ସମାନ ମନ୍ତ୍ର, ସମାନ ପ୍ରାପ୍ତି, ସମାନ ଅନ୍ତଃକରଣ ଓ ସମାନ ଜ୍ଞାନ ହେଉ । ପରସ୍ପର ସମସ୍ତେ ଏକ ଉଦ୍ଦେଶ୍ୟରେ ଏକୀଭୂତ ହୁଅ ଏବଂ ସମାନ ହୃଦୟ ଓ ସମାନ ସଂକଳ୍ପ ହୁଅ । ଏହା ପ୍ରକୃତିର ନିୟମ ଏବଂ ଏହାହିଁ ଧର୍ମ ।

# ସଂପାଦକୀୟ

## ଅଭିନନ୍ଦନ

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଶକ୍ତିଶାଳୀ କବି ଓ ଚିନ୍ତାନାୟକ ଶ୍ରୀ ଅନନ୍ତ ପଟ୍ଟନାୟକ ତାଙ୍କର 'ଅବାନ୍ତର' କବିତା ପୁସ୍ତକ ପାଇଁ ଚଳିତ ବର୍ଷର 'କେନ୍ଦ୍ର ସାହିତ୍ୟ ଏକାଡ଼େମୀ' ପୁରସ୍କାର ପାଇଅଛନ୍ତି । ଶ୍ରୀ ପଟ୍ଟନାୟକ ହେଉଛନ୍ତି ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର । ସବୁଜ ଆନ୍ଦୋଳନର ପରବର୍ତ୍ତୀ ଅଧ୍ୟାୟରେ ଯେଉଁ ସାହିତ୍ୟ-ରଥିଗଣ ଓଡ଼ିଆ ସାହିତ୍ୟରେ ନୂତନ ଆଶା ଓ ଉଦ୍ଦୀପନା ସୃଷ୍ଟି କରିଥିଲେ, ନୂତନ ପରୀକ୍ଷାର ପ୍ରବାହ ମଧ୍ୟରେ ଯେଉଁମାନେ ଏ ଦେଶର ସାଂସ୍କୃତିକ ଧାରାକୁ ଉଜ୍ଜ୍ୱଳ କରି ରଖିଥିଲେ ଏବଂ ପ୍ରତିକ୍ରିୟାଶୀଳ ଅବସାଦଗ୍ରସ୍ତ ସମାଜ ଜୀବନରେ ଯେଉଁମାନେ ନୂତନ ଭାବ ସଞ୍ଚାର କରି ପ୍ରାଣସ୍ପନ୍ଦନ କରି ପାରିଥିଲେ ସେହି ସାହିତ୍ୟରଥୀମାନଙ୍କ ମଧ୍ୟରେ କବି ଅନନ୍ତ ପଟ୍ଟନାୟକ ଥିଲେ ଜଣେ ଶକ୍ତିଶାଳୀ ମଙ୍ଗୁଆଳ । ପ୍ରଚାର-ବିମୁଖ ଏହି ଶକ୍ତିଶାଳୀ କଳାକାର ତେଣୁ ସରକାରୀ ସାହିତ୍ୟିକ ଦରବାରରେ ଆଜିପର୍ଯ୍ୟନ୍ତ ସ୍ୱୀକୃତି ନପାଇବା ବିଡ଼ମ୍ବିତ ଘଟଣା ହେଲେହେଁ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ସାହିତ୍ୟ ଏକାଡେମୀ ବିଳମ୍ବରେ ହେଉ ପଛକେ, ଏଇ କୃତୀ ସାଧକଙ୍କୁ ସ୍ୱୀକୃତି ପ୍ରଦାନ କରି ଯଥାର୍ଥ ଯୋଗ୍ୟ-ପୂଜା କରିଅଛନ୍ତି । ଗତ ୨୭-୨-୧୯୮୧ ତାରିଖରେ ଦିଲ୍ଲୀ ନଗରୀରେ ଏକ ନିର୍ଭୁମ୍ବର୍ଗ ସାରସ୍ୱତ ସମାବେଶରେ ଉପାୟନ ଗ୍ରହଣ କରି କବି ଅନନ୍ତ ପଟ୍ଟନାୟକ ଜାତି ଉଦ୍ଦେଶ୍ୟରେ ଯେଉଁ ବାର୍ତ୍ତା ପାଠ କରିଥିଲେ ତାହା 'ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । କବି ପଟ୍ଟନାୟକ ଭାଷଣ ପ୍ରସଙ୍ଗରେ ଭାରତର ସୁଧିମଣ୍ଡଳୀଙ୍କୁ ଆହ୍ୱାନ ଜଣାଇଥିଲେ ଏହିପରି—

"The critics are in the habit of dividing the language of poetry in to historical periods in structural fragments. But poetry is one and indivisible. × × × The function of heart preceeded the brain. The absolute urge of the human hearts is for eternal quest of eternal values. × × × I believe poetry is the very breath of life. If the artificial divisions are neglected our hearts can beat in unison and we can save society from the base passions of man and not Communicate in the languages of nations and regions but in the eternal and ever ascending speech of the entire mankind which is the language of life, peace and harmony."

ଏହି ଅବସରରେ କବି ଅନନ୍ତ ପଟ୍ଟନାୟକଙ୍କୁ ଆମେ ଅଭିନନ୍ଦନ ଜ୍ଞାପନ କରୁଅଛୁ ।

## ଭାରତୀୟ ଭାଷା ପରିଷଦ

ଗତ ୨୮।୩।୮୯ ଓ ୨୯।୩।୮୯ ଦୁଇଦିନ କଲିକତା ନଗରୀ ଅନ୍ତର୍ଗତ ସେକ୍ସପିୟର ସରଣୀଠାରେ ଭାରତୀୟ ଭାଷା ପରିଷଦ ଅଡିଟୋରିୟମ ପରିସର ମଧ୍ୟରେ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଯାଇଛି । ଏହାର ନିର୍ଦ୍ଦେଶକ ଥିଲେ ସୁବିଖ୍ୟାତ ହିନ୍ଦୀ ସାହିତ୍ୟିକ ଡ. ପ୍ରଭାକର ମାଚ୍‌ୱେ । ଏହି ଆଲୋଚନା ଚକ୍ରର ଆଲୋଚ୍ୟ ବିଷୟ ଥିଲା ଯଥାକ୍ରମେ "କବିତାର ଭିତ୍ତିଭୂମି" ଓ "ଗଦ୍ୟ ସାହିତ୍ୟ—ବାସ୍ତବତାର ସୀମା" । ଓଡ଼ିଶାର ବହୁ ଖ୍ୟାତନାମା କବି ଓ ସାହିତ୍ୟିକ ଏହି

ଆଲୋଚନା ଚକ୍ରରେ ଲିଖିତ ପ୍ରବନ୍ଧ ପାଠ କରି ଭାରତୀୟ ସାହିତ୍ୟ ପରି-ପ୍ରେକ୍ଷୀରେ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ କରିଥିଲେ । ଆନ୍ତଃପ୍ରାଦେଶିକ ସ୍ତରରେ ଭାବଗତ ସଂହତି ଓ ବୁଝାମଣା ପାଇଁ ଏହି ପ୍ରକାର ସାହିତ୍ୟିକ-ସମାରୋହ ଯେ ଯଥେଷ୍ଟ ଅନୁକୂଳ ବାତାବରଣ ସୃଷ୍ଟି କରିବ ଏଥିରେ ସନ୍ଦେହର ଅବକାଶ ନାହିଁ । ଏହି ସଭାରେ ପଠିତ ପ୍ରବନ୍ଧ ଗୁଡ଼ିକ ପୁସ୍ତକା-କାରରେ ପ୍ରକାଶିତ ହେଲେ ସୁଧୀ ପାଠକମାନେ ଅନୁପ୍ରାଣିତ ହେବାପାଇଁ ସୁଯୋଗ ଲାଭ କରିବେ ।

## ଓଡ଼ିଶା ସାହିତ୍ୟ ଏକାଡେମୀ ଆଲୋଚନା ଚକ୍ର

ଗତ ୧୪ । ୩ । ୮୨ ଏବଂ ୧୫ । ୩ । ୮୧ ଏହି ଦୁଇଦିନ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଫୁଲବାଣୀ ସହରର ମୋହନ ଦାସ କରମ ଚାନ୍ଦ ସାଂସ୍କୃତିକ ପରିଷଦଠାରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ଆଲୋଚନାର ବିଷୟ ଥିଲା "ଆଧୁନିକ ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ।" ଆଲୋଚନା ଚକ୍ରରେ ବହୁ ପ୍ରତିଷ୍ଠିତ ଲେଖକ ନିଜ ନିଜର ପ୍ରବନ୍ଧ ପାଠ କରି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଆଲୋଚନା-ପ୍ରବନ୍ଧ ଗୁଡ଼ିକର ଶୀର୍ଷକ ଥିଲା—"ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ଗଠନ-ଶୈଳୀ' । 'ଓଡ଼ିଆ ଐତିହାସିକ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ', 'ଓଡ଼ିଆ ସାମାଜିକ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ,' 'ଓଡ଼ିଆ ରାଜନୈତିକ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ', 'ମନସ୍ତତ୍ତ୍ୱଭିତ୍ତିକ ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ', 'ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ କୃଷକର ଚିତ୍ର,' 'ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର-ଗଳ୍ପରେ ଶ୍ରମିକର ଚିତ୍ର', 'ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ ଅନୁନ୍ନତ ସଂପ୍ରଦାୟର ଚିତ୍ର', 'ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ ମଧ୍ୟବିତ୍ତ ଶ୍ରେଣୀର ଚିତ୍ର', 'ଓଡ଼ିଆ ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ ଅଭିଜାତ ଶ୍ରେଣୀର ଚିତ୍ର', 'ଗୋପୀନାଥ ମହାନ୍ତିଙ୍କ କ୍ଷୁଦ୍ର ଗଳ୍ପ ।" ଓଡ଼ିଶା ସାହିତ୍ୟ ଏକାଡେମୀ ଏପରି ଆଲୋଚନାଚକ୍ର ଅନୁଷ୍ଠାନ କରି ଏକ ପ୍ରୟୋଜନୀୟ କାର୍ଯ୍ୟ କରିଅଛନ୍ତି । ଏହି

ଆଲୋଚନା ପ୍ରବନ୍ଧଗୁଡ଼ିକ 'କୋଣାର୍କ'ର ଏକ ସ୍ୱତନ୍ତ୍ର ସଂଖ୍ୟାରେ ପ୍ରକାଶିତ ହେଲେ ଦେଶବାସୀ ଉପକୃତ ହେବେ ।

## ମଧୁ-ସ୍ମରଣିକା

ଚଳିତ ବର୍ଷର 'ସୃଷ୍ଟି ଓ ସମୀକ୍ଷା' ଭକ୍ତକବି ମଧୁସୂଦନ ରାଓଙ୍କ ସମ୍ପର୍କରେ ଏକ ଆଲୋଚନା-ସଙ୍କଳନ । ମହାବିଦ୍ୟାଳୟ ଓଡ଼ିଆ ସେମିନାର ଆନୁକୂଲ୍ୟରେ ଅନୁଷ୍ଠିତ ଆଲୋଚନା ଚକ୍ରରେ ଏହି ପ୍ରବନ୍ଧଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ପାଠ କରାଯାଇଥିଲା । ଏହି ସଙ୍କଳନରେ ପ୍ରକାଶ ପାଇଁ ଆମ କଲେଜ ପରିବାର ବାହାରେ ଯେଉଁ ଲେଖକ ଲେଖିକାଗଣ ସେମାନଙ୍କର ଆଲୋଚନା-ପ୍ରବନ୍ଧ ପ୍ରକାଶ ପାଇଁ ଦେଇଅଛନ୍ତି, ସେମାନଙ୍କୁ କୃତଜ୍ଞତା ଜଣାଉଅଛୁ । □□□

# ସୂଚୀପତ୍ର



---

# ବ୍ରହ୍ମଜ୍ଞ ମଧୁସୂଦନ

ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥ

[ ଓଡ଼ିଆ ସାହିତ୍ୟର ସତ୍ୟବାଦୀକାଳରେ ପଣ୍ଡିତ ମୃତ୍ୟୁଞ୍ଜୟ ଜଣେ ଶକ୍ତିଶାଳୀ ସାହିତ୍ୟ ସମାଲୋଚକ ଥିଲେ । ସାରଳାଦାସଙ୍କ ସମ୍ପର୍କରେ ତାଙ୍କ ଲିଖିତ 'ସାରଳାଚରିତ' ଗ୍ରନ୍ଥାକାରରେ ପ୍ରକାଶିତ ଏବଂ ସୁଧିଜନମାନଙ୍କର ଦୃଷ୍ଟି ଆକର୍ଷଣ କରିଅଛି । ଭକ୍ତକବି ଅଭିମନ୍ୟୁ ସାମନ୍ତ ସିଂହାର ଏବଂ ଭକ୍ତ-କବି ମଧୁସୂଦନ ରାଓଙ୍କ ବିଷୟରେ ତାଙ୍କର ଆଲୋଚିତ ପ୍ରବନ୍ଧଗୁଡ଼ିକ ଧାରାବାହିକ ଭାବରେ ସେ କାଳର 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଠାରେ ମଧୁସୂଦନ ପ୍ରବନ୍ଧର କିୟଦଂଶ ପ୍ରକାଶ କରାଗଲା— ଏହା ଉତ୍କଳ ସାହିତ୍ୟ ୧୮ଶ ଭାଗ ମାର୍ଗଶିର ୧୩୨୨, ୮ମ ସଂଖ୍ୟାରୁ ଗ୍ରହଣ କରାଯାଇଛି । ]

—ସଂପାଦକ

ବ୍ରହ୍ମୋପାସନା ମନୁଷ୍ୟ ପକ୍ଷରେ ଗୋଟିଏ ଅତି ଉଚ୍ଚ ଅଧିକାର । ଜ୍ୟୋତିର ଜ୍ୟୋତି ସେହି ଦେବାଧିଦେବ ପରମାତ୍ମାଙ୍କୁ ଅନ୍ତରରେ ଅନୁଭବକରି ହୃଦବେଦୀରେ କୃତଜ୍ଞଚିତ୍ତରେ ଭକ୍ତିଭରେ ତାଙ୍କର ବନ୍ଦନା କରିବା ହିଁ ମୁଖ୍ୟ ଉପାସନା । ଉପନିଷଦ୍‌କାର କହିଅଛନ୍ତି—ସେହି ଆତ୍ମସ୍ଥିତ ଜ୍ଞେୟ ବସ୍ତୁ ବ୍ୟତୀତ ଜଗତରେ ଆଉ ଜ୍ଞାତବ୍ୟ ବସ୍ତୁ କିଛି ନାହିଁ ।

ବ୍ରହ୍ମୋପାସନା— ଜ୍ୟୋତିଷାମପିତ ଜ୍ୟୋତିଃ ତମଃପାରେ ବ୍ୟବସ୍ଥିତଂ
ଜ୍ଞାନଂଜ୍ଞେୟଂ ଜ୍ଞାନଗମ୍ୟଂ ସର୍ବେଷାଂ ହୃଦିସଂସ୍ଥିତଂ ।
ଏତଦ୍‌ଜ୍ଞେୟଂ ନିତ୍ୟମେବାତ୍ମସଂସ୍ଥଂ
ନାତଃପରଂ ବେଦିତବ୍ୟଂ ହି କିଞ୍ଚିତ୍ । (ଶ୍ୱେତାଶ୍ୱତର)

ସେହି ପରମବ୍ରହ୍ମ ହିଁ ଜଗତ୍‌କର୍ତ୍ତା, ଜଗଦାଶ୍ରୟ, ସର୍ବାନ୍ତର୍ଯ୍ୟାମୀ, ଏକ ଏବଂ ଅଦ୍ୱିତୀୟ । ତାହାଙ୍କୁ "ସତ୍ୟ ଜ୍ଞାନମନନ୍ତଂ, ଆନନ୍ଦରୂପମମୃତଂ,



[ ଖ୍ରୀଷ୍ଟ ମହାବିଦ୍ୟାଳୟ ଅଧ୍ୟକ୍ଷ ଓ ଓଡ଼ିଆ ବିଭାଗର ଅଧ୍ୟାପକମାନଙ୍କ ସହିତ ଓଡ଼ିଆ ସେମିନାରର ଛାତ୍ରଛାତ୍ରୀବୃନ୍ଦ · ୧୯୮୦-୮୧ ]

ଶିବମଦ୍ୱୈତଂ, ଶୁଦ୍ଧମପାପବିଦ୍ଧଂ," ରୂପେ ପ୍ରଚାର କରିବା ବ୍ରାହ୍ମଧର୍ମର ମୁଖ୍ୟ କର୍ମ । ବ୍ରହ୍ମ କଣ, କିଂଭୂତ ବସ୍ତୁ—ତାହା ଧାରଣା କରିବା ସର୍ବକ୍ଷେତ୍ର-ସୁଲଭ ନୁହେଁ । ଅବଶ୍ୟ ଜ୍ଞାନଯୋଗରୁ ସାଧନାଦ୍ୱାରା ସେହି ବ୍ରହ୍ମଦତ୍ତ ପ୍ରଜ୍ଞାରେ ପ୍ରତ୍ୟେକ ମନୁଷ୍ୟର ସେ ରୂପ-ଉପଲବ୍ଧିର ଅଧିକାର ଅଛି । କେବଳ ଏହି ବ୍ରହ୍ମସ୍ୱରୂପ ବର୍ଣ୍ଣନାରେ ବେଦବେଦାନ୍ତ ଦର୍ଶନ ଉପନିଷଦରେ ନାନା ପ୍ରମାଣ ବଚନମାନ ସ୍ଥାନ ପାଇଅଛି । ଏଠାରେ ପାଠକମାନଙ୍କର ସ୍ମରଣାର୍ଥ ଅଥବା ପ୍ରସଙ୍ଗର ସଙ୍ଗତି ନିମିତ୍ତ ଉପନିଷଦରୁ ବ୍ରହ୍ମଜ୍ଞାନ ଓ ସ୍ୱରୂପର କେତୋଟି ଶ୍ରେଷ୍ଠ ବଚନ ଉଦ୍ଧାର କରୁଅଛି । ଶ୍ୱେତାଶ୍ୱତର ଉପନିଷଦରେ—ଏକୋଦେବଃ ସର୍ବ-ଭୂତେଷୁ ଗୂଢ଼ଃ, ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା । କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ, ସାକ୍ଷୀ ଚେତା କେବଳ ନିର୍ଗୁଣଶ୍ଚ । ଅର୍ଥାତ୍ ସେହି ଏକ ପରମେଶ୍ୱର ସର୍ବଭୂତ ଦେହରେ ଗୂଢ଼ଭାବରେ ଅବସ୍ଥାନ କରୁଅଛନ୍ତି । ସେ ସର୍ବବ୍ୟାପୀ, ସର୍ବଭୂତର ଅନ୍ତରାତ୍ମା, ସେ ସର୍ବ କାର୍ଯ୍ୟର ଅଧ୍ୟକ୍ଷ, ସେ ସର୍ବଭୂତର ଆଶ୍ରୟ, ସେ ଜ୍ଞାନ-ସ୍ୱରୂପ, ସମସ୍ତଙ୍କର ସାକ୍ଷୀ, ସଙ୍ଗରହିତ ଏବଂ ନିର୍ଗୁଣ ।

ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖଂ, ବିଶ୍ୱତୋବାହୁରୁତ ବିଶ୍ୱତଃପାତ୍ ।
ସଂ ବାହୁଭ୍ୟାଂଧମତି—

ସସମ୍ପତତ୍ରୈ—ର୍ଦ୍ୟାବାଭୂମୀ ଜନୟନ୍ ଦେବ ଏକଃ । ୪।୩
ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସଭୂମିଂ ବିଶ୍ୱତୋ ବୃତ୍ୱାତ୍ୟତିଷ୍ଠଦ୍ ଦଶାଙ୍ଗୁଳଂ । ୩।୧୪

ଅର୍ଥାତ୍ ଯାହାଙ୍କର ଚକ୍ଷୁ, ମୁଖ, ବାହୁ ଏବଂ ପାଦ ସର୍ବତ୍ର, ସେହି ଏକ ଦେବତା ଏ ଆକାଶ ଓ ପୃଥିବୀକି ସୃଷ୍ଟି କରି ମନୁଷ୍ୟଙ୍କଠାରେ ବାହୁ ଏବଂ ପକ୍ଷୀ ପ୍ରଭୃତିଙ୍କଠାରେ ପକ୍ଷସଂଯୋଗ କରନ୍ତି ଏବଂ ତାଙ୍କର ସହସ୍ର ମସ୍ତକ, ସହସ୍ର ଚକ୍ଷୁ, ସହସ୍ରପାଦ, ସେ ସମଗ୍ର ପୃଥିବୀକୁ ସୃଷ୍ଟି କରି (ନାଭିର) ଦଶାଙ୍ଗୁଳି ଉପରେ ଅର୍ଥାତ୍ ହୃଦୟସ୍ଥଳେ ଅବସ୍ଥାନ କରୁଅଛନ୍ତି ।

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।

ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତଂ । ୩।୧୯

ତାଙ୍କର ହସ୍ତପଦ ନାହିଁ, ତଥାପି ସେ ଗତିଶୀଳ ଏବଂ ଗ୍ରହୀତା । ଚକ୍ଷୁ ନାହିଁ, ସବୁ ଦେଖନ୍ତି, କର୍ଣ୍ଣ ନ ଥିଲେ ମଧ୍ୟ ଶୁଣନ୍ତି । ସେ ସମସ୍ତ ଜ୍ଞାତବ୍ୟ ବିଷୟ ଜାଣନ୍ତି; କିନ୍ତୁ ତାଙ୍କର କେହି ଜ୍ଞାତା ନାହିଁ । (ଯେଣୁ ସର୍ବଘଟରେ ସେ ଏକମାତ୍ର ଜ୍ଞାତା) ବ୍ରହ୍ମବିଦ୍‌ମାନେ ତାହାଙ୍କୁ ପ୍ରଥମ ଏବଂ ମହାନ୍ ପୁରୁଷବୋଲି ପ୍ରଖ୍ୟାପନ କରନ୍ତି ।

ଯାହାଙ୍କୁ ଲୋକ ବାକ୍ୟରେ ପ୍ରକାଶ କରିପାରେନାହିଁ, ମନରେ ଧାରଣା କରିପାରେନାହିଁ, ଚକ୍ଷୁରେ ଦେଖିପାରେ ନାହିଁ କିମ୍ବା କର୍ଣ୍ଣରେ ଶୁଣିପାରେ ନାହିଁ; କିନ୍ତୁ ଯାହାଙ୍କ ଯୋଗେ ବାକ୍ ଭାବପ୍ରକାଶକ, ମନ ମନନକ, ଚକ୍ଷୁ ଦର୍ଶନକ ଏବଂ କର୍ଣ୍ଣ ଶ୍ରବଣକ ବିଷୟହୁଏ, ସେହି ବ୍ରହ୍ମ । ଦେଶକାଳ ପରିଚ୍ଛିନ୍ନ ଅନ୍ୟ ଯାହାକୁ ଲୋକ ଉପାସନା କରେ, ତାହା ବ୍ରହ୍ମ ନୁହେଁ ।

ଯଦ୍‌ବାଚା ନାଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ ।
ତ ଦେବ ବ୍ରହ୍ମତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।
ଯନ୍ମନସା ନ ମନୁତେ ଯେନାହୁର୍ମନୋମତଂ ।
ଯଚ୍ଚକ୍ଷୁଷା ନ ପଶ୍ୟତି ଯେନ ଚକ୍ଷୂଂଷି ପଶ୍ୟତି ।
ଯଚ୍ଛ୍ରୋତ୍ରେଣ ନ ଶୃଣୋତି
ଯେନ ଶ୍ରୋତ୍ରମିଦଂ ଶ୍ରୁତଂ ।
ତ ଦେବ ବ୍ରହ୍ମତ୍ୱଂ ବିଦ୍ଧି ନେଦଂ ଯଦିଦ ମୁପାସତେ । (କେନୋପନିଷଦ)

ସେହି ବ୍ରହ୍ମ ଅରୂପ ହୋଇ ମଧ୍ୟ ଅନନ୍ତ ରୂପ, ସର୍ବ ହୃଦୟସ୍ଥ ହୋଇ ମଧ୍ୟ ନିର୍ଲିପ୍ତ । ଯେପରି ଅଗ୍ନି ଏବଂ ବାୟୁ ସଂସାରରେ ଆଧାର ବସ୍ତୁ ଭେଦରେ ତତ୍ ତତ୍ ଭିନ୍ନାକୃତି ରୂପଧାରଣ କରେ, ସର୍ବଭୂତରେ ସେହି ଅନ୍ତରାତ୍ମା ମଧ୍ୟ ସେହିପରି ନାନା ବସ୍ତୁଭେଦରେ ନାନା ରୂପ ଧାରଣ କରନ୍ତି । ସର୍ବଲୋକ-ଚକ୍ଷୁ ସୂର୍ଯ୍ୟ ଯେପରି ଚକ୍ଷୁଗ୍ରାହ୍ୟ ଦୂଷିତ ଦ୍ରବ୍ୟ ଦୋଷରେ କଦାପି ଲିପ୍ତ ହୁଏନାହିଁ, ସେ ଆତ୍ମା ସେହିପରି ଲୋକମାନଙ୍କ ଦୁଃଖ ସହିତ ଲିପ୍ତ ହୁଅନ୍ତିନାହିଁ । ଅପିଚ ସର୍ବଭୂତଙ୍କର ବାହାରେ ଅବସ୍ଥିତ ଆନ୍ତି ।

କଠୋପନିଷଦର ବଚନ ଏହି :—

ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ
ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ । ୨।୯
ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ
ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ । ୨।୧୦
ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁ
ର୍ନ ଲିପ୍ୟତେ ଚକ୍ଷୁଷୈର୍ବାହ୍ୟ ଦୋଷୈଃ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ । ୨।୧୧

ସେହି ଆତ୍ମା ଅନ୍ତରରେ ଏବଂ ବାହାରରେ, ଦୂରରେ ସେହି, ନିକଟରେ ସେହି, କବିଙ୍କ ଭାଷାରେ—

"ଦେଶକାଳାତୀତ ଦୃଶ୍ୟ କଳନା-ଅତୀତ,
ଅଥଚ ଜ୍ୟୋତିର ଜ୍ୟୋତି ଚକ୍ଷୁ ଅଗ୍ରେ ସ୍ଥିତ ।
ଦୂରରୁ ସୁଦୂର, ଚିନ୍ତା-ବାକ୍ୟ-ଅଗୋଚର,
ନିକଟୁ ନିକଟ, ପ୍ରାଣ ସମଗ୍ର ପ୍ରାଣର ।
ଅଶବ୍ଦ ଅସ୍ପର୍ଶ ସେହି ଅରୂପ ଅରସ,
ଜନ୍ତୁରେ ପରମ ସତ୍ୟ ମହାନନ୍ଦ ରସ ।
ନିଜ ମହିମାରେ ସ୍ଥିତ ନିଜେ ନିରାଧାର,
ଅନନ୍ତ ଅଗମ୍ୟ ମହୀ ବ୍ରହ୍ମାଣ୍ଡଆଧାର ।
ସମ୍ମୁଖେ ପଶ୍ଚାତେ ସେହି, ନିମ୍ନେ ଊର୍ଦ୍ଧ୍ୱେ ସେହି,
ଦକ୍ଷିଣେ ବାମରେ ସେହି ଅଥଚ ଅଦେହୀ ।"

ଅନନ୍ତ୍ୟ ଶରୀରରେ ଅବସ୍ଥିତ ଏହି ଅଶରୀର ନିତ୍ୟ ମହାନ୍ ବ୍ରହ୍ମ ପୁରୁଷଙ୍କୁ ଜାଣି ତତ୍ତ୍ୱଜ୍ଞାନୀମାନେ ଶୋକଶୋକରେ ଅଭିଭୂତ ହୁଅନ୍ତନାହିଁ ।

ଅଶରୀରଂ ଶରୀରେଷ୍ୱନବସ୍ଥେଷ୍ୱ ବସ୍ଥିତଂ ।
ମହାନ୍ତଂ ବିଭୂମାତ୍ମନଂ ମତ୍ୱାଧୀରୋ ନ ଶୋଚତି ।

ସେହି ଅନ୍ତରାତ୍ମା ସର୍ବଦା ଲୋକ ହୃଦୟରେ ସନ୍ନିବିଷ୍ଟ ଅଛନ୍ତି । ସେ ଜ୍ଞାନେଶ୍ୱର କେବଳ ହୃଦୟ ଓ ମନନଦ୍ୱାରା ପ୍ରକାଶିତ ହୋଇଥାନ୍ତି । ତାହାଙ୍କୁ ଯେଉଁମାନେ ଜାଣନ୍ତି, ସେମାନେ ଅମର ହୁଅନ୍ତି ।

ଅଙ୍ଗୁଷ୍ଠ ମାତ୍ର ପୁରୁଷୋଽନ୍ତରାତ୍ମା ।
ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ ।
ହୃଦା ମନ୍ୱୀଶୋ ମନସାଭିକ୍ଳୃପ୍ତୋ,
ଯ ଏତଦ୍ ବିଦୁର ମୃତାସ୍ତେଭବନ୍ତି । (ଶ୍ୱେ. ତ.)

ଆହୁରି ମଧ୍ୟ :—

ବେଦାହମେତଂ ପୁରୁଷଂ ମହାନ୍ତଂ
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାତି ମୃତ୍ୟୁମେତି
ନାନ୍ୟପନ୍ଥା ବିଦ୍ୟତେଽୟନାୟ । (ଶ୍ୱେ. ତ.)

ଶ୍ରୋତ୍ରସ୍ୟ ଶ୍ରୋତଂ ମନସୋ ମନୋଯଦ୍ ବାଚୋହି ବାଚଂ ସ ଉ ପ୍ରାଣସ୍ୟ ପ୍ରାଣଶ୍ଚକ୍ଷୁଷଃ ଚକ୍ଷୁରତିମୁଚ୍ୟାଧୀରାଃ ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି । (କେନ)

ନିତ୍ୟୋଽନିତ୍ୟାନାଂ ଚେତନଶ୍ଚେତନାନାଂ
ଏକୋ ବହୁନାଂ ଯୋ ବିଦଧାତିକାମାନ୍ ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାଃ
ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାଂ । କଠ ।

ଅର୍ଥାତ୍ ଅଜ୍ଞାନତମସାତୀତ ଜ୍ୟୋତିର୍ମୟ ସେହି ମହାପୁରୁଷଙ୍କୁ ଜାଣି ଲୋକ ମୃତ୍ୟୁ ଅତିକ୍ରମକରେ । ଅମୃତତ୍ୱ ଲଭର ଅନ୍ୟ ପଥ ଆଉ ନାହିଁ । ଯେ ଶ୍ରୋତ୍ରର ଶ୍ରୋତ୍ର ମନର ମନ, ବାକ୍ୟର ବାକ୍ୟ, ପ୍ରାଣର ପ୍ରାଣ, ଚକ୍ଷୁର

ଚକ୍ଷୁ, ତାଙ୍କୁ ଜାଣିଲେ ଲୋକ ଏ ଲୋକରୁ ଯାଇ ଅମୃତତ୍ୱ ଲାଭକରେ । ଯେ ଅନିତ୍ୟ ମଧ୍ୟରେ ନିତ୍ୟ, ଚେତନର ଚେତନ ଏବଂ ଏକ ହୋଇ ମଧ୍ୟ ଅନେକର କାମ୍ୟଫଳ ଦାତା, ତାହାଙ୍କୁ ଯେ ଆତ୍ମା ମଧ୍ୟରେ ଦର୍ଶନ କରନ୍ତି, ତାଙ୍କର ନିତ୍ୟଶାନ୍ତି, ଅନ୍ୟ କାହାର ହୁଏ ନାହିଁ ।

ନ ସନ୍ଦୃଶେ ତିଷ୍ଠତି ରୂପମସ୍ୟ
ନ ଚକ୍ଷୁଷା ପଶ୍ୟତି କଶ୍ଚିଦେନଂ
ନୈନମୂର୍ଦ୍ଧ୍ୱଂ ନ ତିର୍ଯ୍ୟଞ୍ଚନ ମଧ୍ୟେ ପରିଜଗ୍ରଭତ୍
ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍‌ଯଶଃ । (ଶ୍ୱେ. ଉ.)

କୌଣସି ଦର୍ଶନଯୋଗ୍ୟ ପ୍ରଦେଶରେ ଏହାଙ୍କର ରୂପ ନାହିଁ । କେହି ଏହାଙ୍କୁ ଚକ୍ଷୁଦ୍ୱାରା ଦେଖିପାରେନାହିଁ । କେହି ଏହାଙ୍କୁ ଉପରେ ତଳେ ବା ମଧ୍ୟରେ ଧରିପାରେ ନାହିଁ । ଯାହାଙ୍କର ମହତ୍ ଯଶ, ତାହାଙ୍କର ପ୍ରତିମା ନାହିଁ । ଅତଏବ ଈଶ୍ୱର ଅପ୍ରତିମ ବା ଅରୂପ । ସେ ଇନ୍ଦ୍ରିୟାତୀତ ଓ ଅବ୍ୟକ୍ତ । ସାଧକ କେବଳ ଆରାଧନା କାଳରେ ଧ୍ୟାନର ପଥ ସୁଗମ କରିବାପାଇଁ ତାଙ୍କର ବ୍ୟକ୍ତିତ୍ୱ କଳ୍ପନା କରେ । କେହି କେହି ସାଧକ ଉପାସ୍ୟ ଦେବତାଙ୍କୁ ଆପଣା ପରି ହସ୍ତ ପଦ ବିଶିଷ୍ଟ ସ୍ଥୂଳଦେହୀ କଳ୍ପନା କରି ପ୍ରାର୍ଥନା କରନ୍ତି ଏବଂ ଆପଣା ପରି କ୍ଷୁଧାତୃଷାଦିବୃତ୍ତିବିଶିଷ୍ଟ ଜାଣି ତାଙ୍କୁ ଭୋଜ୍ୟପାନାଦି ଉପହାର ପ୍ରଦାନ କରନ୍ତି । କେହି କେହି ଅଧମ ସାଧକ ମଧ୍ୟ ଆପଣାର ପ୍ରଭୁଙ୍କୁ ନିଜ ନୀଚ ମନର ଅନୁକୂଳ କଳ୍ପି ଅକାର୍ଯ୍ୟ ସାଧନ ଲାଗି ମଧ୍ୟ ପ୍ରାର୍ଥନା କରେ; ମାତ୍ର ଏ ସବୁ ଦୋଷବର୍ଜିତ ନୁହେଁ । ଈଶ୍ୱର ବ୍ୟକ୍ତି ସତ୍ୟ, କିନ୍ତୁ ମନୁଷ୍ୟପରି ବ୍ୟକ୍ତି ନୁହନ୍ତି । ତାଙ୍କର ଦୁଇ ହସ୍ତ, ଦୁଇ ଚକ୍ଷୁ ବା ଦୁଇ ପାଦ ନାହିଁ । ସବୁଆଡ଼େ ତାଙ୍କର ଚକ୍ଷୁ କର୍ଣ୍ଣ ହସ୍ତ ପାଦାଦି ଅନୁଭବ କରିବାହିଁ ଉତ୍ତମ ସାଧକର ଲକ୍ଷଣ । ବରଂ ତାଙ୍କର ଅଙ୍ଗାଦି ଏପରି କଳ୍ପନା କରାଯାଇପାରେ । ସେ ସତ୍ୟ ସର୍ବବ୍ୟାପୀ, ସୁତରାଂ ସତ୍ୟ ତାଙ୍କର ଦେହ । ଜ୍ଞାନ ସେହି ସତ୍ୟ ସ୍ୱରୂପ ଦେହର ଚକ୍ଷୁ । ଦେହରେ ଶକ୍ତିର ଆଶ୍ରୟ ବାହୁ । ତାଙ୍କର ଶକ୍ତି ଅନନ୍ତ, ଅତଏବ ତାଙ୍କର ବାହୁ ଅନନ୍ତ । ଅଦ୍ୱୈତ ତାଙ୍କର ପଦ ବା ଦେହାଶ୍ରୟ । ତାଙ୍କର ବର୍ଣ୍ଣ ପୁଣ୍ୟ । ସତ୍ୟବସ୍ତୁ ପୁଣ୍ୟର ବର୍ଣ୍ଣରେ ରଞ୍ଜିତ ହୋଇ ମନୋହର

ହୁଏ । ଦେହରେ ପ୍ରେମ ବା ମଙ୍ଗଳ ଭାବର ଆଧାର ହୃଦୟ । ତେଣୁ ଶିବ ତାଙ୍କର ହୃଦୟ । ଆନନ୍ଦ ତାଙ୍କର ସର୍ବାଙ୍ଗ ସଞ୍ଚାରୀ ଲାବଣ୍ୟ ସ୍ୱରୂପ । ଅମୃତ ତାଙ୍କର ଦୃଷ୍ଟି । ବୃକ୍ଷର ପୁଷ୍ପଫଳାଦି ନୈବେଦ୍ୟ କରି ତାଙ୍କର ତୃପ୍ତି ବିଧାନ କରିଯାଇ ନ ପାରେ । ଐକାନ୍ତିକ ପ୍ରେମ, ଅଚଳାଭକ୍ତି, ଜ୍ୱଳନ୍ତ ବିଶ୍ୱାସ, ଅସାଧାରଣ ଧୈର୍ଯ୍ୟ ତ୍ୟାଗ ଆଦି ତାଙ୍କ ନିକଟରେ ଯଥାର୍ଥ ନୈବେଦ୍ୟ । ଯେଉଁ ସାଧକର ଜୀବନ ଏହିଭାବରେ ଅନୁପ୍ରାଣିତ ହୁଏ, ସେହି ଏ ସଂସାରରେ ଧନ୍ୟ । ଯାହାର ମନ ସେହି ଅଭିଳଷିତ ବସ୍ତୁ ଲାଭକରି, ସେହି ପ୍ରେମ-ସ୍ରୋତରେ ଭାସମାନ ହେଉଥାଏ, ସେହି ଧନ୍ୟ । ଯେ ହୃଦୟରେ ଈଶ୍ୱରଙ୍କ ବ୍ୟକ୍ତିତ୍ୱ ଉପଲବ୍ଧି କରି, ସାକ୍ଷାତ ଭାବରେ ତାହାଙ୍କୁ ପ୍ରଭୁ, ପିତା, ମାତା, ଗୁରୁ, ସଖା, ସ୍ୱାମୀ ପ୍ରଭୃତିରୂପେ ଦେଖିବାର ସୁଯୋଗ ପାଏ, ସେହି ଧନ୍ୟ ଧନ୍ୟ । କେହି କେହି କହିଥାନ୍ତି, ସେ ବିଶ୍ୱବ୍ୟାପୀ, ମହତୋମହୀୟାନ୍, ତାଙ୍କୁ କିପରି ଏ କ୍ଷୁଦ୍ରମାନବ ହୃଦୟରେ ଧାରଣ କରିହେବ ? ଏପରି ପ୍ରଶ୍ନ ଉଠିବା ସ୍ୱାଭାବିକ୍; କିନ୍ତୁ ହୃଦୟର ସେପରି ଅଦ୍ଭୁତ ଅଚିନ୍ତ୍ୟ ଗୁଣ ଅଛି । ଅତ୍ୟୁନ୍ନତ ପର୍ବତ ବା ଅନ୍ୟ କୌଣସି ବିରାଟ ବସ୍ତୁ ଅତି କ୍ଷୁଦ୍ର ଦର୍ପଣରେ ସମ୍ପୂର୍ଣ୍ଣ ପ୍ରତି-ଫଳିତ ହୁଏ । ଏହା ଅବଶ୍ୟ କାଚର ଗୁଣ । ସେହିପରି ହୃଦୟର ଗୁଣରେ ସେ ମହାନ୍ ପୁରୁଷ ତହିଁରେ ପ୍ରକାଶିତ ହୋଇପାରନ୍ତି । ସାଧକ ତାହାଙ୍କୁ ହୃଦୟରେ ଅନୁଭବ କଲେ ଅପାର ସୁଖସାଗରରେ ପ୍ରବାହିତ ହୁଏ, ଆଉ ସେଥିରୁ ଉଠିଲେ ହେଁ ଫେରିବାକୁ ମନ ବଳାଏନାହିଁ ।

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ ଗଚ୍ଛନ୍ତି ନାମ ରୂପେ ବିହାୟ
ତଥା ବିଦ୍ୱାନ୍ ନାମରୂପାଦ୍ ବିମୁକ୍ତଃ ପରାତ୍ପରଂ ପୁରୁଷମୁପୈତି ଦିବ୍ୟଂ । (ମୁଣ୍ଡକ)

ନଦୀସ୍ରୋତ ଯେପରି ପ୍ରତିବନ୍ଧକ ଅତିକ୍ରମ କରି ଶେଷରେ ନିଜ ନାମ ରୂପ ଭୁଲିଯାଇ ସମୁଦ୍ରରେ ମିଶିଯାଏ, ସେହିପରି ଜ୍ଞାନବ୍ୟକ୍ତି ଜୀବନମାର୍ଗର ସମସ୍ତ ବାଧାବିଘ୍ନ ଲଙ୍ଘି ଶେଷରେ ଆପଣାର ନାମରୂପଭେଦ ଭୁଲି ସେହି ଦିବ୍ୟପୁରୁଷଙ୍କ ସହିତ ମିଳିତ ହୁଅନ୍ତି । ସାଧକ ମଧୁସୂଦନଙ୍କର ଜୀବନସ୍ରୋତ କି ପ୍ରକାର ପ୍ରବାହିତ ହୋଇଥିଲା, ତଲ୍ଲିଖିତ 'ନଦୀପ୍ରତି' କବିତାରୁ ତହିଁର ପ୍ରତିବିମ୍ବ ମିଳେନାହିଁ କି ? ତାଙ୍କର ପ୍ରାଣ ସମସ୍ତ 'ଭେଦ ଦୂରେ ଫିଙ୍ଗି'

ସର୍ବଦା ସେହି ପ୍ରେମ ସ୍ରୋତରେ ଭାସିବାକୁ (ସତ୍ୟପଥେ ପ୍ରେମ ପଥେ ଘେନି ଯାଅ ମୋତେ, ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ) ବ୍ୟାକୁଳ ଥିଲି । ଆମ୍ଭେମାନେ ତାଙ୍କର ପ୍ରତି ଉପଦେଶ, ପ୍ରତି ସଙ୍ଗୀତ ଓ ପ୍ରତି କବିତାରେ ପ୍ରାର୍ଥନାର ପ୍ରତି ତରଙ୍ଗରେ ଏହି ପ୍ରକାର ବ୍ୟାକୁଳତା ଦେଖୁଁ । କେତେବେଳେ ତାଙ୍କର ପ୍ରାଣ କହେ "ହେ ପରମପିତା, ତୁମ୍ଭେ ମୋତେ ତୁମ୍ଭଙ୍କୁ ଜାଣିବାର ଅଧିକାର ଦେଇଅଛ । ମୁଁ ପାପୀହେଲେ ହେଁ, ତୁମ୍ଭେ ମୋ ନିକଟରେ ପ୍ରକାଶିତ ହୋଇ କହୁଅଛ, ବତ୍ସ ! ମୁଁ ତୋ ସଙ୍ଗେ ସଙ୍ଗେ ଅଛି । ହେ ପରମସଖା ! ମୋତେ ତୁମ୍ଭ ଦୟାର ସାକ୍ଷ୍ୟ ଦେବାପାଇଁ ସମର୍ଥକର । ମା ତୁମ୍ଭର ପରମ ସୁନ୍ଦର ସ୍ୱରୂପରେ ବୁଡ଼ିଯାଇ ମୋର କ୍ଷୁଦ୍ର ନୀଚ ଅହଙ୍କାରକୁ ଯେପରି ପାସୋର ପକାଏଁ ଏବଂ ତୁମ୍ଭ ସନ୍ତାନମାନଙ୍କର ସେବାକରି ଧନ୍ୟ ହୁଏଁ ।" କେତେବେଳେ ପୁଣି—"ହେ ପ୍ରଭୋ, ଧର୍ମଯୁଦ୍ଧରେ ଧର୍ମନିଷ୍ଠ ଯୋଦ୍ଧାମାନେ ସମ୍ପୂର୍ଣ୍ଣରୂପେ ପ୍ରାଣ ଢାଳି ଦେଇଛନ୍ତି । ମୁଁ କାପୁରୁଷପରି ପୃଷ୍ଠଭଙ୍ଗଦେଇ ଶତ୍ରୁମାନଙ୍କ ସଙ୍ଗେ ସନ୍ଧି କରିଅଛି ଓ କରୁଅଛି । ପ୍ରଭୋ ! ଏ ବିଶ୍ୱାସଘାତକତାର ଉଚିତ ଦଣ୍ଡ ବିଧାନ କରୁଅଛ, କର; କିନ୍ତୁ ପ୍ରଭୋ ! ବିଶ୍ୱାସଘାତକର ଦୁର୍ଗତି ଏକାବେଳକେ ବିନାଶକରି ବିଶ୍ୱାସୀ ସନ୍ତାନର ସୁମତି ମୋତେ ଦିଅ ଏବଂ ବୀରସନ୍ତାନର ବ୍ରତ ନିଷ୍ଠାରେ ମୋତେ ଦୀକ୍ଷିତ କର । ପାପ ପ୍ରଲୋଭନ ସଙ୍ଗେ ଯୁଝିବାର ବିକ୍ରମ ମୁଁ ହରାଇବସିଛି । ହେ ପ୍ରଭୋ ! ନବଜୀବନ, ନବଶକ୍ତି ମୋ ଆତ୍ମାରେ ସଞ୍ଚାରିତ କର ।" କେତେବେଳେ ବା—"ହେ ଅନନ୍ତ ! କିଏ ତୁମ୍ଭର ନାମକରଣ କରିପାରେ ? ଅଥଚ କେଉଁ ବିଶ୍ୱାସୀ ତୁମ୍ଭର ନାମକରଣ ନ କରି ରହିପାରେ ? ହେ ପରିପୂର୍ଣ୍ଣ ! ତୁମ୍ଭ ସଙ୍ଗେ ଘନିଷ୍ଠ ଯୋଗ ଉପଲବ୍ଧି କରି ଏ ପ୍ରାଣ ତୁମ୍ଭଙ୍କୁ ସହଜ ନାମ ଦେଇ ଜୀବନ୍ତଭାବରେ ଡାକି ଶିଖୁ ।" ବ୍ୟାକୁଳ ପ୍ରାର୍ଥନାରେ ଏ ସଂସାରରେ ନିର୍ମମ ପାଷାଣ୍ଡର ହୃଦୟ ମଧ୍ୟ ବିଗଳିତ ହୋଇଯାଏ । ଅତି ନିର୍ଦ୍ଦୟ ଘାତକର ହୃଦୟରେ ମଧ୍ୟ ଦୟାର ସଞ୍ଚାର ହୁଏ । ଯେ ଶୁଦ୍ଧ ସରଳ ପ୍ରାଣରେ ଦୟାମୟ ଭଗବାନଙ୍କୁ ବ୍ୟାକୁଳ ଭାବରେ ଡାକେ, ସେ ଅବଶ୍ୟ ଦିନେ ତାଙ୍କର କୃପାଲାଭ କରିପାରିବ, ଏହି ବିଶ୍ୱାସ ନିର୍ଭର ସତ୍ୟ ।

ପୁରାଣାଦିରୁ ଜଣାଯାଉଅଛି, ଭକ୍ତ ଯେତେବେଳେ ବ୍ୟାକୁଳତାର ଚରମ ସୀମାରେ ଉପସ୍ଥିତ ହୋଇଅଛି, ତେତେବେଳେ ଭଗବାନ୍ କୃପାକର ସ୍ୱରୂପ ପ୍ରଦର୍ଶନଦ୍ୱାରା ତାହାର ଉଦ୍ଧାର ବିଧାନ କରିଅଛନ୍ତି, ବିପଦର ଚରମ ମୁହୂର୍ତ୍ତରେ ଆର୍ତ୍ତକୁ ପରିତ୍ରାଣ କରିଅଛନ୍ତି । ଯେ ଈଶ୍ୱରବିଶ୍ୱାସୀ କୃତଜ୍ଞ-ଚିତ୍ତରେ ପ୍ରାଣ ମଧ୍ୟରେ ତାହାଙ୍କୁ ନିତ୍ୟ ଡାକିବାକୁ ଶିଖିଅଛନ୍ତି, ସେ ଅବଶ୍ୟ ତାଙ୍କର କୃପା କଣିକା ଲାଭକରିଅଛନ୍ତି ଏବଂ ତାହାଙ୍କ ସ୍ୱରୂପ ଜାଣିଅଛନ୍ତି । କାରଣ ଈଶ୍ୱର ମାନବାତ୍ମାରେ ଅଭିବ୍ୟକ୍ତ ରହିଅଛନ୍ତି । ତାଙ୍କର ପ୍ରକାଶ ଏବଂ ତାଙ୍କର ବାଣୀ ଶ୍ରବଣ ସ୍ୱାଭାବିକ ଏବଂ ସାର୍ବଲୌକିକ । କି ଜଡ଼ କି ଚେତନ ଉଭୟ ଜଗତରେ ତାଙ୍କର କ୍ରିୟା ପ୍ରତ୍ୟକ୍ଷ କରିଯାଏ । ଜଡ଼ ଜଗତର ପ୍ରତି ରନ୍ଧ୍ର ପରି ହୃଦୟର ନିଭୃତ କନ୍ଦରରେ ତାଙ୍କର ମଙ୍ଗଳବାଣୀ ଉଦ୍‌ଗିରିତ ହେଉଅଛି ଏବଂ ପ୍ରତି ପ୍ରାଣକୁ ଅନୁପ୍ରାଣିତ କରୁଅଛି । ପ୍ରତ୍ୟେକ ଏହି ମଙ୍ଗଳବାଣୀ ଶ୍ରବଣର ଅଧିକାରୀ ।

ଉପାସନା ସଜନ-ନିର୍ଜନ ଓ ସରବ-ନୀରବ ଭେଦରେ ଦୁଇ ପ୍ରକାର ହୋଇଥାଏ । କୁଟୁମ୍ବର ଅଥବା ସମ୍ପ୍ରଦାୟର ସମସ୍ତଙ୍କ ସହିତ ମିଳିତ ହୋଇ ଯେଉଁ ଉପାସନା କରିଯାଏ, ତାହା ସଜନ ଉପାସନା । ଏହି ଉପାସନାରେ ଅନ୍ୟାନ୍ୟ ଉପାସକମାନଙ୍କର ଅଭାବ ଏବଂ ବ୍ୟାକୁଳତା ଆପଣାର ପ୍ରାଣରେ ସ୍ପନ୍ଦିତ ହୋଇ ସମସ୍ତ ସମୟରେ ପ୍ରାଣକୁ ଉନ୍ନତ ଏବଂ ସରସ କରେ । ନିର୍ଜନରେ ଏକାକୀ ଈଶ୍ୱରଚିନ୍ତା କରିବାର ନାମ ନିର୍ଜନ ଉପାସନା । ସଶବ୍ଦ ଉପାସନାଦ୍ୱାରା ଅନ୍ୟ ଉପାସକମାନଙ୍କର ନୀରବରେ ଯୋଗଦେବାର ସୁବିଧା ହୁଏ ଏବଂ ଶବ୍ଦ ଉଚ୍ଚାରଣ ସଙ୍ଗେ ସଙ୍ଗେ ଉପାସନାକାରୀର ମନ ବାହ୍ୟ ଚିନ୍ତାରୁ ନିବୃତ୍ତ ହୋଇ କ୍ରମେ ଏକାଗ୍ର ହୋଇଥାଏ । ପ୍ରଥମ ସାଧକ ପକ୍ଷରେ ଏ ପ୍ରକାର ଉପାସନା ଅବଶ୍ୟ ଚିତ୍ତଶୁଦ୍ଧି କରିବାର ନିରାପଦ; କିନ୍ତୁ ନିର୍ଜନରେ ନୀରବଭାବରେ ଈଶ୍ୱର ଚିନ୍ତାକରିବା ସର୍ବାପେକ୍ଷା ଉତ୍କୃଷ୍ଟ ଏବଂ ମଧୁର ବୋଲି ଉତ୍ତମ ସାଧକଗଣଙ୍କ ବଚନରୁ ପ୍ରକାଶ ପାଏ । ଏହି ପ୍ରକାର ମନନହିଁ ଯୋଗୀର ଯୋଗ ଧ୍ୟାନ ବା ସମାଧି; କିନ୍ତୁ ତାହା ଜାଣିପାରିବା ଅନ୍ୟ ପକ୍ଷରେ ଅସମ୍ଭବ ଓ ଅଧିକାର ବହିର୍ଭୂତ । ସଜନ ଉପାସନା ବା ବିଭୁଗୁଣ କୀର୍ତ୍ତନରୁ

ଅନ୍ୟ ଲୋକଙ୍କର ଶିକ୍ଷା ଓ ଉପକାର ହୁଏ । ଆଗୃହୀ ମଧୁସୂଦନ ସଜନ ଉପାସନାରେ ଅତ୍ୟନ୍ତ ଅନୁରାଗ ପ୍ରଦର୍ଶନ କରୁଥିଲେ । କେତେବେଳେ କୁଟୁମ୍ବଙ୍କୁ ନେଇ, କେତେବେଳେ ବନ୍ଧୁବାନ୍ଧବଙ୍କୁ ନେଇ ସେ ଉପାସନାରେ ବସୁଥିଲେ । ତାହାଙ୍କ ଉପାସନାରେ ଶ୍ରୋତୃବୃନ୍ଦଙ୍କର ହୃଦୟ ଯେପରି ନିର୍ମଳ ଓ ପବିତ୍ରଭାବାପନ୍ନ ହୁଏ, ତାହା ଅନ୍ୟତ୍ର ବିରଳ । ତେଣୁ ଅନେକ ହିନ୍ଦୁ ପ୍ରୀତ ମନରେ ତାଙ୍କ ଉପାସନାରେ ଯୋଗ ଦେଉଥିଲେ ଏବଂ କ୍ଷଣେ ହୃଦୟକୁ ଦିବ୍ୟରସରେ ସରସ କରି ଆସୁଥିଲେ । ତାଙ୍କର ଉପାସନାର ପ୍ରତ୍ୟେକ ବାଣୀ ହୃଦୟ ତନ୍ତ୍ରୀକୁ ଅପାର୍ଥିବ ଭାବରେ ଝଙ୍କାରିତ କରିଦେଉଥିଲା, ପ୍ରତ୍ୟେକ ତରଙ୍ଗ ଆଶାର ବାଣୀ ଶୁଣାଉଥିଲା, ହୃଦୟକୁ ନବଜାଗରଣ ଆଣୁଥିଲା । ଆହା ! କି ଗମ୍ଭୀର ଉଦ୍‌ଗିରଣେ ଋଷି କଣ୍ଠୁ ଷ୍ଟୁରେ "ଉତ୍ତିଷ୍ଠତ-ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।" ତାଙ୍କର ସେହି ବିଶ୍ୱାସବାଣୀର ଉଦ୍‌ଗିରଣ, ଓଁକାର ଝଙ୍କାର, ଦିବ୍ୟ ତେଜରେ ଉଦ୍‌ଭାସିତ ମୁଖମଣ୍ଡଳ, ଅଶ୍ରୁବିଧୌତ ଗଣ୍ଡଯୁଗ ଏବଂ 'ଚୈତନ୍ୟର ଲୀଳାସ୍ଥଳ ଉଜ୍ଜ୍ୱଳ ଭାଲ ଫଳକ ଯେ ସୁଯୋଗକ୍ରମେ ଦେଖିଅଛୁ, ସେ କଦାପି ଭୁଲି ପାରିବନାହିଁ ଏବଂ ସେହି ମୂର୍ତ୍ତି ସ୍ମରଣରେ, ହୃଦୟ ଶୁଷ୍କ ସରସ ହୋଇ ପାରିବ । ପ୍ରିୟବନ୍ଧୁ ନନ୍ଦକିଶୋର ବାବୁ ତାଙ୍କ ପ୍ରବନ୍ଧରେ ଯଥାର୍ଥ ଲେଖି ଅଛନ୍ତି—"ଆମ୍ଭେମାନେ ତାଙ୍କର ଅନେକ ରୂପ ଦେଖିଅଛୁଁ; କିନ୍ତୁ ଗୋଟିଏ ରୂପ ଚିରକାଳ ହୃଦୟରେ ଲଖି ରହିଅଛି । ବ୍ରହ୍ମ ମନ୍ଦିର ନାନା-ଲତାପୁଷ୍ପ-ଦ୍ୱାରା ମଣ୍ଡିତ । ଲତାକୁଞ୍ଜ ମଧ୍ୟରେ ଋଷିପ୍ରତିମ ତେଜସ୍ୱୀ ଗମ୍ଭୀର ପୁଣ୍ୟାତ୍ମା ମଧୁସୂଦନ ବସି ଯେଉଁ ମନ୍ତ୍ରପାଠ କରିଥିଲେ, ତାହା ହୃଦୟପବିତ୍ରକାରୀ—

"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟପୁତ୍ରା<br>
ଯେ ଧାମାନି ଦିବ୍ୟାନି ଆତସ୍ଥୁଃ ।<br>
ବେଦାହମେତଂ ପୁରୁଷଂ ମହାନ୍ତ—<br>
ମାଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍<br>
ତମେବ ବିଦିତ୍ୱାତି ମୃତ୍ୟୁମେତି<br>
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।"

ଉପାସନା କାଳରେ ସାଧକ ମଧୁସୂଦନ ପ୍ରଥମେ ବ୍ରହ୍ମସଙ୍ଗୀତରେ ମନକୁ ଉଦବୋଧିତ କରି ଅର୍ଥାତ୍ ଈଶ୍ୱରଙ୍କ ଅଭିମୁଖରେ ଆକର୍ଷଣକରି ଆରାଧନା କରୁ କରୁ ଅଥବା ଈଶ୍ୱରଙ୍କ ସ୍ୱରୂପ ହୃଦୟରେ ଉପଲବ୍ଧିକରି କୀର୍ତ୍ତନ କରୁକରୁ ଯେତେବେଳେ ଧ୍ୟାନସ୍ଥ ହୋଇପଡ଼ନ୍ତି, ସେତେବେଳେ ତାଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳତର ଦିଶେ, ଯେପରି ତାହା ଏକ ଅପାର୍ଥିବ ତେଜରେ ଉଦ୍ଭାସିତ ହୋଇଯାଏ । ଦେଖୁଁ ଦେଖୁଁ ନିମୀଳିତ ନେତ୍ର-ଦ୍ୱୟରୁ ଦୁଇଟି ପାବନ ଅଶ୍ରୁଧାର ଗଣ୍ଡଯୁଗଳରେ ଅବିରତ ଝରିପଡ଼େ । ଦେଖିଲେ ମନେହୁଏ, କୌଣସି ଅପାର୍ଥିବ ମହାବସ୍ତୁ ତାହାଙ୍କ ହୃଦୟରାଜ୍ୟ ଅଧିକାର କରିଅଛି । ତେଣୁ ଅନ୍ତର୍ବାଷ୍ପରାଶି ଅଶ୍ରୁଜଳ ଆକାରରେ ଅସମ୍ଭାଳରେ ଉଚ୍ଛୁଳି ପଡ଼ୁଅଛି । ଆହା ! ସେ ଦୃଶ୍ୟ କି ଉଦାର ! ଭଗବାନଙ୍କର ପ୍ରେମମନ୍ଦାକିନୀଧାରାର ସେ ଯେପରି ସ୍ଥୂଳ ପ୍ରତିଫଳନ ! ବ୍ରହ୍ମର୍ଷି ମଧୁସୂଦନ ସେତେବେଳେ ମହାଭାବରେ ବିଭୋଳହୋଇ ବାଞ୍ଛାକଳ୍ପତରୁଙ୍କ ନିକଟରେ ଆତ୍ମାର ପ୍ରିୟତମ ପ୍ରାର୍ଥନା କରନ୍ତି । ସେ ପ୍ରାର୍ଥନା କେଡ଼େ ଉଚ୍ଚ, କି ଅପାର୍ଥିବ ଏବଂ କିପରି ଅନନ୍ୟସାଧାରଣ, ତାହା ପାଠକମାନେ ତାଙ୍କର ଉଦ୍ଧୃତ ବଚନାବଳୀରୁ ଅନୁମାନ କରିପାରୁଥିବେ । ସେତେବେଳେ ସେ ପ୍ରାଣସ୍ପର୍ଶୀ ଝଙ୍କାରିତକରି ଓଁକାର ଉଚ୍ଚାରଣ କରନ୍ତି । ତାହା ସଙ୍ଗେ ସଙ୍ଗେ ସମସ୍ତ ଉପାସକ ଏବଂ ଶ୍ରୋତୃବର୍ଗଙ୍କ ହୃଦୟରୁ ସମସ୍ୱରରେ ନୀରବରେ ଓଁ ଉଦ୍‌ଗିରିତ ହୁଏ । ପ୍ରତ୍ୟେକ ହୃଦୟ ସେଥିରେ ଆକୃଷ୍ଟହୋଇ ଯେପରି ଏକାଭିମୁଖୀନ ହେଉଥାଏ । ବ୍ରାହ୍ମ ଉପାସନାରେ ଅନେକ କୃତ୍ରିମତା ଏବଂ ଆଡ଼ମ୍ବରର ସଂକ୍ରମଣ ଦେଖି ଅନେକେ ଘୃଣା କରିଆନ୍ତି; କିନ୍ତୁ ଏପରି ଉପାସନା ବିରଳ ଦେଖାଯାଏ । ବିଶ୍ୱନାଥବାବୁଙ୍କ ଭାଷାରେ ବର୍ତ୍ତମାନ ତାଙ୍କପରି ନବଯୁଗର ଦୀରରବାଣୀ ଉଦାତ୍ତସ୍ୱରରେ ଉଚ୍ଚାରଣ କରିବାକୁ ଏ ଦେଶରେ ଆଉ କେହି ନାହିଁ । ସେହି ଏକା ବ୍ରହ୍ମର୍ଷି ବିଜୟନିଶାଣ ସେପରି ଦୃଢ଼ ମୁଷ୍ଟିରେ ଧାରଣ କରି ଅଟଳ ଅଟଳ ଭାବରେ ଦଣ୍ଡାୟମାନ ହୋଇଥିଲେ । □□□

# ବ୍ରାହ୍ମଧର୍ମ ଆନ୍ଦୋଳନ ଓ ଭକ୍ତକବି ମଧୁସୂଦନ

ଅଧ୍ୟାପକ ରଙ୍ଗାଧର ନାୟକ

ଅଷ୍ଟାଦଶ ଶତାବ୍ଦୀରେ ଖ୍ରୀଷ୍ଟୀୟାନ ମିଶନାରୀମାନେ ଭାରତ ଆସି, ବିଭିନ୍ନ ସ୍ଥାନରେ ପ୍ରବଳ ଭାବରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବାରେ ଲାଗିପଡ଼ିଲେ । ମିଶନାରୀମାନେ ବିଭିନ୍ନ ପୁସ୍ତକ ଓ ପତ୍ରିକା ମାଧ୍ୟମରେ ହିନ୍ଦୁ ଓ ମୁସଲମାନ ଧର୍ମକୁ ନିନ୍ଦାକରି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ । ଅନ୍ୟ ପକ୍ଷରେ ପାଶ୍ଚାତ୍ୟ ଶିକ୍ଷା ପ୍ରସାର ଫଳରେ ସମଗ୍ର ଦେଶରେ ଏକ ନବ ଚେତନା ଓ ନବ ପ୍ରେରଣା ଦେଖାଗଲା । ଏ ସମୟର ନବ ଶିକ୍ଷିତ ଯୁବକମାନେ ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ପ୍ରଭାବରେ ଆମର ପ୍ରାଚୀନ ଧାର୍ମିକ ପରମ୍ପରାକୁ ପସନ୍ଦ କଲେନାହିଁ । ସେମାନେ ମଠ, ମନ୍ଦିର, ମହନ୍ତ, ପୁରୋହିତମାନଙ୍କୁ ସ୍ୱୀକାର କଲେନାହିଁ । ବରଂ ହିନ୍ଦୁ ଧର୍ମକୁ କୁସଂସ୍କାରପୂର୍ଣ୍ଣ କହି ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ପାଶ୍ଚାତ୍ୟ ମୋହ ସେମାନଙ୍କର ପ୍ରଧାନ ଆକର୍ଷଣୀୟ ହୋଇ ଉଠିଲା । ହିନ୍ଦୁ ଧର୍ମର କଠିନ ନିୟମ, ବ୍ରାହ୍ମଣମାନଙ୍କ ଦୌରାତ୍ମ୍ୟ ସହି ନ ପାରି ଅସ୍ପୃଶ୍ୟ ଓ ଦରିଦ୍ର ଲୋକେ ଖ୍ରୀଷ୍ଟଧର୍ମକୁ ସହଜରେ ଗ୍ରହଣ କରିବାରେ ଲାଗିଲେ । ଭାରତର ବିରପୁରୁଷ ଦିବ୍ୟଦ୍ରଷ୍ଟା ରାମମୋହନରାୟ ଏହା ଲକ୍ଷ୍ୟ କରୁଥିଲେ । କେତେକ ଚିନ୍ତାଶୀଳ ଜନନାୟକ ପୁରାତନ ସମାଜ ଭାଙ୍ଗି ନୂତନ ସମାଜ ଗଠନ କରିବାର ଆବଶ୍ୟକତା ଅନୁଭବ କଲେ । ପ୍ରଥମ କରି ରାଜା ରାମମୋହନରାୟ ଖ୍ରୀଷ୍ଟିୟାନ ଧର୍ମର ପ୍ରସାରକୁ ପ୍ରତିରୋଧ କରି ସନାତନ ଧର୍ମକୁ ନୂତନରୂପରେ ପ୍ରକାଶ କରିବାକୁ 'ବ୍ରାହ୍ମଧର୍ମ' ନାମରେ ଏକ ଧର୍ମ ପ୍ରତିଷ୍ଠା କଲେ । ରାମମୋହନଙ୍କ-ଦ୍ୱାରା ପ୍ରତିଷ୍ଠିତ 'ବ୍ରାହ୍ମ ସମାଜ' ପ୍ରଥମେ 'ବ୍ରାହ୍ମ୍ୟ ସଭା' ନାମରେ ନାମିତ ହୋଇଥିଲା । ୧୮୩୦ ସାଲ ଜାନୁୟାରୀ ୨୩ ତାରିଖରେ ଆନୁଷ୍ଠାନିକଭାବେ ଏହା ପ୍ରତିଷ୍ଠିତ ହୋଇଥିଲା । (୧) ବ୍ରାହ୍ମସଭା ୧୮୨୮ ସାଲ ଅଗଷ୍ଟମାସ

୨୦ ତାରିଖରେ ସ୍ଥାପିତ ହୋଇଥିଲା । (୨) ଶିକ୍ଷିତ ସମାଜକୁ ସୁହାଇଲାଭଳି ବ୍ରାହ୍ମସମାଜରେ ସେ ଏକ ଉପାସନା ପଦ୍ଧତି ପ୍ରଚଳନ କରିଥିଲେ, ଯାହାର ସବୁ ଧର୍ମ ସହିତ ସମ୍ପର୍କ ରହିଥିଲା । ସେଗୁଡ଼ିକ ହେଲା (କ) ଦୈନିକ ବ୍ୟକ୍ତିଗତ ଉପାସନା, ଏଥିରେ ଧ୍ୟାନ ଜପାଦିର ସ୍ଥାନ, (ଖ) ସମଭାବାପନ୍ନ ବ୍ୟକ୍ତିମାନଙ୍କ ସହିତ ସାପ୍ତାହିକ ମଣ୍ଡଳୀଗତ ଉପାସନା, (ଗ) ସାର୍ବଜନୀନ ସାଧାରଣ ଉପାସନା ସଭାର ମାଧ୍ୟମରେ ଧର୍ମତତ୍ତ୍ୱ ବ୍ୟାଖ୍ୟା, ବକ୍ତୃତା ଆଦିର ପ୍ରଚାର । (୩) ପରେ ମହର୍ଷି ଦେବେନ୍ଦ୍ରନାଥ, ଅକ୍ଷୟକୁମାର ଦତ୍ତ ସମେତ ଆଉ ୨୦ ଜଣ ଅନୁଷ୍ଠାନିକ ଭାବେ ୧୮୪୩ ସାଲ ଡିସେମ୍ବର ୨୫ ତାରିଖରେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । (୪) ଲିଖିତ ଭାବରେ ସେମାନେ ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇଥିଲେ ।

(କ) ଆମେ ବେଦାନ୍ତ ପ୍ରତିପାଦିତ ସତ୍ୟଧର୍ମର ଆଶ୍ରୟ ଗ୍ରହଣ କଲୁ ।

(ଖ) ସୃଷ୍ଟି, ସ୍ଥିତି, ପ୍ରଳୟ କର୍ତ୍ତା ସର୍ବଶେଷ ଆନନ୍ଦ ସ୍ୱରୂପକୁ ପରମେଶ୍ୱର ରୂପେ ଆରାଧନା କରିବୁ । ପ୍ରତିମାଦି କୌଣସି ଇନ୍ଦ୍ରିୟଗୋଚର ବସ୍ତୁ ଆରାଧନା କରିବୁନାହିଁ ।

(ଗ) ଗାୟତ୍ରୀର ଆବୃତ୍ତି ନିୟମିତ ଭାବେ କରିବୁ । (୫)

(ଘ) ସୂର୍ଯ୍ୟୋଦୟ ପରେ ମଧ୍ୟାହ୍ନ କାଳ ମଧ୍ୟରେ ପବିତ୍ର ମନରେ ପରମେଶ୍ୱରଙ୍କ ସ୍ୱରୂପ ଭାବନାପୂର୍ବକ ଗାୟତ୍ରୀ ଜପ କରିବୁ ।

ଏମାନଙ୍କ ପ୍ରବଳ ପ୍ରଚେଷ୍ଟାରେ, ବ୍ରାହ୍ମଧର୍ମର ପ୍ରସାର ଓ ପ୍ରଚାର ହେଲା । ମହର୍ଷି ଦେବେନ୍ଦ୍ରନାଥ ରାମମୋହନଙ୍କ ପରେ ବ୍ରାହ୍ମଧର୍ମ ଆନ୍ଦୋଳନକୁ ସୁଦୃଢ଼ କରିବାକୁ ଚେଷ୍ଟାକଲେ । ସେ ବେଦବିରୋଧୀ ଥିଲେ । ବ୍ରାହ୍ମ ସମାଜରେ ଅନ୍ତର୍ଭୁକ୍ତ ହେଲେ କି କି ନିୟମ ପାଳନ କରିବାକୁ ପଡ଼ିବ, ତା'ର ଏକ ଖସଡ଼ା କଲେ । ନିଜ ମତର ଅନୁକୂଳ କେତେକ ବାକ୍ୟ ଉପନିଷଦ୍‌ରୁ ଆଣି ଉଦାହରଣ ଦେଲେ । ବ୍ରାହ୍ମଧର୍ମ ପ୍ରଚାର ପାଇଁ ଏକ ପତ୍ରିକା ପ୍ରକାଶ ଏବଂ ଗୋଟିଏ ବ୍ରାହ୍ମ ବିଦ୍ୟାଳୟର ସ୍ଥାପନା କଲେ । (୬) ରାମମୋହନଙ୍କ ସମୟରୁ ବ୍ରାହ୍ମ ଉପାସନାରେ ପ୍ରଚଳିତ ହୋଇ ଆସୁଥିବା ସାବିତ୍ରୀ ଉପାସନାକୁ ବନ୍ଦ

କରି ଦେଇଥିଲେ । ଭାରତୀୟ ସମାଜରେ ଥିବା କୁସଂସ୍କାର—ସତୀଦାହ ପ୍ରଥା, ନରବଳି, ମଦ୍ୟପାନ ପ୍ରଭୃତି ବିରୋଧରେ ବ୍ରାହ୍ମବାଦୀମାନେ ପ୍ରବଳ ଆନ୍ଦୋଳନ ଚଳାଇଲେ । ପ୍ରଥମ କରି ଏମାନେ ହିନ୍ଦୁ ସମାଜରେ ବିଧବା ବିବାହ ପ୍ରଥା ପ୍ରଚଳନ କଲେ । ଉପନିଷଦ୍ ଉପରେ ଭିତ୍ତିକରି ମହର୍ଷି ଦେବେନ୍ଦ୍ରନାଥ ବ୍ରାହ୍ମ-ସମାଜକୁ ଦିଗ୍‌ଦର୍ଶନ ଦେଲେ ।

କେଶବଚନ୍ଦ୍ର ସେନ୍ ୧୮୫୭ ମସିହାରେ ବ୍ରାହ୍ମସମାଜରେ ଯୋଗ ଦେଲାପରେ ବ୍ରାହ୍ମ ଧର୍ମର ଆଭିମୁଖ୍ୟରେ ଘୋର ପରିବର୍ତ୍ତନ ଦେଖାଗଲା । (୬) ବ୍ରାହ୍ମଧର୍ମର ପ୍ରଚାର ଓ ପ୍ରସାର ପାଇଁ କେଶବଚନ୍ଦ୍ର ଜୀବନକୁ ଉତ୍ସର୍ଗ କରିଥିଲେ । ବ୍ରହ୍ମଜ୍ଞାନ, ବ୍ରହ୍ମଉପାସନା ଏବଂ ବ୍ରହ୍ମ ପ୍ରତି ଆସକ୍ତି ତାଙ୍କ ଜୀବନର ଥିଲା ଶ୍ରେଷ୍ଠ ବ୍ରତ । ଖ୍ରୀଷ୍ଟୀୟାନଧର୍ମ ଏବଂ ପାଶ୍ଚାତ୍ୟ ସଂସ୍କୃତି-ଦ୍ୱାରା ପ୍ରଭାବିତ ହୋଇ ସବୁଧର୍ମର ସମନ୍ୱୟ ରୂପେ ବ୍ରାହ୍ମଧର୍ମକୁ ୧୮୬୦ ସାଲରେ କେଶବଚନ୍ଦ୍ର ଏକ ବୈପ୍ଳବିକ ରୂପ ପ୍ରଦାନକଲେ । ସଙ୍ଗସେବା ବ୍ରାହ୍ମଧର୍ମର ମୌଳିକ ଲକ୍ଷ୍ୟ ହେଲା । ସେ ବ୍ରାହ୍ମଧର୍ମରେ ଖ୍ରୀଷ୍ଟୀୟାନ ଧର୍ମ ଧାରଣା ପ୍ରବେଶ କରାଇଲେ । ଖ୍ରୀଷ୍ଟୀୟାନ ଧର୍ମ ସୁଲଭ ପାପବୋଧ ପ୍ରାର୍ଥନା ଓ ଧର୍ମ ପ୍ରଚାର ବ୍ରାହ୍ମଧର୍ମରେ ଅଧିକ ସ୍ଥାନ ପାଇଲା । ଏ ଯୋଗ ମହର୍ଷି ଦେବେନ୍ଦ୍ରନାଥ ଓ କେଶବସେନଙ୍କ ମଧ୍ୟରେ ମତଭେଦ ଘଟିଥିଲା ।

ଦେବେନ୍ଦ୍ରନାଥ ଅଲଗା ହୋଇ ନିଜକୁ 'ଆଦିବ୍ରାହ୍ମସମାଜ' ନାମରେ ନାମିତ କଲେ । କେଶବଚନ୍ଦ୍ର ସେନ ୧୮୬୬ ସାଲ ନଭେମ୍ବର ୧୧ ତାରିଖରେ 'ଭାରତବର୍ଷୀୟ ବ୍ରାହ୍ମସମାଜ' ସ୍ଥାପନ କଲେ । ୧୮୬୭ ସାଲ ଜାନୁୟାରୀ ୨୪ ତାରିଖରେ ବ୍ରାହ୍ମ ମନ୍ଦିରର ଭିତ୍ତି-ପ୍ରତିଷ୍ଠା ହେଲା । ସେହି ବର୍ଷ ହିନ୍ଦୁ, ମୁସଲମାନ, ଇହୁଦୀ, ବୌଦ୍ଧ, ଶିଖ୍, ଖ୍ରୀଷ୍ଟୀୟାନ ଓ ଚୀନ ଧର୍ମ ଗ୍ରନ୍ଥ ମାନଙ୍କରୁ ସାରତତ୍ତ୍ୱ ଆଣି 'ବ୍ରାହ୍ମଧର୍ମ ପ୍ରତିପାଦକ ଶ୍ଳୋକ ସଂଗ୍ରହ' ପୁସ୍ତକ ପ୍ରଣୀତ ହେଲା । କେଶବଚନ୍ଦ୍ରଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଅଘୋରନାଥ ବ୍ରାହ୍ମଧର୍ମକୁ ସାରା ଭାରତବର୍ଷରେ ଆଜୀବନ ପ୍ରଚାରକଲେ । ତାଙ୍କ ପ୍ରଚେଷ୍ଟାରେ ଭାରତବର୍ଷୀୟ ବ୍ରାହ୍ମସମାଜ ଉପାସନା ମନ୍ଦିର ନିର୍ମିତ

ହୋଇଥିଲା । ୧୮୬୫ ସାଲରେ ମହେନ୍ଦ୍ରନାଥ ବୋଷ ଏବଂ ୧୮୬୬ ସାଲରେ ଗୋବିନ୍ଦଚନ୍ଦ୍ର ରାୟ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । (୮) ତ୍ରୈଲୋକ୍ୟନାଥ ବୋଷ କେଶବ ସେନଙ୍କ ପ୍ରବର୍ତ୍ତିତ ବ୍ରାହ୍ମଧର୍ମର ପ୍ରଚାରଣ କରି ଥିଲେ । ବ୍ରାହ୍ମଧର୍ମ ସମ୍ପର୍କିତ ବହୁ ବଙ୍ଗଳା ସଙ୍ଗୀତ ସେ ରଚନା କରିଯାଇଛନ୍ତି । ୧୮୬୯ ସାଲରେ ପଣ୍ଡିତ ଶିବନାଥ ଶାସ୍ତ୍ରୀ ଉପବୀତ ପରିହାର କରି ଆନୁଷ୍ଠାନିକ ଭାବେ ବ୍ରାହ୍ମସମାଜରେ ଯୋଗ ଦେଇଥିଲେ । ୧୮୭୮ ସାଲରେ କେଶବଚନ୍ଦ୍ର ସେନଙ୍କ ସହିତ ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ମତଭେଦ ଘଟିଲା । ଫଳରେ ଶିବନାଥ ଶାସ୍ତ୍ରୀ 'ସାଧାରଣ ବ୍ରାହ୍ମସମାଜ' ଗଠନ କଲେ । ୧୮୮୦ ମସିହାରେ କେଶବଚନ୍ଦ୍ର ସେନ 'ନବବିଧାନ' ସୃଷ୍ଟି କଲେ । (୯)

ନବ ବିଧାନ ପାଇଁ ସେ ଏକ ପ୍ରତୀକ ପ୍ରଚଳନ କଲେ, ଯହିଁରେ ହିନ୍ଦୁ - ଧର୍ମର ଓଁକାର ସହିତ ଖ୍ରୀଷ୍ଟଧର୍ମର କ୍ରୁଶ ଚିହ୍ନ ସ୍ଥାନ ପାଇଛି ( ବାରିପଦା ନବ ବିଧାନ ମନ୍ଦିର ଫାଟକରେ ଏ ଚିହ୍ନ ଅଛି ) ଊନବିଂଶ ଶତାବ୍ଦୀ ଦ୍ୱିତୀୟ ଭାଗରେ ବ୍ରାହ୍ମଧର୍ମ ତିନି ଭାଗରେ ବିଭକ୍ତ ହୋଇଗଲା । ପ୍ରଥମତଃ ରାମ ମୋହନଙ୍କ ଅନୁଗତମାନେ ନିଜକୁ ଆଦି ବ୍ରାହ୍ମସମାଜ ବୋଲି କହିଲେ । ଦ୍ୱିତୀୟତଃ କେଶବସେନଙ୍କ ଅନୁଗତମାନେ ନିଜକୁ 'ନବବିଧାନ' ବୋଲି ପରିଚୟ ଦେଲେ । ତୃତୀୟତଃ ଶିବନାଥ ଶାସ୍ତ୍ରୀ ପ୍ରଭୃତି ନିଜକୁ ସାଧାରଣ ବ୍ରାହ୍ମ ସମାଜ ବୋଲି କହିଲେ ।

ବଙ୍ଗଳାରୁ ବ୍ରାହ୍ମଧର୍ମ ସ୍ରୋତ ଓଡ଼ିଶା ଆଡ଼କୁ ଗଡିକଲା । ୧୮୫୫ ସାଲରେ ଆଦିବ୍ରାହ୍ମସମାଜର ପ୍ରଚାରକ ଈଶାନଚନ୍ଦ୍ର ସେନ ପ୍ରଥମେ ବାଲେଶ୍ୱରକୁ ଆସି ବ୍ରାହ୍ମଧର୍ମ ପ୍ରଚାର କରିଥିଲେ । (୧୦) ଫକୀରମୋହନଙ୍କ ଆତ୍ମଜୀବନୀରୁ ଏହା ଜଣାପଡ଼େ । ଏହି ସମୟରେ ନିମକ ମହାଲର ପ୍ରସନ୍ନ-କୁମାର ଚାଟାର୍ଜୀ, କଲେକ୍ଟରର ଅଫିସର ହେଡକ୍ଲର୍କ ଜଗବନ୍ଧୁ ଘୋଷ, ପଣ୍ଡିତ ରାମକୁମାର ବିଦ୍ୟାରତ୍ନ, ସାଧୁ ଅଘୋରନାଥ ଗୁପ୍ତ, ଗଭର୍ଣ୍ଣମେଣ୍ଟ ହାଇସ୍କୁଲ ହେଡମାଷ୍ଟର ବାବୁ ଦ୍ୱିଜବର ଦାସଗୁପ୍ତ ପ୍ରଭୃତି ସାଧାରଣ ବ୍ରାହ୍ମ ସମାଜର ପ୍ରଚାର କରିଥିଲେ । ଫକୀରମୋହନ ସେନାପତି,

ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ରାଧାନାଥ ଦାସ, କାଳିନ୍ଦୀ କମିଲ, ଭଗବାନ୍ ଚନ୍ଦ୍ର ଦାସ, ପଦ୍ମଲୋଚନ ଦାସ ବାଲେଶ୍ୱରରେ ବ୍ରାହ୍ମସମାଜ ପରମ୍ପରାକୁ ବଜାୟ ରଖିଥିଲେ (୧୧)। ବ୍ରାହ୍ମସମାଜ ଓଡ଼ିଶାରେ ପ୍ରତିଷ୍ଠା କରିବାରେ ଯେଉଁମାନେ ଦେବେନ୍ଦ୍ରନାଥଙ୍କୁ ସାହାଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଜଗମୋହନ ରାଓ, ଗୌରୀଶଙ୍କର ରାୟ, ଜଗମୋହନ ଲାଲ, ଓ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ। ପ୍ରଥମେ କଟକର ଓଡ଼ିଆବଜାରରେ ଏକ ଭଡ଼ାଘରେ ପ୍ରତି ବୁଧବାରରେ ଉପାସନା କାର୍ଯ୍ୟ ଚାଲିଲା ଏବଂ ସେଠାରେ ଏକ ଘର ତିଆରି କରାଗଲା। (୧୨) ୧୮୬୯ସାଲ ଜୁଲାଇ ୧ତାରିଖରେ କଟକ କଲେଜର ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କଦ୍ୱାରା 'ଉତ୍କଳ ବ୍ରାହ୍ମସମାଜ' ଗଠିତ ହେଲା। ଏହି ସମୟରେ ତାଙ୍କୁ ମଧୁସୂଦନ ରାଓ, ପ୍ୟାରୀମୋହନ ଆଚାର୍ଯ୍ୟ, ବାଲେଶ୍ୱରରୁ ଚତୁର୍ଭୁଜ ପଟ୍ଟନାୟକ ସାହାଯ୍ୟ କରିଥିଲେ। (୧୩) ବ୍ରାହ୍ମସମାଜ ତିନିଭାଗ ହୋଇଥିଲେ ମଧ୍ୟ ଓଡ଼ିଶାର ବ୍ରାହ୍ମସମାଜ ଉପରେ ତା'ର କୌଣସି ପ୍ରଭାବ ପକାଇପାରି ନଥିଲା। ମଧୁସୂଦନ କେଶବଚନ୍ଦ୍ରଙ୍କୁ ବ୍ରାହ୍ମସମାଜର ପଥ ପ୍ରଦର୍ଶକ ବୋଲି କହିଛନ୍ତି। (୧୪)

ଓଡ଼ିଶାରୁ ବିଶ୍ୱନାଥ କର, ରାମକୃଷ୍ଣ ରାଓ, ସାଧୁଚରଣ ରାୟ, ରଘୁନାଥ ସିଂହ, ରଘୁନାଥ ରାଓ ପ୍ରଭୃତି ବାଲେଶ୍ୱର, ଗଞ୍ଜାମ, ପୁରୀ ପ୍ରଭୃତି ଜିଲ୍ଲାରେ ବ୍ରାହ୍ମଧର୍ମର ପ୍ରସାର କରାଇଥିଲେ। (୧୫)

ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରସାର ଓ ପ୍ରଚାରପାଇଁ କେତେକ ପତ୍ରିକାର ସାହାଯ୍ୟ ସ୍ୱୀକାର କରାଯାଇଥାଏ। ସେଗୁଡ଼ିକ ହେଲା ସେବକ (୧୮୮୩), ଆଶା (୧୮୮୮) ସଂସ୍କାରକ (୧୮୮୪), ନବ ବିଧାନ (୧୮୮୯), ନବସମ୍ବାଦ (୧୮୮୬), ସାମ୍ୟବାଦୀ (୧୮୮୬), ଉତ୍କଳ ସାହିତ୍ୟ (୧୮୯୭)।

ମଧୁସୂଦନ ୧୮୭୦ ସାଲରେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ, ୧୮୭୯ରେ ଉତ୍କଳ ବ୍ରାହ୍ମ ସମାଜର ସଂପାଦକ ହେଲେ। ୧୮୮୮ ସାଲରେ କଲିକତା ବ୍ରାହ୍ମ ସମାଜ କାର୍ଯ୍ୟାଳୟ ନିର୍ଦ୍ଦେଶରେ କଟକର ବ୍ରାହ୍ମସମାଜ ଖୁବ୍ ଦୃଢ଼ ହେଲା। ଏହାର ଆଚାର୍ଯ୍ୟ ଭାବେ ମଧୁସୂଦନ ରାଓ ଓ ସଂପାଦକ ଭାବେ ସାଧୁଚରଣରାୟ କାର୍ଯ୍ୟ କରିଥିଲେ। ୧୯୧୧ ସାଲରେ ରମାନାଥ ଦାସ

'ତତ୍ତ୍ୱଗୀତା' ନାମରେ ଗୋଟିଏ ଗ୍ରନ୍ଥରେ ବ୍ରାହ୍ମଧର୍ମ ସମ୍ବନ୍ଧୀୟ ଅନେକ ତତ୍ତ୍ୱର ବିଶ୍ଳେଷଣ କରିଥିଲେ । ୧୯୨୫ ସାଲରେ ନନ୍ଦଲାଲ ବନ୍ଦୋପାଧ୍ୟାୟଙ୍କ ଉଦ୍ୟମରେ ବାରିପଦାରେ ନବବିଧାନ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ମୟୂର-ଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜ ଦେବ କେଶବଚନ୍ଦ୍ର ସେନଙ୍କ କନ୍ୟାଙ୍କୁ ବିବାହ କଲାପରେ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । (୧୬)

୧୮୭୦ ସାଲପରେ ବ୍ରାହ୍ମଧର୍ମ ଓଡ଼ିଶାରେ ଏକ ଆଲୋଡ଼ନ ସୃଷ୍ଟି କରି-ଥିଲା । ଏଫ୍. ଏ. କ୍ଲାସରେ ପଢ଼ୁଥିବା ସମୟରେ କଟକ କଲେଜର ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରେରଣାରେ ମଧୁସୂଦନ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । ଅନେକ ତାଙ୍କୁ ସମାଲୋଚନା କରିଥିଲେମଧ୍ୟ କେବେହେଲେ ସେ ନିଜ ଧାର୍ମିକ ଚିନ୍ତାଧାରାରୁ ବିଚଳିତ ହୋଇ ନଥିଲେ । ବରଂ ଖୁବ୍ ଦକ୍ଷତା ଓ ପ୍ରଶଂସାର ସହିତ ଦୀର୍ଘ ୩୫ ବର୍ଷ ଉତ୍କଳ ବ୍ରାହ୍ମ ସମାଜର ସଂପାଦକ ଓ ଆଚାର୍ଯ୍ୟ ଭାବେ କାର୍ଯ୍ୟ କରିଥିଲେ । ତାଙ୍କର ଉଦ୍ୟମରୁ ଭିକ୍ଟୋରିଆ ପ୍ରେସରୁ ୧୮୯୪ ଜାନୁୟାରୀରେ 'ବ୍ରାହ୍ମ' ପତ୍ରିକା ପ୍ରକାଶ ପାଇଥିଲା । (୧୭)

ସଭାସମିତିରେ ବକ୍ତୃତା ମାଧ୍ୟମରେ ସେ ଲୋକମାନଙ୍କୁ ବ୍ରାହ୍ମଧର୍ମର ମହନୀୟତା ସଂପର୍କରେ ବୁଝାଉଥିଲେ । ବାଲେଶ୍ୱର ଜିଲ୍ଲାସ୍କୁଲ ଇନ୍‌ସ୍-ପେକ୍ଟର ଥିବା ସମୟରେ ୧୮୮୪ମସିହାରେ ବାଲେଶ୍ୱର ସ୍କୁଲ ପରିଦର୍ଶନ ବେଳେ ବାଲେଶ୍ୱରସ୍ଥିତ ବ୍ରାହ୍ମ ମନ୍ଦିରରେ ପୃଥିବୀର ସ୍ୱର୍ଗରାଜ୍ୟ ଅବତରଣ ବିଷୟରେ ମହାଭାବପୂର୍ଣ୍ଣ ଅଗ୍ନିମୟୀ ଭାଷଣଦେଇ ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ । (୧୮)

ଭକ୍ତକବି ମଧୁସୂଦନଙ୍କ ସୃଷ୍ଟିସମ୍ଭାର ବହୁପରିମାଣରେ ବ୍ରାହ୍ମଦର୍ଶନ ଦ୍ୱାରା ପ୍ରତିଫଳିତ । ବ୍ରାହ୍ମଧର୍ମର ସନାତନ ବାଣୀ ଦ୍ୱାରା ତାଙ୍କ ସୃଷ୍ଟିସମ୍ଭାର ନିୟନ୍ତ୍ରିତ । ବ୍ରାହ୍ମଧର୍ମ ତତ୍ତ୍ୱକୁ ଅତି ସରଳ ଭାବରେ କବିତାରେ ସେ ପ୍ରକାଶ କରିଛନ୍ତି ।

ମଧୁସୂଦନଙ୍କ ପ୍ରବନ୍ଧଗୁଡ଼ିକରେ ବ୍ରାହ୍ମଧର୍ମ ଦର୍ଶନ ସ୍ପଷ୍ଟଭାବରେ ପ୍ରତିଫଳିତ ହୋଇଛି । 'ଅନନ୍ତ ଆତ୍ମମାନଙ୍କର ଆଦର୍ଶ' ପ୍ରବନ୍ଧରେ ସୀମା

ଭିତରେ ଅସୀମର ସନ୍ଧାନ; ହୃଦୟକୁ ଉଦାର, ପ୍ରଶସ୍ତ; ଆଦର୍ଶକୁ ବୃହତ୍ ଓ ଉନ୍ନତ କରିବାକୁ ଏବଂ ସବୁପ୍ରକାର ସଂକୀର୍ଣ୍ଣତାକୁ ଦୂରକରି ଅନନ୍ତ ଅଭିମୁଖରେ ଯାତ୍ରା କରିବାକୁ ପ୍ରେରଣା ଦିଏ। ବ୍ରାହ୍ମଧର୍ମ ସବୁଧର୍ମର ଏକ ସମନ୍ୱୟ ରୂପ। 'ପୂର୍ଣ୍ଣଧର୍ମ ପ୍ରବନ୍ଧ'ରେ ଏହାର ସୂଚନା ମିଳେ। 'ଆଧ୍ୟାତ୍ମତତ୍ତ୍ୱ ଚିନ୍ତା' ପ୍ରବନ୍ଧରେ ଉପନିଷଦର ଭାବଧାରା ପ୍ରତିଫଳିତ। ଉପନିଷଦର—'ଈଶାବାସ୍ୟ ମିଦଂ ସର୍ବଂ ଯତ୍କିଞ୍ଚିତ୍ ଜଗତ୍ୟାଂ ଜଗତ' ବାଣୀର ପ୍ରଭାବ 'ସାହିତ୍ୟ କୁସୁମ'ରେ ଦେଖିବାକୁ ମିଳେ। 'ସାହିତ୍ୟ ପ୍ରସଙ୍ଗ' ପୁସ୍ତକର କେତେକ ପ୍ରବନ୍ଧରେ ତାଙ୍କ ଧାର୍ମିକ ଚିନ୍ତାଧାରାର ପ୍ରଭାବ ପଡ଼ିଥିବାର ଦେଖାଯାଏ। ବ୍ରାହ୍ମବାଦୀମାନେ ଏକେଶ୍ୱରବାଦ୍ ଉପରେ ବିଶ୍ୱାସ କରୁଥିଲେ। ସେମାନଙ୍କ ମତରେ ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି। ଏହି ବ୍ରହ୍ମକୁ ଉପାସନାକରିବା ସବୁଠାରୁ ଶ୍ରେଷ୍ଠ ଉପାସନା। ବ୍ରାହ୍ମବାଦୀ ମଧୁସୂଦନ ପ୍ରକୃତିର ଅପରୂପ ନୈସର୍ଗିକ ଶୋଭାରାଶି ମଧ୍ୟରେ, କୋକିଳର କଳକୂଜନରେ, ଝରଣାର ମଧୁର ନିର୍ଝରରେ, ଶିଶୁର କୋମଳତାରେ, ଅନନ୍ତ ଆକାଶରେ ବ୍ରହ୍ମଙ୍କୁ ଉପଲବ୍ଧିକରି ତନ୍ମୟ ହୋଇ ପଡ଼ୁଥିଲେ। 'ଆକାଶ ପ୍ରତି' କବିତାରେ ଅନନ୍ତ ଆକାଶର ନୀଳିମା ଭିତରେ ପରମବ୍ରହ୍ମଙ୍କର ସତ୍ତା ସେ ଦେଖି ଉପଲବ୍ଧି କରିଛନ୍ତି। ଛାନ୍ଦୋଗ୍ୟ ଉପନିଷଦ ଅନୁସାରେ 'ଆକାଶହିଁ ବ୍ରହ୍ମ।' (୧୯) ତୈତ୍ତିରୀୟ ଉପନିଷଦ ଅନୁସାରେ 'ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଔଷଧି, ଔଷଧିରୁ ଅନ୍ନ ଓ ଅନ୍ନରୁ ପୁରୁଷ ଜାତ।' (୨୦) ଆକାଶ ଭଗବାନଙ୍କ ସୃଷ୍ଟିର ମୂଳ ପ୍ରତୀକ। ପଞ୍ଚସଖାଙ୍କ ଧର୍ମର ସୃଷ୍ଟିତତ୍ତ୍ୱ ସହିତ ମଧୁସୂଦନଙ୍କ ସୃଷ୍ଟିତତ୍ତ୍ୱର ସାମଞ୍ଜସ୍ୟ ଦେଖିବାକୁ ମିଳେ। 'ଆକାଶ ପ୍ରତି' କବିତାରେ ମଧୁସୂଦନଙ୍କ ଭଗବନ୍ତବୋଧ ଜନିତ ଚକିତ ମୁଗ୍ଧଦୃଷ୍ଟି ଓ ଈଶ୍ୱର ମିଳନ ଆକାଂକ୍ଷା ସ୍ପଷ୍ଟ ଭାବରେ ଫୁଟିଉଠିଛି। ଅନନ୍ତ ଆକାଶର ଦୃଶ୍ୟ କବିଙ୍କୁ ମହାଉଦାରତାର ପ୍ରେରଣା ଦେଇଛି। ସଂକୀର୍ଣ୍ଣତା ଦୂରକରି ମହାଭାବରେ ମିଶିଯିବା ବ୍ରାହ୍ମବାଦୀମାନଙ୍କ ଉଦ୍ଦେଶ୍ୟ ନିହିତ। କବିଙ୍କ ଭାଷାରେ—

ଧନ୍ୟ ଧନ୍ୟରେ ଆକାଶ ଧନ୍ୟ ତୋ ମହିମା
ମହାଭାବ ଉପୁଜଇ ତୋର ଦରଶନେ,
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା
ସଂସାରର କ୍ଷୁଦ୍ରଭାବ ବିନାଶଇ କ୍ଷଣେ ।

—ଆକାଶ ପ୍ରତି

'ଜୀବନଚିନ୍ତା' କବିତା ତାଙ୍କ ଆଧ୍ୟାତ୍ମ ଜୀବନ ଦର୍ଶନର ଅନ୍ୟତମ ସ୍ୱାକ୍ଷର । କବିଙ୍କର ବିଶିଷ୍ଟ ଧର୍ମ ଧାରଣା, ଜୀବନ ଜିଜ୍ଞାସାର ପ୍ରକୃଷ୍ଟ ପରିଚୟ ଏଥିରୁ ମିଳେ । କବି ସଂସାର ସାଗରକୁ ମାୟାଶୈଳପୂର୍ଣ୍ଣ ବୋଲି ବର୍ଣ୍ଣନା କରିଛନ୍ତି । ଜଗତର ନୟନ ପ୍ରୀତିକର, ମୃଦୁହାସ ରକ୍ତିମ ଅଧର, ନୟନର ରମ୍ୟ ଜ୍ୟୋତି, ସ୍ୱର୍ଣ୍ଣଘନ ସମ ବକ୍ଷ, ଇନ୍ଦ୍ରଧନୁ ପରି ସେସବୁ କ୍ଷଣିକ ।

ଅନିତ୍ୟ ମାୟା ସଂସାର ସମ୍ପର୍କରେ ବୌଦ୍ଧଧର୍ମର 'ଲଳିତ ବିସ୍ତର'ରେ ଏପରି ବାଣୀ ଦେଖିବାକୁ ମିଳେ ।

ଫେନ ବୁଦ୍ ବୁଦ୍ ତୁଲ୍ୟ ସନ୍ନିଭଂ ତବ ରୂପଂ
ମାହାରଙ୍ଗ ମିବା ବିତଥା ବଠଥ ସ୍ୱମତେନ
କ୍ରୀଡ଼ାବୈ ସ୍ୱପ୍ନେବ ଅଧ୍ରୁବା ଅପିନିତ୍ୟା
ବାଳ୍ୟନାଂ ସଦ୍ ଚିତ୍ତ ମୋହନା ଅବୁଧା ନାମ୍ । (୨୧)

କବି ନଶ୍ୱରବୋଧ ସମ୍ପର୍କରେ ଯାହା ଲେଖିଛନ୍ତି ତାହା ମୋହ-ମୁଦ୍‌ଗରରେ ପ୍ରତିଧ୍ୱନିତ ହୋଇଅଛି ।

ମା କୁରୁ ଧନଜନ ଯୌବନ ଗର୍ବମ୍
ହରତି ନିମେଷାତ୍ କାଳଃ ସର୍ବମ୍ ॥ (୨୨)

'ଜୀବନ ଚିନ୍ତା'ରେ ଅବିକଳ ଏହି ଭାବ ରୂପାୟିତ ।

ଧନ ମାନ ଯଶ ଆଦି ଯାହା
ଭାଗ୍ୟଦେବୀ ପ୍ରସାଦରେ ଏ ଭବେ ଲଭନ୍ତି ନରେ
କାଳଚକ୍ର ଆବର୍ତ୍ତନେ କି ବେଗରେ ଆହା
ପଳାନ୍ତରେ ଅନୁସରି ନିଜ ନିଜ ରାହା ।

ମୋହମୁଦ୍‌ଗରର—କାମଂ କ୍ରୋଧଂ ଲୋଭଂ ମୋହଂ ତ୍ୟକ୍ତ୍ୱାତ୍ମାନଂ ଭାବୟ କୋଽହମ୍ ର (୨୭) ଭାବ ଜୀବନଚନ୍ତାରେ ପ୍ରତିଫଳିତ ।

ଏ ସଂସାରେ ନାହିଁ ସୁଖ ଶାନ୍ତି
ଅହଂକାର ଦ୍ୱେଷ ରୋଷ, ଲୋଭ ମୋହ ଅସନ୍ତୋଷ
ଦୁଷ୍ଟ ରିପୁକୁଳ ଘୋର ଅନର୍ଥ ଘଟାନ୍ତି ।

କବି କିନ୍ତୁ ଆଶାବାଦୀ ହୋଇଛନ୍ତି । ଏ ମାୟା, ମର ସଂସାରରୁ ମୁକ୍ତି ପାଇବାର ଉପାୟ ଖୋଜି ପାଇଛନ୍ତି । ସେ ଉପାୟ ହେଉଛି ଆତ୍ମାକୁ ଜାଗ୍ରତ କରି ପରମାତ୍ମା ସହିତ ମିଳନ କରାଇବା । ଏହା ବ୍ରାହ୍ମଧର୍ମର ଚିନ୍ତାଧାରା । ମହର୍ଷି ଦେବେନ୍ଦ୍ରନାଥଙ୍କ 'ତଂ ବେଦ୍ୟଂ ପୁରୁଷଂ ବେଦ ଯଥା ମାବୋ ମୃତ୍ୟୁଃ ପରି-ବ୍ୟାଥାଃ'ର ବ୍ୟାଖ୍ୟା କରିଥିଲେ । ସଂସାରରେ ଯେତେପ୍ରକାର ବିପଦ ରହିଛି ସକଳ ଅପେକ୍ଷା ମୃତ୍ୟୁ ଭୟାନକ । ମୃତ୍ୟୁର କରାଳ ମୂର୍ତ୍ତି ଆମ ସମ୍ମୁଖରେ ସର୍ବଦା ବିଦ୍ୟମାନ । ଅମୃତ ସ୍ୱରୂପଙ୍କୁ ଆଶ୍ରୟ କଲେ ମୃତ୍ୟୁ ଭୟରୁ ମୁକ୍ତହେବୁ (୨୪) । ଦେବେନ୍ଦ୍ରନାଥଙ୍କ ଏ ବାଣୀ ମଧୁସୂଦନଙ୍କୁ ବିମୁଗ୍ଧ କରିଥିଲା । ବ୍ରାହ୍ମ-ମାନେ ସମାଜକୁ ସୁନୀତି ଓ ଧର୍ମନିଷ୍ଠ ଜୀବନଦ୍ୱାରା ପରିଚାଳିତ କରିବାକୁ ଖୁବ୍ ଆଗ୍ରହୀ । ଦେବେନ୍ଦ୍ରନାଥଙ୍କ ପରି ମଧୁସୂଦନ ମଧ୍ୟ ମାନବ ସମାଜକୁ ମୃତ୍ୟୁ ସଚେତନ କରାଇ ସୁପଥଗାମୀ କରାଇବାପାଇଁ 'ଜୀବନଚିନ୍ତା' କବିତା ମାଧ୍ୟମରେ ଚେଷ୍ଟା କରିଛନ୍ତି । 'ଜୀବନଚିନ୍ତା' ଭଗବତବୋଧର ଏକ ସଫଳ ପରିପ୍ରକାଶ । 'ଆଶା' କବିତାରେ ଭଗବତଜ୍ଞାନଜ ଆଶା ଦେଖାଯାଇଛି ।

ତାଙ୍କର ଅନ୍ତରାତ୍ମା, ପରମାତ୍ମା ସହିତ ଲୀନ ହୋଇଯିବାର ପ୍ରବଳ ଉଦ୍‌ବେଗ ଦେଖାଯାଏ ।

ଏ ଭବ-ଭୈରବ-ବନେ ଶ୍ରାନ୍ତ ଅବସନ୍ନ
ପ ଥି କ ଏ କା କୀ
ଭ୍ରମଇ ହରାଇ ପଥ ନିରାଶ ବିଷର୍ଣ୍ଣ
ଦୁଃଖେ ଡାକ ଡାକି ।

× × ×

ଏ ଘୋର ଯନ୍ତ୍ରଣା ଆଉ ନପାରଇ ସହି
ଦେ' ମା ଦରଶନ ।

× × ×

ଦେବେନ୍ଦ୍ରନାଥ ଈଶ୍ୱରଙ୍କୁ ମାତା ରୂପରେ କଳ୍ପନା କରିଛନ୍ତି । ଏପରି କଳ୍ପନା ଉପନିଷଦ୍ ମାନଙ୍କରେ ଦେଖାଯାଏ । ଦେବେନ୍ଦ୍ରନାଥଙ୍କ ଭାଷାରେ "ହେ ସ୍ରଷ୍ଟା-ପୁରୁଷ ମାତା ପରି ତୁମ୍ଭେ ଆମ୍ଭମାନଙ୍କୁ ରକ୍ଷାକର । ତୁମ୍ଭେ ଆମ୍ଭମାନଙ୍କୁ ଶ୍ରୀ ପ୍ରଦାନ କର ।" (୨୫)

ଅନ୍ୟ କବିତାରେ ମଧୁସୂଦନ ଈଶ୍ୱରଙ୍କୁ ଜଗଜ୍ଜନନୀ ଭାବେ ମଧ୍ୟ ପରିକଳ୍ପନା କରିଥିବାର ଦେଖାଯାଏ । ଶୂନ୍ୟବାଦୀ ବୌଦ୍ଧମାନେ ଈଶ୍ୱରଙ୍କୁ ନିରାକାର, ନିରଞ୍ଜନ ରୂପେ ବର୍ଣ୍ଣନା କରିଥାନ୍ତି । ବ୍ରହ୍ମଙ୍କ ସ୍ୱରୂପରେ ଉପନିଷଦ୍‌ରେ କୁହାଯାଇଛି—'ଅପାଣି ପା ଦୋ ଜବନୋ ଗ୍ରହୀତ ପଶ୍ୟ ତ୍ୟ ଚକ୍ଷୁଃ ସ ଶୃଣୋତ୍ୟ କର୍ଣ୍ଣଃ ।

ସ ବେତ୍ତି ବେଦ୍ୟଂ ନଚ ତସ୍ୟାସ୍ତି ବେତ୍ତା
ତମାହୁରୁସ୍ୟଂ ପୁରୁଷଂ ମହାନ୍ତମ୍ । (୨୬)

ମଧୁସୂଦନଙ୍କ ଭାଷାରେ ଈଶ୍ୱର ହସ୍ତପଦହୀନ ହୋଇ ମଧ୍ୟ ଦେଖୁଛନ୍ତି ଏବଂ ସବୁ ଗ୍ରହଣ କରୁଛନ୍ତି । ନେତ୍ରହୀନ କର୍ଣ୍ଣହୀନ ହୋଇ ମଧ୍ୟ ସବୁ ଦେଖୁଛନ୍ତି ଓ ଶୁଣୁଛନ୍ତି । 'ସ୍ତବ' କବିତାରେ ଏହାର ପରିପ୍ରକାଶ ଦେଖାଯାଏ । ଅଥର୍ବ ବେଦରେ ପୃଥିବୀର ମହନୀୟତା ସମ୍ପର୍କରେ କୁହାଯାଇଛି । 'ମାତାଭୂମି ପୁତ୍ରୋଽହଂ ପୃଥିବ୍ୟାଃ' (୨୭) ମଧୁସୂଦନଙ୍କ 'ପୃଥିବୀ ପ୍ରତି' କବିତାରେ ଏ ଭାବଧାରା ଦେଖାଯାଏ ।

ତୁହି ମା ଧରଣୀ ଜନନୀ ମୋହର
ଧରିଛୁ ମା ମୋତେ କୋଳେ

'ଛଅ ଋତୁ' କବିତାରେ ଛଅ ଋତୁ ବର୍ଣ୍ଣନାରେ କବି ବୈଦିକ ଚିନ୍ତାଧାରା ଦ୍ୱାରା ନିୟନ୍ତ୍ରିତ ହୋଇଛନ୍ତି । 'ଭାରତୀ ବନ୍ଦନା' କବିତାରେ ବୈଦିକ ଚେତନା ପ୍ରତିଫଳନ କରାଯାଇଛି । 'ସରସ୍ୱତୀ' ବୈଦିକ ଯଜ୍ଞର ଅଧିଷ୍ଠାତ୍ରୀ ଦେବୀ । ଋକ୍ ବେଦରେ ସରସ୍ୱତୀଙ୍କ ମହିମାଗାନ କରାଯାଇଛି । ଭାରତୀ

ବନ୍ଦନା କବିତାରେ ବନ୍ଧ୍ୟା ଅଧିଷ୍ଠାତ୍ରୀ ଦେବୀଙ୍କୁ ସ୍ତୁତି କରାଯାଇଛି । ଭାଗବତ-ବୋଧ ବ୍ରାହ୍ମଧର୍ମର ଅନ୍ୟ ଏକ ପରମ୍ପରା । ମହର୍ଷି ଦେବେନ୍ଦ୍ରନାଥ ଋକ୍‌ବେଦର ଏକ ସୂକ୍ତ ( ୧ । ୬ । ୮୩ ) ବ୍ୟାଖ୍ୟାନ ପୂର୍ବକ ଯାହା କହିଥିଲେ 'ସ୍ତୋତ୍ର' କବିତାରେ ତାହା ଅନୁରୂପ ଭାବେ ଦେଖାଯାଏ । 'ଶ୍ମଶାନ କବିତା'ରେ ମୃତ୍ୟୁ ସମ୍ପର୍କୀୟ ଚିନ୍ତାଧାରା ଋକ୍‌ବେଦର ମୃତ୍ୟୁ ତତ୍ତ୍ୱର ଅନୁରୂପ ମାତ୍ର ।

ରେଣୁମାୟୀ ଲୁହେଁ କିଛି ସକଳ ଅସ୍ଥିର,
ଜୀବନ ଯୌବନ ଧନ ପଦ୍ମ ପତ୍ର ନୀର ।

ଏଥିରେ ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗରର—'ନଳିନୀ ଦଳଗତ ଜଳବତ୍ତରଳଂ ଯୌବନଂ ଧନଂ ଆୟୁଃ'ର ପ୍ରଭାବ ସ୍ପଷ୍ଟ ପ୍ରତିଫଳିତ ।

'ଋଷିପ୍ରାଣେ ଦେବାବତରଣ' କବିତା ବୈଦିକ ଚେତନାର ଏକ ସଫଳ ପରିପ୍ରକାଶ । ଏହି କବିତାର ପ୍ରତି ଛନ୍ଦେ ଛନ୍ଦେ ଉପନିଷଦର ବାଣୀ ପ୍ରତି-ଧ୍ୱନିତ । ଋଷି ମନେ ମନେ ଅନୁଭବ କରିଛନ୍ତି ଈଶ୍ୱରଙ୍କ ଅମର ମୂର୍ତ୍ତି । ତାଙ୍କର ଅଲୌକିକ ରୂପ, ସେ ଜଙ୍ଗମ ସ୍ଥାବର ସବୁଠାରେ ପରିବ୍ୟାପ୍ତ । ସେ ଅନନ୍ତ ଅନଳ ସ୍ୱରୂପ । ଏହା ଉପନିଷଦର ବାଣୀଦ୍ୱାରା ପ୍ରଭାବିତ ।

ବ୍ରହ୍ମୈବେଦମମୃତଂ ପୁରସ୍ତାତ ବ୍ରହ୍ମ
ପଶ୍ଚାତ ବ୍ରହ୍ମ ଦକ୍ଷିଣ ତ ଶ୍ଚୋତ୍ତରେଣ ।

ଅଧଶ୍ଚୋର୍ଦ୍ଧ୍ୱଂଚ ପ୍ରସୃତଂ ବ୍ରହ୍ମୈ ବେଦଂ ବିଶ୍ୱମିଦଂ ବରିଷ୍ଠମ୍ । (୨୭)
ମଧୁସୂଦନଙ୍କ କବିତାରେ—

ସମ୍ମୁଖେ ପଶ୍ଚାତେ ସେହି ନିମ୍ନେ ଊର୍ଦ୍ଧ୍ୱେ ସେହି
ଦକ୍ଷିଣେ ବାମରେ ସେହି, ଅଥଚ ଅଦେହୀ ।

ଉପନିଷଦ ଅନୁସାରେ ଅମୃତ ବ୍ରହ୍ମ ଆଗରେ, ପଛରେ, ଦକ୍ଷିଣରେ ବାମରେ ଏବଂ ଉପରେ ତଳେ ସର୍ବତ୍ର ପରିବ୍ୟାପ୍ତ । ସମୁଦାୟ ଜଗତରେ ବ୍ରହ୍ମହିଁ ସର୍ବଶ୍ରେଷ୍ଠ ଅଟନ୍ତି । ମଧୁସୂଦନଙ୍କ କବିତାରେ ଏ ଭାବ ପ୍ରତିଫଳିତ । ଓଁକାର ବୈଦିକ ହିନ୍ଦୁଧର୍ମରେ ସର୍ବଶ୍ରେଷ୍ଠ ବ୍ରହ୍ମ । ଓଁକାର ଉପାସନା ସବୁ ଉପାସନାରୁ ଶ୍ରେଷ୍ଠ । ବ୍ରାହ୍ମଧର୍ମରେ ଏହି ବୈଦିକ ଓଁକାର ସବୁଠାରୁ ବେଶି

ପ୍ରାଧାନ୍ୟ ଦେଇଥାନ୍ତି । 'ଋଷିପ୍ରାଣେ ଦେବାବତରଣ' କବିତାରେ ଓଁକାର ଉପାସନାକଥା ଲେଖିଛନ୍ତି—

ବିଶ୍ୱବ୍ୟାପୀ ଅସ୍ତିତ୍ୱର ଓଁକାର ଝଙ୍କାର
ସୁମନ୍ଦ୍ର ଧ୍ୱନିରେ ପୂରେ ନିଖିଳ ସଂସାର ।

× × ×

ତୁମ୍ଭର ଓଁକାରମୟୀ ବାଣୀ ନିରନ୍ତର
ପବିତ୍ର ଝଙ୍କାର ପୂରୁ ଏ ପ୍ରାଣ କନ୍ଦର ।

ପ୍ରକୃତିର ଅପରୂପ ନୈସର୍ଗିକ ଶୋଭାରେ ଋଷି ନିଜ ଦିବ୍ୟ ଚେତନାକୁ ହରାଇଥିବାରୁ ଗଭୀର ଅନୁତାପ କରିଛନ୍ତି । ଏ ପାପବୋଧଜନିତ ଅନୁତାପ ଖ୍ରୀଷ୍ଟିୟାନ୍ ଧର୍ମର ପାପବୋଧ ଦ୍ୱାରା ପ୍ରଣୋଦିତ ବ୍ରାହ୍ମ-ଚେତନାର ଫଳ । କବି ବାସ୍ତବ ଦୁନିଆରୁ ଦୂରରେ ରହି ଦେହାତୀତ ଓ କାଳାତୀତର କଳ୍ପନାରେ ତନ୍ମୟ ।

ଅଦୃଶ୍ୟ ଅଲୌକିକ ପରମାତ୍ମା ନିକଟରେ ଆତ୍ମସମର୍ପଣ କରିବାପାଇଁ ସେ ବ୍ୟଗ୍ର । ବିଶ୍ୱକବି ରବୀନ୍ଦ୍ରନାଥ ବ୍ରାହ୍ମଧର୍ମର ଥିଲେ ଅନ୍ୟତମ ପୁରୋଧା ।' ମଧୁସୂଦନଙ୍କ ସହିତ ତାଙ୍କର ଘନିଷ୍ଠତା ଥିଲା । ଗୀତାଞ୍ଜଳିର ଚିନ୍ତାଧାରା ମଧୁସୂଦନଙ୍କ ଚିନ୍ତାଧାରାରେ ପ୍ରତିଫଳିତ ।

ସୁନ୍ଦର ତୁମି ଏସେଛିଲ ଆଜ ପ୍ରାତେ
ଅରୁଣ ବରଣ ପାରିଜାତ ଲୟେ ହାତେ ।
ନିଦ୍ରିତପୁରୀ ପଥିକ ଛିଲନା ପଥେ
ଏକା ଚଲେଗେଲ ତୋମାରେ ସୋନାର ରଥେ ।

—ଗୀତାଞ୍ଜଳି

ବିଶ୍ୱପ୍ରାଣ-ସ୍ପର୍ଶି ଆହା ଉଷାର ଉତ୍ସବେ
ମାତିଲେ ସୁହାସମୟୀ ବିଗବଧୂ ସରବେ ।
ଶିଶିର ଜଳରେ ଧୋଇ ଉଷା ଶ୍ରୀଚରଣ
ଲଭିଲେ ଆଶିଷ-ରୂପେ ଦିବ୍ୟ ଆଭରଣ ।

—ଋଷିପ୍ରାଣେ ଦେବାବତରଣ

ମଧୁସୂଦନ 'ନବ ବସନ୍ତ ଭାବନା'ରେ କେବଳ ଋତୁଲାଗି ବସନ୍ତ କଥା ଭାବୁ ନାହାନ୍ତି । ମାନବ ହୃଦୟରେ ଚିରଦୁଃଖ ଦୈନ୍ୟର ବିଲୋପ କରି କିପରି ଚିରବସନ୍ତ ବିରାଜିତ ହେବ ସେ ସମ୍ପର୍କରେ ଅନୁଚିନ୍ତା କରିଛନ୍ତି । ଉପନିଷଦରେ କୁହାଯାଇଛି ଶ୍ରେୟ ଓ ପ୍ରେୟ ମିଳିତ ହୋଇ ମାନବ ପାଖକୁ ଆସନ୍ତି । ବୁଦ୍ଧିମାନ ବ୍ୟକ୍ତି ନିଜ ବୁଦ୍ଧି ବଳରେ ଏ ଦୁଇଟିକୁ ଅଲଗା କରି ଦିଏ । ବିବେକୀ ପ୍ରେୟକୁ ଛାଡ଼ି ଶ୍ରେୟକୁ ଗ୍ରହଣ କରେ ଏବଂ ବ୍ରହ୍ମପାଦରେ ଆଶ୍ରୟ ନେଇ ନବ ଜୀବନର କଳ୍ପନା କରେ ।

'ନଦୀ ପ୍ରତି'ର ଭାବଧାରା ଉପନିଷଦରୁ ଆନୀତ ।

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେ ତ ସ୍ତଂଗଛନ୍ତି ନାମ ରୂପେ ବିହାୟ

ତଥା ବିଦ୍ୱାନାମ ରୂପାଦ୍ୱିମୁକ୍ତଂ ପରାତ୍ପରଂ ପୁରୁଷଂମୁ ପୈତିଦିବ୍ୟବ । (୨୮)

ଭାଗବତବୋଧର ବଳିଷ୍ଠ ରୂପାୟନ ନାହିଁ 'ନଦୀ ପ୍ରତି' ଏକ ପ୍ରତୀକ ମାତ୍ର । ପଦ୍ମଫୁଲ ମାଧ୍ୟମରେ କବି ବ୍ରହ୍ମସତ୍ତା ଉପଲବ୍ଧି କରିଛନ୍ତି । ବୌଦ୍ଧ-ଧର୍ମରେ ପଦ୍ମ ଆତ୍ମସୃଜନର ପ୍ରତୀକ । ତେଣୁ ପ୍ରତ୍ୟେକ ବୌଦ୍ଧମୂର୍ତ୍ତି ପାଖରେ ପଦ୍ମଫୁଲ ଚିତ୍ରଥାଏ । ଆଦିବୁଦ୍ଧ ପଦ୍ମରୁ ନିର୍ଗତ ଲେଲିହାନ ଶିଖାରୁ ଅଗ୍ନିଶିଖା ରୂପେ ଆତ୍ମପ୍ରକାଶ କରିଥିବା କଥା ବୌଦ୍ଧ ଧର୍ମଗ୍ରନ୍ଥରେ ଦେଖାଯାଏ । ବ୍ରହ୍ମ ନିକଟରେ ଆତ୍ମ ସମର୍ପଣ ବ୍ରାହ୍ମବାଦୀମାନଙ୍କ ଅନ୍ୟ ଏକ ଉପାଦାନ । ଈଶ୍ୱରଙ୍କ ପ୍ରତି ମନ ପ୍ରାଣ ସମର୍ପଣ କରିବା ବୈଷ୍ଣବମାନଙ୍କର ଚରମ ଲକ୍ଷ୍ୟ । କାମନାହୀନ ଭାବରେ ପରମେଶ୍ୱରଙ୍କ ନିକଟରେ ଆତ୍ମସମର୍ପଣ କଲେ ମୁକ୍ତି ମିଳେ । ପରମାତ୍ମା ବ୍ୟତୀତ ଜୀବାତ୍ମାର ଅନ୍ୟ ଗତି ନାହିଁ । ପରମାତ୍ମା ତାର ଶ୍ରେଷ୍ଠ ଲକ୍ଷ୍ୟ ।

ପରମାତ୍ମାଙ୍କ ଚରଣରେ ଆତ୍ମସମର୍ପଣ କରି କବି ଲେଖିଛନ୍ତି :—

ଏ ପ୍ରାଣ ବୀଜର ଅଟ ହେ ସବିତା
ତୁମ୍ଭ ପ୍ରେମାଲୋକେ ଯିନା
ହେବ ଅଙ୍କୁରିତ ପୁଷ୍ପିତ ଫଳିତ
କାହିଁ ଗତି ତୁମ୍ଭ ବିନା ।

—'ଆତ୍ମ ସମର୍ପଣ'

ଅମୃତମୟ ପରମେଶ୍ୱର । ସେ ଜଗତର ସୃଷ୍ଟିକର୍ତ୍ତା । ତାଙ୍କ ସୃଷ୍ଟି ମଧ୍ୟ ଅମୃତମୟ । ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟ ମଧ୍ୟରେ ଈଶ୍ୱରଙ୍କ ଅମୃତସତ୍ତା ଉପଲବ୍ଧି କରି ଅମୃତମୟ ସୃଷ୍ଟିର କବି ଜୟଗାନ କରିଛନ୍ତି 'ଏ ସୃଷ୍ଟି ଅମୃତମୟ' କବିତାରେ ।

ଉପନିଷଦର 'ଅମୃତସ୍ୟ ପୁତ୍ରାଃ ସର୍ବେ' ପରିଚୟ ଏଥିରେ ମିଳେ ।

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତ ମୟ ହେ
ଜାଗ ନରନାରୀ ଅମୃତ ସନ୍ତତି
ପିଅ ସେ ଅମୃତ ପୟ ହେ ।

ବ୍ରହ୍ମନିଷ୍ଠ, ଜ୍ଞାନପରାୟଣ, କର୍ତ୍ତବ୍ୟନିଷ୍ଠ ବ୍ରାହ୍ମବାଦୀମାନଙ୍କର ଶ୍ରେଷ୍ଠ ଲକ୍ଷ୍ୟ । ସେମାନଙ୍କ ମତରେ ଏ ପାପତାପ ସଂସାରରୁ ଆତ୍ମାକୁ ମୁକ୍ତ କରିବାକୁ ହେଲେ ବ୍ୟକ୍ତି ବ୍ରହ୍ମନିଷ୍ଠ ହେବାକୁ ପଡ଼ିବ ।

'ନୀତି ରତ୍ନମାଳା'ରେ ମଧୁସୂଦନ ଏହି ଭାବଧାରା ଉପରେ ଜୋର୍ ଦେଇଛନ୍ତି ।

ହେ ଗୃହସ୍ଥ ହୁଅ ସଦା ବ୍ରହ୍ମନିଷ୍ଠ ଜ୍ଞାନ ପରାୟଣ
ଯେଉଁ କର୍ମ ଆଚରିବ ବ୍ରହ୍ମପଦେ କର ସମର୍ପଣ ।

ଶିଶୁମାନେ ସମାଜର ଭବିଷ୍ୟତ । ଶିଶୁମାନଙ୍କୁ ଧର୍ମମାର୍ଗୀ କରିବାପାଇଁ ଭକ୍ତକବି ମଧୁସୂଦନ ଚାହିଁଥିଲେ । ସରଳ ଉପଦେଶ ଓ କୋମଳ ପଦ୍ୟାବଳୀ ମାଧ୍ୟମରେ କବି ଶିଶୁମାନଙ୍କୁ ଧର୍ମନିଷ୍ଠ ହେବାକୁ ଆହ୍ୱାନ ଦେଇଛନ୍ତି । ପରମେଶ୍ୱର, ସ୍ତବ, ସୁନ୍ଦର ସଂସାର, ସଙ୍ଗ, ବିଦ୍ୟା, ସତ୍ୟବ୍ରତ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ କବିତାଗୁଡ଼ିକ ତା'ର ପରିପ୍ରକାଶ । ଛନ୍ଦମାଳାର 'ନାମଭକ୍ତି'ରେ ଆଦି ଦେବ ମହେଶ୍ୱରଙ୍କୁ ଭକ୍ତିଭରେ ଚିନ୍ତା କରିବାକୁ କହିଛନ୍ତି । ସେହି ଆଦି ମହେଶ୍ୱର ସର୍ବବିଧାୟକ, ସର୍ବକାରଣ । ତାଙ୍କୁ ସତତ ଭକ୍ତି କରିବା, ତାଙ୍କ ଠାରେ ଶରଣାପନ୍ନ ହେବା ଉଚିତ । ବ୍ରାହ୍ମ ସମାଜର ବହୁ ସଙ୍ଗୀତରେ ଏହି ଚିନ୍ତାଧାରା ପ୍ରତିଫଳିତ ହୋଇଥିବାର ଦେଖାଯାଏ । (୨୯) ଛନ୍ଦମାଳାରେ

ଶିଶୁମାନଙ୍କୁ କବି ଯେଉଁ ନୀତିଶିକ୍ଷା ଓ ନୀତି ବାଣୀ ମାନ ପ୍ରଦାନ କରିଛନ୍ତି ଏହି ଅନୁରୂପ ନୀତି ଶିକ୍ଷା ଓ ଉପଦେଶ ବୌଦ୍ଧ ଜାତକ ଗୁଡ଼ିକରେ ଦେଖା-ଯାଏ ।

୧୮୬୬ ମସିହାରେ ଭାରତବର୍ଷୀୟ ବ୍ରାହ୍ମ ସମାଜର ଆନୁକୂଲ୍ୟରେ 'ବ୍ରାହ୍ମଧର୍ମ ପ୍ରତିପାଦକ ଶ୍ଳୋକ ସଂଗ୍ରହ' ସଂକଳିତ ହେଲା । ବିଭିନ୍ନ ଧର୍ମର ସାରତତ୍ତ୍ୱ ଏଥିରେ ସ୍ଥାନ ପାଇଲା । କେଶବ ସେନ୍‌ଙ୍କ 'ନବ ବିଧାନ'ରେ ସର୍ବଧର୍ମ ସମନ୍ୱୟ ଚିନ୍ତା ପ୍ରତିଫଳିତ ହେଲା । ପରେ 'ନବବିଧାନ' ଆନୁକୂଲ୍ୟରେ 'ବ୍ରାହ୍ମ ସଙ୍ଗୀତ ଓ ସଙ୍କୀର୍ତ୍ତନ' ସଂଗୃହୀତ ହୋଇ ପୁସ୍ତକ ଆକାରରେ ପ୍ରକାଶ ପାଇଲା । ମଧୁସୂଦନଙ୍କ 'ସଙ୍ଗୀତମାଳା' ବ୍ରାହ୍ମ ସଙ୍ଗୀତ ଭିତ୍ତିରେ ରଚିତ । ସଙ୍ଗୀତମାଳାର ନଂ ୧୦, ୧୧, ୧୨, ୧୩, ୧୫, ୩୨, ୮୬, ୯୩ ଓ ୧୦୦ ଗୀତରେ କବିଙ୍କ ବ୍ରାହ୍ମନିଷ୍ଠ ହୃଦୟର ପରିଚୟ ମିଳେ । ଏହି ସଙ୍ଗୀତମାଳା ବ୍ରାହ୍ମ ସମାଜର ଉତ୍ସବ ଉପଲକ୍ଷେ ରଚିତ । ସଙ୍ଗୀତମାଳାରେ ବ୍ରାହ୍ମମହିମା ପ୍ରଖ୍ୟାପନ ଏକ ପ୍ରଧାନ ସ୍ଥାନ ଅଧିକାର କରିଛି । ବ୍ରାହ୍ମମାନେ ସତ୍ୟକୁ ଏକ ଶାଶ୍ୱତ ବ୍ରହ୍ମ ଭାବେ ଗ୍ରହଣ କରୁଥିଲେ । ନଂ ୧୩ ସଙ୍ଗୀତରେ ଅସୀମ ସୁନ୍ଦର ବ୍ରହ୍ମ ପଦରେ ବିଶ୍ୱାସନେହ ଲାଗି ରଖିବାକୁ କବି କାମନା କରିଛନ୍ତି । ନଂ୧୫ ଗୀତରେ ଦ୍ୟୁଲୋକ ଭୂଲୋକ, ସାଗର ପର୍ବତ, ସମଗ୍ର ବିଶ୍ୱ କବି ଚକ୍ଷୁରେ ବ୍ରହ୍ମ ନିକେତନ ରୂପେ ପ୍ରତିଭାତ ହୋଇଛି । କବିଙ୍କୁ ସକଳ ଦିଗ, ସକଳ ବସ୍ତୁ ବ୍ରହ୍ମମୟ ଦେଖାଯାଇଛି । ଦେହ, ମନ, ପ୍ରାଣ ସର୍ବତ୍ର ବ୍ରହ୍ମ ବିଦ୍ୟମାନ ।

ବ୍ରହ୍ମ ପିତା ବ୍ରହ୍ମ ମାତା ବ୍ରହ୍ମ ନରନାରୀ ତ୍ରାତା
ବ୍ରହ୍ମ ମଙ୍ଗଳବିଧାତା ବ୍ରହ୍ମ କରୁଣାନିଧାନ ।
ଜୀବର ପରମଗତି ବ୍ରହ୍ମ ସଖା ବ୍ରହ୍ମ ପତି
ବ୍ରହ୍ମ ଚରଣରେ ମତି ରହୁ ମୋର ଅନୁକ୍ଷଣ ।

ବ୍ରହ୍ମ ଜଗତର ପରିକଳ୍ପନା ଉପନିଷଦରେ ରହିଛି । କଠୋପନିଷଦରେ ବ୍ରହ୍ମକୁ 'ଅଶବ୍ଦମ୍ ସ୍ପର୍ଶ ରୂପମ୍ ବ୍ୟୟମ୍' (୩୦) ତୈତିରୀୟ ଉପନିଷଦରେ ବ୍ରହ୍ମ ଆକାଶପରି ବୃହତ ଏବଂ ସର୍ବବ୍ୟାପ୍ତ ବୋଲି ବର୍ଣ୍ଣିତ । (୩୧) ବ୍ରାହ୍ମ ଧର୍ମର ସ୍ୱରୂପ, ଏହାର ପ୍ରାଧାନ୍ୟ ସଙ୍ଗୀତମାଳାର ୪ ନଂ ଗୀତରେ କହିଛନ୍ତି ।

ସର୍ବ ଯୁଗଧର୍ମ ସାର ବ୍ରାହ୍ମ ଧର୍ମ ସହୋଦର
ଅଧୀନତା-ଅନ୍ଧକାର କରୁଛୁ ହରଣ ।

ଖ୍ରୀଷ୍ଟୀୟାନ ଧର୍ମରେ ଯୀଶୁଙ୍କୁ ଜୀବର ପରମ ପିତା ମାତା ଓ ଜୀବନର ଶାଣକର୍ତ୍ତା ଭାବେ କୁହାଯାଇଥାଏ । ସଙ୍ଗୀତମାଳାର ୨୫ନଂ ଗୀତରେ ଏହାର ଅନୁରୂପ ଦେଖାଯାଏ ।

ପରମ ପିତା ମାତା ଜୀବର ପରିଶାତା
ମୁଁ ଜୀବ ପାଶେ ନିତ୍ୟ ବର୍ତ୍ତମାନ ।

ବ୍ରାହ୍ମଧର୍ମ ମଧୁସୂଦନଙ୍କ ଧାର୍ମିକ ଚିନ୍ତାଧାରାର ଏକ ଚରମ ଆଦର୍ଶ ଥିଲା । ବ୍ରାହ୍ମଧର୍ମର ପ୍ରସାର ଓ ପ୍ରଚାର ପାଇଁ ସାରା ଜୀବନ ଉତ୍ସର୍ଗ କରିଥିଲେ । ବ୍ରାହ୍ମବାଦୀ ଆନ୍ଦୋଳନକୁ କବି ଏକ ନବଯୁଗର ଅଭିଷେକ ଭାବରେ ବର୍ଣ୍ଣନା କରିଛନ୍ତି । ସମସ୍ତେ ବ୍ରାହ୍ମ ସନ୍ତାନ । ସମସ୍ତେ ତା'ର ଆହ୍ୱାନ କରିବା ଉଚିତ ।

ବ୍ରାହ୍ମଧର୍ମକୁ ଲୋକପ୍ରିୟ କରିବା ପାଇଁ ମଧୁସୂଦନ କଠିନ ପରିଶ୍ରମ କରିଥିଲେ । ବଙ୍ଗଳାରେ ବ୍ରାହ୍ମଧର୍ମ ପର୍ଯ୍ୟାୟକ୍ରମେ ବିଭିନ୍ନ ଗୋଷ୍ଠୀ ଦ୍ୱାରା ବିଭକ୍ତ ହୋଇ ଧର୍ମ ଦର୍ଶନର ଭିନ୍ନ ବ୍ୟାଖ୍ୟା କଲେ ମଧ୍ୟ ତାର ପ୍ରଭାବ ଓଡ଼ିଶାର ବ୍ରାହ୍ମ ସମାଜ ଉପରେ ପଡ଼ି ନଥିଲା । ମହର୍ଷି ଦେବେନ୍ଦ୍ରନାଥଙ୍କ ପ୍ରଯୋଜିତ ବ୍ରାହ୍ମ ଉପାସନା ମାର୍ଗରେ ଜ୍ଞାନର ପ୍ରଧାନ୍ୟ, କେଶବ ଚନ୍ଦ୍ର ସେନଙ୍କ ପ୍ରବର୍ତ୍ତିତ ଭାରତୀୟ ବ୍ରାହ୍ମସମାଜର ନବବିଧାନରେ ଅଖଣ୍ଡ ବିଶ୍ୱାସ, ଭକ୍ତି ସ୍ପର୍ଶ ଏବଂ ଶିବନାଥ ଶାସ୍ତ୍ରୀଙ୍କ ପରିକଳ୍ପିତ ବ୍ରାହ୍ମସମାଜର ସତ୍‌କର୍ମ ସାଧନା, ବ୍ୟକ୍ତିଗତ ଚରିତ୍ର ଗଠନ, କଲ୍ୟାଣମୂଳକ କାର୍ଯ୍ୟ ସାଧନ, ମୈତ୍ରୀ ଭାବ ଏବଂ ଅଖଣ୍ଡ ପ୍ରୀତିଭାବ ମଧୁସୂଦନଙ୍କ ଚିନ୍ତାଧାରାରେ ପ୍ରତିଫଳିତ ।

ମଧୁସୂଦନଙ୍କ ରଚନାବଳୀରେ ଉପନିଷଦର ଚିନ୍ତାଧାରାର ପରିପ୍ରକାଶ ଘଟିଥିଲେ ମଧ୍ୟ ତାହା ଉପନିଷଦ ପରି ଜ୍ଞାନାଶ୍ରୟୀ ନୁହେଁ, ବରଂ ସେଥିରେ ପ୍ରେମ ଓ କରୁଣାର ପ୍ରବାହ ମଧ୍ୟ ଦେଖାଯାଏ ।

## ଗ୍ରନ୍ଥ ସୂଚୀ—

(୧) The Evolution of Navavidhan—N. Gosh 1930, P—23
(୨) Bengali Literature in the Nineteenth Century, 1902, by—S. K. Dey, P—536
(୩) ଓଡ଼ିଆ ସାହିତ୍ୟରେ ଧର୍ମଧାରା (Desartation)—ଫକୀରଚରଣ ଦାସ, U. libraryରେ ସଂରକ୍ଷିତ, P—282.
(୪) History of Bramha Samaj. Vol—1, P—74
(୫) ଦେବେନ୍ଦ୍ରନାଥଙ୍କ ଆତ୍ମଜୀବନୀ—ପୃ—୩୨୧-୩୭୨
(୬) ଓଡ଼ିଆ ସାହିତ୍ୟରେ ଧର୍ମଧାରା—ଫକୀରଚରଣ ଦାସ । ପୃ-୨୮୨
(୭) The Evolution of Navavidhan. P-350
(୮) ତତ୍ରୈବ । ପୃ-୭୫
(୯) Philosophy of Bramhism—S. Tattabhusan.
(୧୦) ଓଡ଼ିଶା ଗଦ୍ୟ ସାହିତ୍ୟର ବିକାଶଧାରା—ପି· ଏଚଡ଼ି, ଥେସିସ୍, ( U. libraryରେ ସରକ୍ଷିତ ) ଡ. ଗୋପାଳଚନ୍ଦ୍ର ମିଶ୍ର, ପୃ-୪୦୧:
(୧୧) ଉତ୍କଳ ଦୀପିକା—୧୧।୯।୧୮୭୯ ସମ୍ବାଦପତ୍ରରୁ ଓଡ଼ିଶାର କଥା
(୧୨) ଓ.ଗ. ସାହିତ୍ୟର ବିକାଶଧାରା—ଡଃ ଗୋପାଳ ଚନ୍ଦ୍ର ମିଶ୍ର । ପୃ-୪୦୧
(୧୩) ଉତ୍କଳବ ମଧୁସୂଦନ ରାଓ ଓ ଉତ୍କଳେ ନବଯୁଗ—ଅବନ୍ତୀ ଦେବୀ
(୧୪) ଉତ୍କଳ ସାହିତ୍ୟ—୧୭।୫
(୧୫) ଓ· ଗଦ୍ୟ ସାହିତ୍ୟର ବିକାଶଧାରା—ଡଃ. ଗୋପାଳ ଚନ୍ଦ୍ର ମିଶ୍ର
(୧୬) ଓ. ସାହିତ୍ୟରେ ଧର୍ମଧାରା—ଫକୀରଚରଣ ଦାସ—ପୃ-୨୦୫
(୧୭) ମଧୁସୂଦନ ଗ୍ରନ୍ଥାବଳୀର ମୁଖବନ୍ଧ
(୧୮) ସେବକ—୧।୮ ସଖ୍ୟା, ଅପ୍ରେଲ୍ ୧୮୮୪
(୧୯) ଛାନ୍ଦୋଗ୍ୟ ଉପନିଷଦ—୧।୯।୧
(୨୦) ତୈତ୍ତିରୀୟ ଉପନିଷଦ—୨।୧।୧

(୨୧) ଲଳିତ ବିସ୍ତର—୧୧।୧୧।୩
(୨୨) ମୋହ ମୁଦ୍‌ଗର—୩ୟ ପଦ, ଶଙ୍କରାଚାର୍ଯ୍ୟ
(୨୩) ,, —୧୫ଶ ପଦ ।
(୨୪) ବ୍ରାହ୍ମଧର୍ମେର ବ୍ୟାଖ୍ୟାନ—୧ମ ବ୍ୟାଖ୍ୟାନ ପୃ-୧
(୨୫) ,, ,, — ,, ପୃ-୮୫
(୨୬) ଶ୍ୱେତାଶ୍ୱେତରୋପ ନିଷଦ—୩।୧୯
(୨୭) ମୁଣ୍ଡକ ଉପନିଷଦ—୨।୧।୧୧
(୨୮) ,, —୩।୨।୮
(୨୯) ବ୍ରାହ୍ମ ସଙ୍ଗୀତ ଓ ସଙ୍କୀର୍ତ୍ତନ—ଭାରତବର୍ଷୀୟ ବ୍ରାହ୍ମମନ୍ଦିର ଦ୍ୱାରା ସଂକଳିତ
(୩୦) କଠୋପନିଷଦ—୧।୩।୧୪
(୩୧) ତୈତ୍ତିରୀୟ ଉପନିଷଦ—୧।୬।୨

□ □ □

# ଭକ୍ତକବି ମଧୁସୂଦନଙ୍କ ଭକ୍ତିମତ୍ତା

ଶ୍ରୀ ଅଭିରାମ ଦାସ
ପ୍ରାକ୍ତନ ଓଡ଼ିଆ ପ୍ରଧାନ ଛାତ୍ର, ଖ୍ରୀଷ୍ଟ କଲେଜ

ଆଧୁନିକ ଓଡ଼ିଆ ସାହିତ୍ୟରେ ଭକ୍ତକବି ମଧୁସୂଦନ ରାଓ ଅନ୍ୟତମ ପ୍ରତିଭାଶାଳୀ ସ୍ରଷ୍ଟା ଭାବେ ସୁପରିଚିତ । ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଓଡ଼ିଆ ସାହିତ୍ୟରେ ଗୋଟିଏ ଯୁଗର ସ୍ରଷ୍ଟା । ଏମାନେ ଗୋଟିଏ ବୀଣାର ତିନୋଟି ତାର; ଯେପରି ଏକ ଜାହ୍ନବୀ ତିନି ସ୍ରୋତରେ ଭାସିଯାଉଛି, ଏକ ତ୍ରିମୁଖୀ ଦେବତାର ତିନିମୁଖରୁ ତିନିବେଦ ନିଃସୃତ ହେଉଅଛି × × ଏ ତିନିହେଁ ବାସ୍ତବିକ କବି; ଦିବ୍ୟ-ଦୃଷ୍ଟି ସମ୍ପନ୍ନବ୍ୟକ୍ତି; ସତ୍ୟ ଦ୍ରଷ୍ଟା × × କବି ଋଷି-ଜ୍ଞାନୀମାନେ ଭାଗ୍ୟବାନ ବ୍ୟକ୍ତି, ଏମାନେ ଦିବ୍ୟ ଦୃଷ୍ଟିବଳରୁ କ୍ଷଣିକ ଓ ଚିରନ୍ତନର ପ୍ରଭେଦ ବୁଝିପାରନ୍ତି, ମରୀଚିକା ଛାଡ଼ି ସତ୍ୟର ଅନୁସନ୍ଧାନ କରନ୍ତି × × ଏହି ଅନୁସନ୍ଧାନହିଁ ମନୁଷ୍ୟକୁ ପରମ ଆନନ୍ଦ ଦେଇପାରେ × × ଏହି ଆନନ୍ଦ ମଧୁସୂଦନ ବ୍ରହ୍ମ ଅନୁଭବରେ ଲାଭ କରିଥିଲେ । ଫକୀର ମୋହନ ସତ୍ୟର, ରାଧାନାଥ ସୁନ୍ଦରର ଓ ମଧୁସୂଦନ ଶିବର ଉପାସକ ଥିଲେ (୧) ଦିବ୍ୟଦର୍ଶୀ ମଧୁସୂଦନ ଏକ ମିଶ୍ର ସଂସ୍କୃତିର ଉଦ୍‌ବର୍ତ୍ତିକ । ଜନ୍ମ ଜାତକରେ ସେ ମହାରାଷ୍ଟ୍ରୀୟ ଚିନ୍ତା ଓ ଚେତନାସମ୍ଭୂତ । ଓଡ଼ିଶାରେ ଜନ୍ମଗ୍ରହଣ ତଥା ଲାଳିତହୋଇ ସେ ଉତ୍କଳୀୟ ସଂସ୍କୃତିର ଜଣେ ଉତ୍ତର ଦାୟାଦ ତଥା ସଂସ୍କାରକ, ସର୍ବୋପରି ଧର୍ମଧାରଣା ଏବଂ ସାହିତ୍ୟାଦର୍ଶରେ ବ୍ରାହ୍ମ । ଏହି ବ୍ରାହ୍ମଚେତନା ବୈଦିକ ଧାରଣାଦ୍ୱାରା ପରିପୁଷ୍ଟ—କିନ୍ତୁ ତହିଁରେ ଖ୍ରୀଷ୍ଟାନ ମାନସର ଉଦାରଦୃଷ୍ଟି ଓ ପାପବୋଧ ବିଦ୍ୟମାନ । ତେଣୁ ତାଙ୍କ ସୃଷ୍ଟି ଭିତରେ ଆମେ ଏକ ମିଶ୍ରଚେତନାର ସମୁଜ୍ଜ୍ୱଳ ପ୍ରକାଶ ଲକ୍ଷ୍ୟ କରିଥାଉ । ତାଙ୍କର ବିଭିନ୍ନ କବିତା ଓ ପ୍ରବନ୍ଧ ଉଭୟନ୍ତ ତ୍ୟାଗ ଓ ଆଦର୍ଶ

(୧) କବି ଓ କବିତା (୧୯୪୮)—ଡଃ ମାୟାଧର ମାନସିଂହ—ପୃ ୮୬-୮୭ ।

ସଂବଳିତ ଜୀବନଦର୍ଶନ, ଭୂମାକୈନ୍ଦ୍ରିକ ଭଗବତ୍ ଚେତନା, ଐକାନ୍ତିକ ପ୍ରକୃତି ପ୍ରୀତି, ରଚନାଶୈଳୀରେ ସଂସ୍କୃତ ତତ୍ସମ ଓ ତଦ୍ଭବ ଶବ୍ଦର ବହୁଳ ବ୍ୟବହାର ଏବଂ ବ୍ୟଞ୍ଜନାତ୍ମକ କାବ୍ୟଶୈଳୀ ପରିଦୃଷ୍ଟ ହୁଏ । ସର୍ବୋପରି ଏକ ଆଶ୍ଚର୍ଯ୍ୟସୁଲଭ ଭାବଗାମ୍ଭୀର୍ଯ୍ୟ ତଥା ଉପଦେଶାବଳୀ ତାଙ୍କ ରଚନାର ଅନ୍ୟତମ ବୈଶିଷ୍ଟ୍ୟ । ଭକ୍ତକବିଙ୍କର ଭକ୍ତିମନ୍ତ୍ରର ପରିଚୟ ପୂର୍ବରୁ ଊନବିଂଶ ଶତକର ଧର୍ମଧାରାରେ ବ୍ରାହ୍ମଚେତନା ତଥା ଏହି ପରିପ୍ରେକ୍ଷୀରେ ଉତ୍କଳରେ ବ୍ରାହ୍ମଚେତନାର ଅଭ୍ୟୁଦୟ ଓ ମଧୁସୂଦନଙ୍କ କବି ମାନସରେ ତାର ପ୍ରତିଫଳନ ସଂପର୍କରେ ସମ୍ୟକ ଆଲୋଚନା କରାଯାଇପାରେ ।

ଊନବିଂଶ ଶତକରେ ବ୍ରାହ୍ମସମାଜ ଓ ଏହାର ପ୍ରତିଷ୍ଠାତା ରାଜା ରାମମୋହନ ରାୟଙ୍କ ଭୂମିକା ଏକାନ୍ତ ସ୍ମରଣୀୟ । ଭାରତର ସୁନାମଧନ୍ୟ ସଂସ୍କାରକ, ରାଷ୍ଟ୍ରନାୟକ ଓ ରେନାଁସାର ଅନ୍ୟତମ ଅଗ୍ରଦୂତ ଭାବେ ରାଜା ରାମମୋହନ ଭାରତୀୟ ବେଦ ଉପନିଷଦର ତତ୍ତ୍ୱକୁ ନେଇ ବ୍ରାହ୍ମଧର୍ମର ପ୍ରବର୍ତ୍ତନ କରିଥିଲେ । ହିନ୍ଦୁଧର୍ମର ସଂସ୍କାର ଓ ବେଦବେଦାନ୍ତ ବର୍ଣ୍ଣିତ ପରମବ୍ରହ୍ମ ଉପାସନା ପାଇଁ ବିଭିନ୍ନ ସଭା ସ୍ଥାପିତକରି ସେଥିରେ ବେଦ ଓ ଅଦ୍ୱିତୀୟ ପରମବ୍ରହ୍ମଙ୍କ ସମ୍ପର୍କରେ ନାନା ଆଲୋଚନା କରିଥିଲେ । ଏହି ସତ୍ୟଦ୍ରଷ୍ଟା ଯୋଗଜନ୍ମା ପୁରୁଷଙ୍କର ପ୍ରତିଷ୍ଠିତ ବ୍ରାହ୍ମସମାଜହିଁ ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମ ଓ ଭାରତୀୟ ସଭ୍ୟତା ସଂସ୍କୃତି ଓ ଜୀବନଧାରାର ପ୍ରଧାନ ନିୟାମକ ହୋଇଉଠିଲା । 'ମାନବ ସେବାହିଁ ଈଶ୍ୱର ସେବା'—ରାମମୋହନଙ୍କ ଏହି ବାଣୀ ଊନବିଂଶ ଶତାବ୍ଦୀର ଜୀବନଧାରା ଓ ସାହିତ୍ୟକୁ ଉଦ୍ଭାସିତ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ଉକ୍ତ ଧର୍ମର ମହତ୍ତ୍ୱକୁ ପ୍ରସାରିତ କରିଥିଲା । ରାମମୋହନଙ୍କ ପ୍ରବର୍ତ୍ତିତ ବ୍ରାହ୍ମଚେତନାର ବଳିଷ୍ଠ ପରିପ୍ରକାଶହିଁ ମହର୍ଷି ଦେବେନ୍ଦ୍ରନାଥଙ୍କ କୃତିରେ ପ୍ରକାଶିତ ହେଲା । ଦେବେନ୍ଦ୍ରଙ୍କ ସମେତ ଅନ୍ୟ କେତେଜଣ ମଧ୍ୟ ଏହି ଧର୍ମରେ ଦୀକ୍ଷିତ ହୋଇ ଗାୟତ୍ରୀ ପାଠପୂର୍ବକ ବେଦାନ୍ତ ପ୍ରତିପାଦ୍ୟ ସତ୍ୟ ଏବଂ ତତ୍ତ୍ୱଜ୍ଞାନର ଆବୃତ୍ତି ଦ୍ୱାରା ପରମବ୍ରହ୍ମଙ୍କ ଉପାସନାରେହିଁ ନିଜକୁ ନିୟୋଜିତ କରିଥିଲେ । ତେଣୁ ବେଦବେଦାନ୍ତ ଅଧ୍ୟୁଷିତ ପୁଣ୍ୟ ଧର୍ମ ଭାବେ ସେ ବ୍ରାହ୍ମଧର୍ମକୁ ବିବେଚନା

କରୁଥିଲେ ବୋଲି ମନେ ହୋଇଥାଏ । "୧୮୪୧ ସାଲର ଜ୍ୟେଷ୍ଠମାସର 'ତତ୍ତ୍ୱବୋଧିନୀ'ର ଏକ ବିଜ୍ଞାପନରେ ମହର୍ଷିଙ୍କ ବେଦାନ୍ତ ପ୍ରତିପାଦ୍ୟ 'ସତ୍ୟ ଧର୍ମକୁ' 'ବ୍ରାହ୍ମଧର୍ମ' ବୋଲି କୁହାଯାଇଛୁ (୨) ଉପନିଷଦର ଚିନ୍ତାଧାରକୁ ଶ୍ରେୟ ବୋଲି ମନେକରି ହୃଦୟ ସହିତ ଯେଉଁଠି ଉପନିଷଦର ମେଳ-ରହିଛି ସେହି ବାକ୍ୟକୁ ଗ୍ରହଣ କରିବେ ବୋଲି ଉଲ୍ଲେଖ କରି ମହର୍ଷି କହିଛନ୍ତି—"ଏହି ପ୍ରକାରେ ମୁଁ ଉପନିଷଦରୁ ଈଶ୍ୱରଙ୍କ ପ୍ରସାଦରେ ନିଜ ହୃଦୟରୁ ବ୍ରାହ୍ମଧର୍ମର ଭିତ୍ତିଭୂମି ବାହାର କଲି ।" ବସ୍ତୁତଃ ରାମମୋହନଙ୍କ ଦ୍ୱାରା ଯେଉଁ ବ୍ରାହ୍ମଧର୍ମର ଭିତ୍ତିପ୍ରସ୍ତର ପ୍ରତିଷ୍ଠା ହେଲା ତାହା ମହର୍ଷି ଦେବେନ୍ଦ୍ର-ନାଥଙ୍କଦ୍ୱାରା ପ୍ରସାର ଲାଭ କରିଥିଲେ ମଧ୍ୟ କେଶବଚନ୍ଦ୍ର ସେନଙ୍କଦ୍ୱାରା ମୁକ୍ତି ମାଗିବାପାଇଁ ଅପେକ୍ଷା କରିଥିଲା । ପରବର୍ତ୍ତୀକାଳରେ କେଶବଚନ୍ଦ୍ର ସେନଙ୍କଦ୍ୱାରା ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ ପ୍ରଭୃତି ଧର୍ମର ସମନ୍ୱୟରେ ବ୍ରାହ୍ମଧର୍ମ ସର୍ବଧର୍ମ ସମନ୍ୱୟରେ ପରିମାର୍ଜିତ ଓ ପ୍ରସାରିତ ହୋଇ ଭାରତର ବିଭିନ୍ନ ରାଜ୍ୟକୁ ବ୍ୟାପିବା ସଙ୍ଗେ ସଙ୍ଗେ ବିଶ୍ୱମୁଖୀ ହୋଇପଡ଼ିଥିଲା । ଉପନିଷଦୀୟ ଚିନ୍ତା-ଧାରାରୁ ଦୂରେଇ ଯିବାରୁ ମହର୍ଷି କେଶବଚନ୍ଦ୍ର ସେନଙ୍କଠାରୁ ଭିନ୍ନମୁଖୀ ହୋଇ ଆଦିବ୍ରାହ୍ମସମାଜର ଉଦବର୍ତ୍ତିକ ହୋଇପଡ଼ିଥିଲେ ମଧ୍ୟ ବ୍ରାହ୍ମଧର୍ମ ଆଉ ଜ୍ଞାନପ୍ରଧାନ ନହୋଇ ଭକ୍ତି ପ୍ରଧାନ ହୋଇ ପଡ଼ିଥିଲା । ଏ ରୂପେ ଭାରତର ବିଭିନ୍ନ ପ୍ରାନ୍ତରର ଶିକ୍ଷା, ସଂସ୍କୃତି ଓ ଜୀବନଧାରାରେ ତୁମୂଳ ଆଲୋଡ଼ନ ସୃଷ୍ଟି କରିଥିଲା । "ଏକ ଦିଗରେ ପାରମ୍ପରିକ ଜୀବନାଦର୍ଶରେ ଅନ୍ଧ କୁସଂସ୍କାରର ଅଖଣ୍ଡ ଆଧିପତ୍ୟ, ଅପର ଦିଗରେ ନୂତନତା ମୋହରେ ସମସ୍ତ ଆବର୍ଜନାର ଅନ୍ଧଅନୁସରଣ ଏ ଉଭୟର ଯୁଗାନ୍ତକାରୀ ପ୍ରଭାବରେ ଯେତେବେଳେ ଏ ସମାଜ ଶତଧାବିଦୀର୍ଣ୍ଣ ହୋଇପଡ଼ିଥିଲା, ସେତେବେଳେ ସାମାଜିକ ଜୀବନର ଆଧ୍ୟାତ୍ମିକ ଉନ୍ନତି ସାଧନପାଇଁ ବ୍ରାହ୍ମଧର୍ମର ହୋଇଥିଲା ଅଭ୍ୟୁଦୟ ।" (୩)

---

(୨) ମଧୁସୃଷ୍ଟି ଅମୂର୍ତ୍ତି ଦୃଷ୍ଟି—ଡକ୍ଟର ଶରତଚନ୍ଦ୍ର ପ୍ରଧାନ । ପୃ—୧୫

(୩) ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩–୧୯୨୦)—ଡକ୍ଟର ନଟବର ସାମନ୍ତରାୟ ପୃ—୩୬୫

ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଉତ୍କଳରେ ବ୍ରାହ୍ମଧର୍ମ ପରିପ୍ରବୃତ୍ତିର ସୂତ୍ରପାତ ହେଲା । କିନ୍ତୁ ଏହି ଧର୍ମ ଓଡ଼ିଶାରେ ପରିପ୍ରକୃତି ଓ ପ୍ରସାର ଲାଭ କରିଥିଲେ ମଧ୍ୟ ବିଶେଷ ପ୍ରଭାବଶାଳୀ ହୋଇପାରିଥିଲା ଭଳି ମନେ ହୁଏନାହିଁ । ସେ ଯାହାହେଉ ଅଧ୍ୟାପକ ହରିନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଚେଷ୍ଟାରେ ଉତ୍କଳରେ ବ୍ରାହ୍ମସମାଜ ପ୍ରତିଷ୍ଠା କରାଯାଇ ତତ୍‌ସଂପର୍କରେ କଥିତ ଆଲୋକପାତ କରାଯିବା ଫଳରେ ଉତ୍କଳୀୟ ଯୁବମାନସରେ ନୂତନ ଭାବ ସ୍ପନ୍ଦନ ଜାଗ୍ରତ ହୋଇ ଉଠିଥିଲା । ହରିନାଥଙ୍କ ପ୍ରରୋଚନାରେ ମଧୁସୂଦନ, ପ୍ୟାରୀମୋହନ ସମେତ ବହୁ ବିଦ୍ୱାନମଣ୍ଡଳୀ ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ । କବି ମଧୁସୂଦନ ଏହି ଧର୍ମରେ ଦୀକ୍ଷିତ ହୋଇ ସେହି ଧର୍ମର ନିର୍ଦ୍ଦେଶାନୁଯାୟୀ ପ୍ରାତ୍ୟହିକ କାର୍ଯ୍ୟ ସଂପାଦନ କରୁଥିଲେ । ତାଙ୍କ ଜୀବନ ଓ ଆଦର୍ଶ ଏହି ବ୍ରାହ୍ମଦର୍ଶନଦ୍ୱାରାହିଁ ବିଶେଷଭାବେ ପ୍ରଭାବିତ ହୋଇଥିଲା । ବ୍ରାହ୍ମଦର୍ଶନରେ କୌଣସି ସଂକୀର୍ଣ୍ଣ ମନୋଭାବ ନରଖି 'ବ୍ରହ୍ମ'ଙ୍କୁ ହିଁ ସେ ପରମ ନିର୍ବାଣର କାରଣ ବୋଲି ବିବେଚନା କରୁଥିଲେ । ତେଣୁ ମଧୁସୂଦନଙ୍କ ଅଧିକାଂଶ ରଚନାରେ ଏହି ଉଦାରଚେତନା ପ୍ରକଟିତ ହେଉଥିଲା । ପୁନଶ୍ଚ ସେ ଏକ ମିଶ୍ର ସାଂସ୍କୃତିକ ଚେତନାର ଦାୟାଦ ଥିବାରୁ ସମସ୍ତ ଆଞ୍ଚଳିକତାର ଊର୍ଦ୍ଧ୍ୱରେ ରହି ଭାରତୀୟ ଆର୍ଯ୍ୟସଂସ୍କୃତିର ମୂଳତତ୍ତ୍ୱ ଓ ତଥ୍ୟକୁ ତାଙ୍କ ରଚନାବଳୀରେ ପ୍ରକାଶ କରିବାର ପ୍ରୟାସ କରିଥିଲେ । "ଏକ ଦିଗରେ ପବିତ୍ର ଉପନିଷଦ ଅନ୍ୟଦିଗରେ ବ୍ରାହ୍ମଧର୍ମ ତାଙ୍କର ଆଶୈଶବ ପରିପୁଷ୍ଟ ଚିନ୍ତାଧାରାରେ ଉନ୍ମୂଳ ପରିବର୍ତ୍ତନ ଆଣିଦେଲା । ତାଙ୍କର ସାକାର ପୂଜା ନିରାକାର ନିରଞ୍ଜନାରେ ପରିଣତ ହେଲା । ତାଙ୍କର ଭଗବତ୍-ହସ୍ତ ଉପଲବ୍ଧ ମୂର୍ତ୍ତି, ମନ୍ଦିର ମଧ୍ୟରେ ସୀମାବଦ୍ଧ ନ ରହି ଅନନ୍ତ ବିଶ୍ୱ ବ୍ୟାପକତା-ବିଭୂତିରେ ଉଦ୍‌ବୁଦ୍ଧ ହେଲା । ଉତ୍କଳର ସୀମିତ ପରିବେଷ୍ଟନୀକୁ ଅତିକ୍ରମ କରି ତାଙ୍କର ଆତ୍ମା ଅସୀମ ବିଶ୍ୱବ୍ରହ୍ମାଣ୍ଡ ଭିତରେ ପ୍ରସାରିତ ହେଲା । ସେ ନିଜ ଭିତରେ ବିଶାଳ ବିଶ୍ୱକୁ ଓ ବିଶାଳ ବିଶ୍ୱରେ ନିଜକୁ ଅନୁଭବ କଲେ । ବିଶ୍ୱୈକପ୍ରାଣତା ଓ ବିଶ୍ୱାନୁଭୂତିରେ ତାଙ୍କର 'ଅସ୍ମିତା' ବିସ୍ମୃତିରେ ବିସ୍ମୃତ ହୋଇଗଲା, କିନ୍ତୁ ସେହି ବିସ୍ମୃତି ତାଙ୍କୁ ଅନନ୍ୟ ସ୍ମୃତିରେ

ମୀପାନ୍ଥିତ କଲ୍ପ । (୪) ତାଙ୍କ ରଚିତ 'ଋଷିପ୍ରାଣେ ଦେବାବତରଣ', 'ହିମାଚଳେ ଉଦୟ ଉତ୍ସବ', 'ଜୀବନ ଚିନ୍ତା', ଆକାଶପ୍ରତି', 'ସଙ୍ଗୀତମାଳା', 'ବର୍ଣ୍ଣବୋଧର ପରମେଶ୍ୱର', 'ସ୍ତବ', 'ସ୍ତୋତ୍ର', 'ନାମେଭକ୍ତ', 'ଜୀବେଦୟା', 'ଆତ୍ମସମର୍ପଣ', 'ପଦ୍ମ' ଏବଂ ଏତଦ୍‌ଭିନ୍ନ ତାଙ୍କର ବିଭିନ୍ନ ପ୍ରବନ୍ଧ ପ୍ରଭୃତିରେ ଭାରତୀୟ ଆର୍ଯ୍ୟ ସଂସ୍କୃତିର ମୂଳତତ୍ତ୍ୱ ଓ କବିଙ୍କ ଭକ୍ତିମତ୍ତା ସଙ୍ଗେ ସଙ୍ଗେ ସେହି ପରମବ୍ରହ୍ମଙ୍କର ସ୍ୱରୂପକୁ ହିଁ ଉଦ୍‌ଘାଟନ କରାଯାଇଛି ।

କବି ମଧୁସୂଦନ ମୁଖ୍ୟତଃ ଜଣେ ଭକ୍ତ ଥିଲେ । କବିଙ୍କ ପୂର୍ବରୁ ବିଭିନ୍ନ ପ୍ରାଚୀନ କବି ଜଗନ୍ନାଥ, ବଳରାମ, ଉପେନ୍ଦ୍ର, ଦୀନକୃଷ୍ଣ, ସାଲବେଗ, କବିସୂର୍ଯ୍ୟ, ବନମାଳୀ, ଗୋପାଳକୃଷ୍ଣ ପ୍ରଭୃତିଙ୍କ ସ୍ଥାନ ମଧ୍ୟ ଭକ୍ତ ସଂସାରରେ ଅତୁଳନୀୟ ହୋଇ ରହିଛି । ଦିବ୍ୟଦର୍ଶୀ ମଧୁସୂଦନ ତାଙ୍କ ରଚିତ ବିଭିନ୍ନ କବିତାମାନଙ୍କରେ ଭକ୍ତି ଛଳରେ ନାନା ହିତୋପଦେଶ, ନୀତିବାକ୍ୟ, ବିଭିନ୍ନ ଦୃଷ୍ଟାନ୍ତମାଳା ପ୍ରଦାନ କରିଯାଇଛନ୍ତି । କବିଙ୍କ ମତରେ ସୁନୀତି ଓ ସୁରୁଚି ମାର୍ଗରେ ପରିଚାଳିତ ହୋଇ ପରଦୁଃଖରେ ଦୁଃଖୀ ଓ ପର ସୁଖରେ ସୁଖୀ ହେବା ସଙ୍ଗେ ସଙ୍ଗେ "ସତ୍ୟ ଅଟଇ ଶ୍ରେଷ୍ଠଧର୍ମ/ ସତ୍ୟ ସାଧନ ଶ୍ରେଷ୍ଠ କର୍ମ/ ବ୍ରହ୍ମାଣ୍ଡ ମଧ୍ୟେ ସତ୍ୟ ସାର/ ସତ୍ୟ ହିଁ ଏକା ବଳିଆର/ଇତ୍ୟ ଭିତରେ କବିଙ୍କର ଭକ୍ତିଚିତ୍ତ ଆର୍ଯ୍ୟ ସଂସ୍କୃତିକୁ ପ୍ରଖ୍ୟାପନ ଭିତରେ ବୈଦିକ ଶାସ୍ତ୍ରାନୁମୋଦିତ ଚିନ୍ତାଧାରାର ପରିପ୍ରକାଶ ଘଟିଛି । ବୈକୁଣ୍ଠ ସମାନ ଗୃହ ଭିତରେ ପିତା-ମାତାଙ୍କର ସେବା କରି ବିଶ୍ୱପତି ପ୍ରାଣଦାତା ସେହି ପରମେଶ୍ୱରଙ୍କୁ ପୂଜିବା ପାଇଁ କବି ଭକ୍ତି ଚିତ୍ତରେ ବାଳକମାନଙ୍କୁ ଉପଦେଶ ପ୍ରଦାନ କରିଛନ୍ତି । ତାଙ୍କର ଦୃଷ୍ଟାନ୍ତ-ମାଳା, ନାମେ ଭକ୍ତ, ଜୀବେ ଦୟା ପ୍ରଭୃତିରୁ ଏହି ପ୍ରକାର ଦୃଷ୍ଟାନ୍ତ ମିଳି-ଥାଏ । ଏତଦ୍‌ଭିନ୍ନ ବିଶ୍ୱବ୍ରହ୍ମାଣ୍ଡର ଅନନ୍ତ ପ୍ରକୃତି ଭିତରେ ପରମବ୍ରହ୍ମଙ୍କର ପରମ ସତ୍ତା ପରିବ୍ୟାପ୍ତ ହୋଇ ରହିଛି ବୋଲି ସେ ମର୍ମେ ମର୍ମେ ଅନୁଭବ କରୁଥିଲେ । 'ହିମାଚଳେ ଉଦୟ ଉତ୍ସବ'ରେ କବି ହିମାଚଳରେ ସୂର୍ଯ୍ୟଙ୍କର ଉଦୀୟମାନ ଦୃଶ୍ୟ ପରିଦର୍ଶନ କରିଥିଲେ ମଧ୍ୟ କ୍ରମେ କ୍ରମେ କବି ନିଜ ହୃଦୟ ମଧ୍ୟରେ ସେହି ପରମେଶ୍ୱରଙ୍କର ସତ୍ତାକୁ ଉପଲବ୍‌ଧି କରି ଭକ୍ତ ଭାବରେ

(୪) ସାହିତ୍ୟିକ ଦିଗ୍‌ଦର୍ଶନ—ଅଧ୍ୟାପକ ଡଃ ବାସୁଦେବ ସାହୁ ପୃ—୧୯୫

ଗାଇଉଠିଛନ୍ତି "ଜଡ଼ଜୀବ ସମ୍ମିଳିତ ଅଚ୍ଛେଦ୍ୟ ବନ୍ଧନେ/ ବିଶ୍ୱନାଡ଼ୀ ମୂଳାଧାରି ଅନାଦି ଚରଣେ/ ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ/ ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ"/ । କବିଙ୍କର ଏହି ଅଲୌକିକ ମହାନ୍ ସତ୍ତା ସହିତ ମିଳିତ ହେବାର ପରିକଳ୍ପନା ଏକାନ୍ତ ଅଭିନବ ପରି ମନେହୁଏ । 'ଆକାଶ ପ୍ରତି'ରେ ଆକାଶକୁ ପରମବ୍ରହ୍ମର ପ୍ରତୀକ ଭାବେ, 'ନଦୀ ପ୍ରତି'ରେ ପରମବ୍ରହ୍ମଙ୍କର ସ୍ଥିତି ଉପଲବ୍ଧି ତଥା 'ଋଷିପ୍ରାଣେ ଦେବାବତରଣ'ରେ ଋଷିହୃଦୟରେ ଦେବାବତରଣ ଛଳରେ ନିଜ ହୃଦୟ ମଧ୍ୟରେ ପରମ ବ୍ରହ୍ମଙ୍କର ଆବିର୍ଭାବହିଁ କବିଙ୍କର ବ୍ରାହ୍ମଚେତନା ଓ ଭଗବତବୋଧ ଚେତନାର ପ୍ରତିଫଳନ ମାତ୍ର । ମଧୁସୂଦନଙ୍କ ଦୃଷ୍ଟିରେ ଏ ଜଗତ ମଧୁମୟ । ଗୋଟିଏ ପକ୍ଷରେ କବି ରାଧାନାଥ ସୁଖକୁ ଆକାଶ କୁସୁମ ବୋଲି କହି ନୈରାଶ୍ୟର ସୂଚନା ଦେଉଥିବାବେଳେ ଅନ୍ୟ ପକ୍ଷରେ ମଧୁସୂଦନ ମାନବ ପ୍ରାଣରେ ଆଶା ସଞ୍ଚାର କରି ପରମେଶ୍ୱରଙ୍କ ଅମୃତମୟ ବାଣୀ ପାନକରି ଭକ୍ତିରେ ଗାଇ ଉଠିଛନ୍ତି—"ମଧୁମୟ ସୃଷ୍ଟି, ସୁଧାମୟ ସୃଷ୍ଟି/ଏ ସୃଷ୍ଟି ଅମୃତମୟ ହେ ।"

କବିଙ୍କ ମତରେ ଏ ଜଗତ ବ୍ରହ୍ମମୟ । ସର୍ବତ୍ର ବ୍ରହ୍ମଙ୍କର ବିରାଜମାନ । ବ୍ରହ୍ମଙ୍କର ମହାମନ୍ତ୍ର ଗ୍ରହଣ କଲେ ଜଗତର ସମସ୍ତ ପାପ, ତାପ ଦୂର ହୋଇ ଯାଏ । ତେଣୁ "ବ୍ରହ୍ମନାମ ମହାମନ୍ତ୍ର କରରେ ଗ୍ରହଣ/ବ୍ରହ୍ମରୂପ ସମୁଦ୍ରରେ ପ୍ରେମେ ହୁଅ ନିମଗନ"/କାରଣ ସେହି ବ୍ରହ୍ମ ଭୂଲୋକ ଓ ଦ୍ୟୁଲୋକରେ ଅବସ୍ଥିତ । ସାଗର ପର୍ବତରେ ବ୍ରହ୍ମ, ଜଳେ ବ୍ରହ୍ମ, ସ୍ଥଳେ ବ୍ରହ୍ମ, ବିଶ୍ୱ ବ୍ରହ୍ମ ନିକେତନ, ଶୋଣିତେ ନିଃଶ୍ୱାସେ ବ୍ରହ୍ମ, ସର୍ବ ଇନ୍ଦ୍ରିୟରେ ବ୍ରହ୍ମ, ବୁଦ୍ଧି ହୃଦୟରେ ବ୍ରହ୍ମ, ବ୍ରହ୍ମମୟ ଦେହମନ, ଗୃହରେ କାର୍ଯ୍ୟ କ୍ଷେତ୍ରରେ ବ୍ରହ୍ମ, ଇହ ପରକାଳରେ ବ୍ରହ୍ମ, ଜନ୍ମମରଣରେ ବ୍ରହ୍ମ, ଦେଶ କାଳରେ ବ୍ରହ୍ମ, ସେ ସର୍ବ ଶକ୍ତି ମୂଳାଧାର, ବ୍ରହ୍ମଜ୍ଞାନ ପାରିବାର, ବ୍ରହ୍ମ ବ୍ରହ୍ମାଣ୍ଡ ଜୀବନ, ବ୍ରହ୍ମଶାସ୍ତ୍ର ବ୍ରହ୍ମ ଗୁରୁ ବ୍ରହ୍ମ ବାଞ୍ଛା କଳ୍ପତରୁ, ବ୍ରହ୍ମ ପତିତପାବନ, ବ୍ରହ୍ମ ପିତାମାତା, ବ୍ରହ୍ମ କରୁଣା ନିଧାନ, ଜୀବର ପରମ ଗତି, ବ୍ରହ୍ମ ସଖା, ବ୍ରହ୍ମ ପତି । ତେଣୁ ବ୍ରହ୍ମ ନିକଟରେ ତାଙ୍କ ଚିର ଭକ୍ତିରେ ନିମଗ୍ନ ହେଉ ବୋଲି କବି ପ୍ରାର୍ଥନା କରିଛନ୍ତି । ବିଦଗ୍‌ଧଚିନ୍ତାମଣିକାରଙ୍କ ମତରେ "ଆଦି ଅନାଦି କାରଣ

ନିର୍ଗୁଣ ସଗୁଣ/ଆତ୍ମାରାମ ସନାତନ ବ୍ରହ୍ମନିରୂପଣ"/ପୁଣି ସେ ସ୍ଥାବର ଜଙ୍ଗମଠାରୁ ଅନନ୍ତ ଅନଳ ପର୍ଯ୍ୟନ୍ତ ପରିବ୍ୟାପ୍ତ । 'ଋଷିପ୍ରାଣେ ଦେବାବ-ତରଣ'ରେ କବି ଋଷି ପ୍ରାଣ ଭିତରେ ଦେବତା ଅବତରଣ କରୁ କରୁ ନିଜ ପ୍ରାଣ ମଧ୍ୟରେ ଦେବତାର ଅବତରଣ କରି ସେହି ପରମ ବ୍ରହ୍ମଙ୍କର ସ୍ୱରୂପକୁ ପ୍ରକାଶ କରୁଛନ୍ତି । ସେ ଦେଶକାଳାତୀତ ଦୃଶ୍ୟ, କଳ୍ପନା ଅତୀତ, ଜ୍ୟୋତିର ଜ୍ୟୋତି, ଦୂରରୁ ସୁଦୂର, ଚନ୍ଦ୍ରାବାକ୍ୟ ଅଗୋଚର ନିକଟ୍ଟ ନିକଟ ପ୍ରାଣ ସମଗ୍ର ପ୍ରାଣର, ଅଶବ୍ଦ, ଅସ୍ପର୍ଶ, ଅରୂପ, ଅରସ, ପରମ ସତ୍ୟ ମହାନନ୍ଦରସ । ସେହି ପରମବ୍ରହ୍ମ ନିଜ ମହିମାରେ ବିରାଜମାନ କରୁଛନ୍ତି । ସେ ନିମ୍ନରେ ଊର୍ଦ୍ଧ୍ୱରେ, ବାମରେ ଦକ୍ଷିଣରେ ସର୍ବତ୍ର ବିରାଜମାନ । ସେ ପୁଣି ବରେଣ୍ୟଭର୍ଗ, ଅମୂର୍ତ୍ତି, ଅଦେହୀ । ସେ "ବିଶ୍ୱବ୍ୟାପୀ ଅସ୍ତିତ୍ୱର ଓଁକାର ଝଙ୍କାର/ସମୁଦ୍ର ଧ୍ୱନିରେ ପୂରେ ନିଖିଳ ସଂସାର/କେମନ୍ତ ବର୍ଣ୍ଣିବି ସେହି ଭାଷାତୀତ ଭାବ/ଜୀବାତ୍ମାରେ ପରମାତ୍ମା ·ଭୂମା ଆବିର୍ଭାବ"/ଇତ୍ୟାଦି ଭିତରେ କବିଙ୍କର ପ୍ରାଣସତ୍ତା ପରମବ୍ରହ୍ମଙ୍କ ଠାଉରେ ଏପରି ସଂଶ୍ଳିଷ୍ଟ ହୋଇଯାଇଛି ଯେ କବି ନିଜର ଅସ୍ତିତ୍ୱ ହରାଇ ଭୂମାଙ୍କର ଆବିର୍ଭାବକୁ ବର୍ଣ୍ଣନା କରିବାପାଇଁ ଅକ୍ଷମ ହୋଇପଡ଼ିଛନ୍ତି । ଏହି 'ଋଷିପ୍ରାଣେ ଦେବାବତରଣ'ରେ ସମଗ୍ର ବୈଦିକ ଚେତନା ମୂର୍ତ୍ତିମନ୍ତ ହୋଇଉଠିଛି । ତୈତ୍ତିରୀୟୋପନିଷଦ ଓଁ କାରର ବ୍ୟାଖ୍ୟା କରି କହିଛନ୍ତି—"ଓଁ ଶବ୍ଦ ହିଁ ବ୍ରହ୍ମ । କାରଣ ଓଁ ସର୍ବରୂପ । ଓଁ ଅନୁକୃତି ବା ସମ୍ମତିସୂଚକ ସଙ୍କେତ । ଯାଜ୍ଞିକ ଓଁ ଶ୍ରାବୟ କହି ଶ୍ରବଣ କରନ୍ତି ଏବଂ ଓଁ କହି ସାମଗାନ କରି-ଥାନ୍ତି । ପୁଣି ହିରଣ୍ମୟ ପୁରୁଷ ଅମୃତ ସ୍ୱରୂପ ଧାରଣ କରି ହୃଦୟସ୍ଥିତ ଆକାଶରେ ଅବସ୍ଥାନ କରନ୍ତି ବୋଲି କୁହାଯାଇଛି । (୫) ବୃହଦାରଣ୍ୟକରେ ବ୍ରହ୍ମର ଦୁଇଟି ରୂପର କଳ୍ପନା କରାଯାଇଛି—ମୂର୍ତ୍ତି ଓ ଅମୂର୍ତ୍ତି । ପରିଚ୍ଛିନ୍ନ ଓ ଅପରିଚ୍ଛିନ୍ନ ଏହାକୁ ଜୀବନ ଓ ମୃତ୍ୟୁର ଦ୍ୟୋତକ ବୋଲି କୁହାଯାଇପାରେ । ଶରୀରପରି ଜୀବ ଧ୍ୱଂସପ୍ରାପ୍ତ ହୁଏ ଏବଂ ଶରୀରପରି ସେ ପୁଣି ପୁନର୍ଜୀବନ ଲାଭ

(୫) ମଧୁସୃଷ୍ଟି ଅମୂର୍ତ୍ତିଦୃଷ୍ଟି—ଅଧ୍ୟାପକ ଡଃ ଶରତଚନ୍ଦ୍ର ପ୍ରଧାନ । ପୃ ୮୧-୮୨ ।

କରେ । "ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ ।" ଏଣୁ ଜନ୍ମମୃତ୍ୟୁ ଅଚ୍ଛେଦ୍ୟ ସମ୍ପର୍କରେ ସଂଯୁକ୍ତ । ଜନ୍ମହେଲେ ମୃତ୍ୟୁ ନିଶ୍ଚୟ ହେବ । (୬) ଏହି ବ୍ରହ୍ମ ସମ୍ପର୍କୀୟ ଚିନ୍ତା ଓ ଚେତନାହିଁ ତାଙ୍କର 'ସଙ୍ଗୀତମାଳା'ରେ ଦର୍ଶା-ଯାଇଛି । ସଙ୍ଗୀତମାଳାରେ ସେ ବ୍ରହ୍ମ ସମ୍ପର୍କରେ ଉଲ୍ଲେଖ କରି ବ୍ରହ୍ମଙ୍କୁ ବିଭିନ୍ନ ନାମ ମଧ୍ୟରେ ରଖି ପ୍ରାର୍ଥନା କରିଛନ୍ତି । ସେହି ବ୍ରହ୍ମହିଁ ମଙ୍ଗଳଦାତା, ଜଗତ-ଉଦ୍ଧାରକ, ବିଶ୍ୱବିଧାତା, କୋଟି ବିଶ୍ୱପାଳକ, ପୁଣ୍ୟ-ଶାନ୍ତିଦାୟକ, ତ୍ରିଭୁବନ ବ୍ୟାପକ ବିଶ୍ୱପିତା ତାରକ, ପାପତାପ ହାରକ (୭) ତେଣୁ ସେହି ପରମବ୍ରହ୍ମଙ୍କ ନିକଟରେ କବି "ପବିତ୍ର କାମନା ପବିତ୍ର ଭାବନା/ପ୍ରାଣେରଖି ଅନ୍ୱେଷଣ/ × × କରିବି ହରଷେ ମାତି ଭକ୍ତିରସେ/ଏହି ମୋର ନିବେଦନ"/ ଭିତରେ କବିଙ୍କର ଭକ୍ତିଗଦ୍‌ଗଦ୍ ଚିତ୍ତର ଅଭିବ୍ୟକ୍ତି ମାତ୍ର ପ୍ରକାଶ ପାଇଛି । ଅନ୍ୟତ୍ର ମଧ୍ୟ ଭକ୍ତ କବି "ମାଗଇ ପଦ ବ୍ୟାକୁଳେ ପ୍ରଭୁ" ଉକ୍ତିରେ ତାଙ୍କର ପାଦପଦ୍ମରେ ନିମଜ୍ଜିତ ହେବାପାଇଁ ବ୍ୟାକୁଳିତ । କାରଣ ସେହି ବ୍ରହ୍ମହିଁ ପାପଗରଳଖଣ୍ଡନ, ତାପିତ ହୃଦଚନ୍ଦନ, ଦୁଃଖୀ ଅଧମତାରଣ, ସର୍ବ ବିପଦ ଭଞ୍ଜନ, ଅନ୍ଧ ନୟନ ଅଞ୍ଜନ, ସତ୍ୟଜ୍ୟୋତି ପ୍ରକାଶନ, ଭକ୍ତ ହୃଦୟ ରଞ୍ଜନ । ବ୍ରହ୍ମ ସମ୍ପର୍କରେ ବ୍ରାହ୍ମମାନେ ଘୋଷଣା କରନ୍ତି ଯେ ଏହି ବିଶାଳ ବିଶ୍ୱହିଁ ପବିତ୍ର ଧର୍ମ ମନ୍ଦିର । ଚିତ୍ତହେଉଛି ସୁନିର୍ମଳ ତୀର୍ଥ । ସତ୍ୟ ହେଉଛି ଶାଶ୍ୱତଶାସ୍ତ୍ର । ବିଶ୍ୱାସ ଧର୍ମର ମୂଳ ତତ୍ତ୍ୱ । ପ୍ରୀତି ହେଉଛି ପରମ ଆଧ୍ୟାତ୍ମିକ ମାର୍ଗ । ସ୍ୱାର୍ଥର ବିନାଶହିଁ ବୈରାଗ୍ୟ । ତାଙ୍କର ସଙ୍ଗୀତମାଳାରେ ବ୍ରାହ୍ମଧର୍ମର ଏ ସମସ୍ତ ଦିଗଟି ପ୍ରକଟିତ । (୮) ଉପନିଷଦ କହନ୍ତି ପ୍ରଣବଧନୁ, ଆତ୍ମାବାଣ ଏବଂ ବ୍ରହ୍ମ ଏହାର ଲକ୍ଷ୍ୟ । ତୈତ୍ତିରୀୟୋପନିଷଦରେ ବ୍ରହ୍ମ ଆକାଶ ପରି ବୃହତ୍ ଓ ସର୍ବବ୍ୟାପ୍ତ ବୋଲି ବର୍ଣ୍ଣିତ ହୋଇଛନ୍ତି । ପୁଣି ଉପନିଷଦରେ 'ଓଁ ମିତି ବ୍ରହ୍ମ' ବୋଲି କୁହାଯାଇଛି । ଏ ରୂପେ ଦେଖିଲେ ଉପନିଷଦରେ ବ୍ରହ୍ମ ସମ୍ପର୍କରେ ସବିଶେଷ

(୬) ମଧୁସୃଷ୍ଟି ଅମୃତ ଦୃଷ୍ଟି—ଅଧ୍ୟାପକ ଡଃ ଶରତଚନ୍ଦ୍ର ପ୍ରଧାନ ପୃ. ୮୧-୮୨ ।

(୭) ମଧୁସୂଦନ ଗ୍ରନ୍ଥାବଳୀ ।

(୮) ମଧୁସୃଷ୍ଟି ଅମୃତ ଦୃଷ୍ଟି—ଅଧ୍ୟାପକ ଡଃ ଶରତଚନ୍ଦ୍ର ପ୍ରଧାନ, ପୃ-୯୩-୯୪ ।

ବ୍ୟାଖ୍ୟା କରାଯାଇଛୁ । ତେଣୁ ମଧୁସୂଦନ ବ୍ରାହ୍ମଧର୍ମ ସହିତ ସଂଶ୍ଳିଷ୍ଟ ଥିବାରୁ ତାଙ୍କ ରଚନାବଳୀରେ ମୁଖ୍ୟତଃ ଉପନିଷଦ ଆଧାରିତ ଚିନ୍ତା-ଧାରାର ପରିପ୍ରକାଶ ପରିଲକ୍ଷିତ ହୁଏ; କିନ୍ତୁ ଉପନିଷଦ ପରି ଏହା ଜ୍ଞାନାଶ୍ରୟୀ ନୁହେଁ । ତହିଁରେ କରୁଣା ଓ ଭକ୍ତିରସର ଅଖଣ୍ଡ ପ୍ରବାହ ଲକ୍ଷ୍ୟ କରିଯାଇପାରେ । ସ୍ୱୟଂ ମଧୁସୂଦନ ଜୀବନର ବ୍ୟାଖ୍ୟା କରି କହିଛନ୍ତି "ଆତ୍ମାର ପତନ ନିବାରଣ କରି ଯାହା ଆମ୍ଭମାନଙ୍କୁ ଧରିରଖିଛି, ଯାହା ଆମର ଆଶ୍ରୟ ଭୂମି ତାହାହିଁ ଧର୍ମ । ସୁତରାଂ ଈଶ୍ୱର ଆମମାନଙ୍କର ଧର୍ମ ଏବଂ ଈଶ୍ୱରାର୍ପିତ ଜୀବନଧର୍ମ ଜୀବନ ଅଟେ । ତେଣୁ ସେ କହିଛନ୍ତି ଧର୍ମପଥ ମଧୁମୟ ତାହାକୁ କର ହେ ଆଶ୍ରୟ"/ । କବି ରାଧାନାଥଙ୍କ ଦରବାର କାବ୍ୟର "ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି/ତରିବାକୁ ଏହି ସଂସାର ବାରିଧି"/ଓ ଭାଗବତର "ଧନ ଅର୍ଜିଲେ ଧର୍ମକରି/ଧର୍ମେ ପ୍ରାପତ ନରହରି"/ଉକ୍ତି ସହିତ ମଧୁସୂଦନଙ୍କ ଉକ୍ତିର ସମତା ଏଠାରେ ଲକ୍ଷ୍ୟ କରାଯାଇପାରେ ।

କବି ଏକାଧାରରେ ଜଣେ ଭକ୍ତ, ଦିବ୍ୟଦର୍ଶୀ, ବ୍ରହ୍ମଜ୍ଞ ତଥା ଏକନିଷ୍ଠ ଋଷି କବି ଭାବେ ସ୍ମରଣୀୟ । ଭକ୍ତିର କଳକଲ୍ଲୋଳ ଧାରା ଛୁଟାଇ ଆତ୍ମାର ପରିପୂର୍ଣ୍ଣ ସମର୍ପଣ କରିବାହିଁ କବିଙ୍କର ପରମେଶ୍ୱରଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା । ତାଙ୍କ ମନପ୍ରାଣ ମଧ୍ୟରେ ସେହି ପରମ ବ୍ରହ୍ମଙ୍କର ଅମୂର୍ତ୍ତିରୂପ ସତ୍ତାହିଁ ଝଲସି ଉଠିବା ମଧ୍ୟରେ ପରମେଶ୍ୱର ତାଙ୍କ ହୃଦୟ ଡୋରିରେ ବାନ୍ଧି ହୋଇ-ଯାନ୍ତି । କାରଣ ଭକ୍ତ ଯେଉଁଠାରେ ଅବତୀର୍ଣ୍ଣ ହୁଏ, ଭଗବାନ ସେହିଠାରେ ଅବସ୍ଥାନ କରନ୍ତି । ଗୀତାରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—"ମୁଁ ବୈକୁଣ୍ଠରେ ନାହିଁ କିମ୍ବା ଯୋଗୀର ହୃଦୟ ମଧ୍ୟରେ ନାହିଁ, ମୋର ପରମଭକ୍ତ ଯେଉଁଠାରେ ମୁଁ ସେହିଠାରେ ଅଛି ।" କବି ମୁଖ୍ୟତଃ ଜଣେ ସାତ୍ତ୍ୱିକଭକ୍ତ ଥିଲେ । ସେ ତାମସିକ ଭକ୍ତମାନଙ୍କ ପରି ନିଜର ସୁଖପାଇଁ ଅନ୍ୟର ଅନିଷ୍ଟ କାମନା କିମ୍ବା ରାଜସିକ ଭକ୍ତ ମାନଙ୍କପରି ସାଂସାରିକ ସୁଖ ସମ୍ଭୋଗ, ଐଶ୍ୱର୍ଯ୍ୟ ବା ପ୍ରାଚୁର୍ଯ୍ୟ କାମନା କରିନାହାନ୍ତି । ସାତ୍ତ୍ୱିକ ଭକ୍ତପରି ସେ କେବଳ କାମନା କରିଛନ୍ତି ଭଗବତ ଆଶ୍ରୟ । ଏହାହିଁ ତାଙ୍କର ଏକମାତ୍ର ସମ୍ବଳ । ସତ୍ୟପଥରେ ରହି ପରମେଶ୍ୱରଙ୍କୁ ଆଶ୍ରୟ କରି ଜୀବନ ବିତାଇଦେବା ପାଇଁ

ସେ ଆକୁଳ ହୋଇ ଗାଇ ଉଠିଛନ୍ତି—"ହେଅ ଭକ୍ତ ପ୍ରଭୁ ହୃଦୟେ ମୋହର ବିରାଜ ନିତ୍ୟ ତହିଁରେ/ସତ୍ୟପଥେ ରହି ତୁମର ଆଶ୍ରାରେ ଯାଉ ମୋ ଦିନ ମହୀରେ"/ଭକ୍ତକବିଙ୍କର ଭଗବତ୍‌ଚେତନା କୌଣସିଠାରେ ସୀମାବଦ୍ଧ ନଥିଲା । ସେ ଉତ୍କଳୀୟ ବୈଷ୍ଣବ ଅଥବା ଗୌଡ଼ୀୟ ବୈଷ୍ଣବମାନଙ୍କ ପରି ଜଗନ୍ନାଥ କିମ୍ବା ରାଧାକୃଷ୍ଣଙ୍କ ସେବାରେ ମନ ବଳାଇ ନଥିଲେ । ତାଙ୍କର ମନ ପ୍ରାଣ ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଭୂମାଙ୍କ ନିକଟରେ ଅର୍ପିତ ହୋଇଥିଲା । ସେ ନିଜକୁ ଭଗବାନଙ୍କଠାରୁ ଅଭିନ୍ନବୋଲି କଳ୍ପନା କରିବା ସଙ୍ଗେ ସଙ୍ଗେ ଶଙ୍କରାଚାର୍ଯ୍ୟଙ୍କ ପରି ଅଦ୍ୱୈତବାଦୀ ବୋଲି ନିଜକୁ ମନେ କରୁଥିଲେ । ତାଙ୍କର 'ଆତ୍ମସମର୍ପଣ' କବିତାରେ ସେ ପରମ ବ୍ରହ୍ମଙ୍କୁ ଜଗତର ମୂଳ ରୂପେ ଗ୍ରହଣ କରି ନିଜକୁ ତହିଁରେ ଅଭିନ୍ନ ସତ୍ତାଭାବେ କଳ୍ପନା କରି ଗାଇଛନ୍ତି—"ମୁହିଁ କ୍ଷୁଦ୍ର ଊର୍ମି—ତୁମ୍ଭେ ମହାସିନ୍ଧୁ, ଊର୍ମି ସିନ୍ଧୁ ଏକାକାର/ଅନନ୍ତ ମଙ୍ଗଳ ସଂକଳ୍ପ ସମ୍ଭୂତ ମୁହିଁ ତୁମ୍ଭ ମହିମାର/ମୁଁ ତ କ୍ଷୁଦ୍ରଶିଶୁ, ତୁ ପ୍ରାଣ ଜନନୀ ଅଚ୍ଛେଦ୍ୟ ନାଡ଼ୀ ବନ୍ଧନ/ତୋ ପ୍ରେମ ନିସ୍ୱନ ନିରୂପମ ସ୍ନେହ ଅନାଇଛୁ ଅନୁକ୍ଷଣ"/ ପରମେଶ୍ୱରହିଁ ସର୍ବଶୋଭାର ଆଧାର, ଭକ୍ତପ୍ରେମିକର ଏକମାତ୍ର ସହାୟ । ତାଙ୍କ ହୃଦକନ୍ଦରରେ ପରମବ୍ରହ୍ମଙ୍କର ଅମୃତବାରି ସ୍ୱତଃ ନିର୍ଗତ ହେଉଛି । ତହିଁ ମଧ୍ୟରେ ଅମୃତର ବାସନା ଅତ୍ୟନ୍ତ ସୁଶୋଭିତ ହେଉଛି । କାରଣ "ମଧୁପାନେ ମତ୍ତ ମଧୁପଦଳ/ସେ ସୌରଭେ ପରାଣ କେଡ଼େ ଶୀତଳ"/ । ସ୍ନେହ, କରୁଣା, ଭକ୍ତିହିଁ ତାଙ୍କର ଅନ୍ତରରେ ପୂରି ରହିଛି । ନଚେତ କେବେ-ହେଲେ ତାଙ୍କ ଦର୍ଶନରେ ମନ ବିମଳ ପ୍ରେମରସରେ ନିମଗ୍ନ ହୁଅନ୍ତାନାହିଁ । ସେ ବ୍ରହ୍ମହିଁ ସତ୍ୟ, ଶିବ ଓ ସୁନ୍ଦର । ସେ ଦିବସ ରଜନୀ ସର୍ବତ୍ର ବିଦ୍ୟମାନ । ତେଣୁ କବି ଯାହା ଚିନ୍ତା କରୁଛନ୍ତି, ତାହା ଜଗତର କର୍ତ୍ତା ପରମେଶ୍ୱରହିଁ ଜାଣିପାରୁଛନ୍ତି । ଏଣୁ ତାଙ୍କ ପାଦପଦ୍ମରେ ନିଜକୁ ସମର୍ପଣ କରି କବି ଗାଇଛନ୍ତି "ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ/ ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ/ମୋ ପାଶେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର/ଏକଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର"/ ଭିତରେ···ରୂପ ସହିତ ଅରୂପର, ଦେହ ସହିତ ଦେହାତୀତର ଲୌକିକ

ସମ୍ପୃକ୍ତ ଅଲୌକିକତ, ଆତ୍ମା ସମ୍ପୃକ୍ତ ପରମାତ୍ମାର ଏବଂ ଭକ୍ତ ସମ୍ପୃକ୍ତ ଭଗବାନଙ୍କର ଏହା ସୂତ୍ରଧର ସମନ୍ୱୟ । ସେ ପରମେଶ୍ୱରଙ୍କୁ ସକଳ କଲ୍ମଷହାରୀ, ମଙ୍ଗଳଦାତା, ଆନନ୍ଦମୟ କୋଟିଭୁବନ ପାଳକ— ତେଣୁ କବିଙ୍କୁ ସେ ଶୁଭବୁଦ୍ଧି ଉଦ୍ୟୋଗ ପ୍ରଦାନ କରିବେ ଏବଂ ତାଙ୍କୁ ସତ୍ୟ ଓ ଧର୍ମ ପଥରେ ପରିଚାଳିତ କରିବେ ବୋଲି କବି ତାଙ୍କ ନିକଟରେ ନିଜକୁ ସମର୍ପଣ କରି କହିଛନ୍ତି—"ସତ୍ୟପଥେ ଧର୍ମପଥେ, ଘେନି ଯାଅ ମୋତେ/ଭାସାଅ ପରାଣ ମୋର ତବ ପ୍ରେମ ସ୍ରୋତେ/ପ୍ରଭୁହେ ପରମ ଶରଣ/ ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ"/ ପରିପୂର୍ଣ୍ଣ ଆତ୍ମ ସମର୍ପଣରେ ହିଁ ଭକ୍ତିମତ୍ତାର ପ୍ରକୃଷ୍ଟ ପରିଚୟ । ଭକ୍ତ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ ନକଲେ ପ୍ରକୃତ ଭଗବତ୍‌ବୋଧର ପରିଚୟ ମିଳିନାହିଁ । ତେଣୁ ସେ ତାଙ୍କ ନିକଟରେ ଆତ୍ମସମର୍ପଣ କରି ତାଙ୍କର ବାଣୀକୁ ଶ୍ରବଣ କରିବା ଫଳରେ "ଭୁବନେଭୁବନେ/ବହିଇ ଆନନ୍ଦ/ଜୀବନ ଜାହ୍ନବୀ ଧାର"/ । ଏହି ଆତ୍ମ ସମର୍ପଣହିଁ ବ୍ରାହ୍ମଚେତନାର ଆତ୍ମିକ ରୂପ ମାତ୍ର ।

ସଂସାରର ଅଳୀକତା, ଅସାରତା, ଅନିତ୍ୟତା ପ୍ରଭୃତି କବିଙ୍କ ମାନସ-ପଟକୁ ଆଚ୍ଛାଦିତ କରିଛି । କାରଣ ଏ ଜଗତର କୌଣସି ବସ୍ତୁ ଚିରସ୍ଥାୟୀ ନୁହେଁ । ଜୀବନ, ଯୌବନ, ଧନ ସବୁ ଯେପରି ପଦ୍ମପତ୍ରରେ ଜଳସଦୃଶ ବିରାଜମାନ । ରାଜା, ପ୍ରଜା, ଧନୀ, ଦରିଦ୍ର, ଜ୍ଞାନୀ, ମୂର୍ଖ ସମସ୍ତେ ସେହି କାଳ-ଚକ୍ରଠାରେ ପରାଜିତ, କାରଣ "ବୃଥା ନର ଅହଂକାର ପଦର ଗୌରବ/ ନିମିଷେ ବିଲୋପୀ କାଳ କରେ ସବୁ ଖର୍ବ"/ ଏହି କାଳକୁ ରାଧାନାଥଙ୍କ ଦରବାରରେ ଲକ୍ଷ୍ୟ କରାଯାଇପାରେ । "ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ/ ହାବୋଡ଼ି ଯିବେ ସେ ଆଚମ୍ବିତେ ଆସି"/ ଯୁବତୀର ଚକ୍ଷୁଧାର, ନୟନର ରମ୍ୟଜ୍ୟୋତି, ସ୍ୱର୍ଣ୍ଣଘନ ସମ ବକ୍ଷ, ସ୍ମିତରୁଚିପଦ୍ମାନନ, ପ୍ରୌଢ଼ିର ଚତୁରଜ୍ଞାନ, ସବୁକିଛି ଅସାର । ମୃତ୍ୟୁରୂପକ ସିନ୍ଧୁକୁ ଭେଟିବାକୁ ଜୀବନରୂପକ ସ୍ରୋତ ଅବିରାମ ଗତିରେ ଗତିକରୁଛି । ସେହି ଭବସିନ୍ଧୁରେ ଆଶାରୂପକ ତରି ମାୟା ରୂପକ ଶୈଳରେ ପିଟିହୋଇ ନୈରାଶ୍ୟ ଆଳସ୍ୟ ସୃଷ୍ଟିକରୁଛି । ସଂସାର ରୂପକ ସମୁଦ୍ରରୁ ମୀନ ରୂପକ ମନୁଷ୍ୟକୁ କଙ୍କାଳରୂପକ ଜାଲରେ କାଳରୂପକ

ଧାବିର ଟାଣିନେଉଛି । ତେଣୁ କବି ମୃତ୍ୟୁ ପ୍ରତି ସଚେତନହୋଇ ସଂସାରର ଅଳୀକତା ଓ ନଶ୍ୱରତାର ଊର୍ଦ୍ଧ୍ୱରେ ରହିବାପାଇଁ କାମନା କରିଛି । ତେଣୁ କବି ସେହି ପରମେଶ୍ୱରଙ୍କ ସାନ୍ନିଧ୍ୟ ଲଭ ପାଇଁ ବ୍ୟାକୁଳ ହୋଇପଡ଼ି ଭକ୍ତ ଗଦ୍ ଗଦ୍ ହୋଇ ଗାଇ ଉଠନ୍ତି—"ଯେନ ମହାତନ୍ତ୍ରୀ ସାକ୍ଷୀ/ ଜୀବର ପରମଶିକ୍ଷା/ ତେବେବେରେ ନିଶ୍ଚୟ ସେହି ପ୍ରାଣାରାମ ଧନ/ ଆକୁଳ ହୃଦୟ କରେ ଯାର ଅନ୍ୱେଷଣ / ପଙ୍କମୟ ପୁଷ୍କରଣୀରେ କମଳ ଶୋଭିପାଇଲି ପରି ଧୂଳିର ଏ ମରକଳେବର ଭିତରେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ ଶୋଭିପାଉଅଛି । ତେଣୁ କବିଙ୍କର ଆତ୍ମା ପରମାତ୍ମା ସହିତ ସମନ୍ୱିତ ହେବାପାଇଁ ବ୍ୟଗ୍ର ହୋଇଉଠନ୍ତି । କାରଣ ମନୁଷ୍ୟର ଜୀବାତ୍ମା ଅସତ୍ ନୁହେଁ । ସୃଷ୍ଟିପୂର୍ବରୁ ଜୀବାତ୍ମା ପରମାତ୍ମାଙ୍କଠାରେ ଅବ୍ୟକ୍ତ ଭାବରେ ଥିଲା, ଅର୍ଥାତ ତନ୍ମୟୀଭୂତ ଥିଲା; ପରେ ତାହାର ଅଭିବ୍ୟକ୍ତ ବା ଆବିର୍ଭାବ ହୋଇଛି । ଜୀବାତ୍ମା ଓ ପରମାତ୍ମାଙ୍କ ଏ ସମ୍ବନ୍ଧରେ ଭାବ ଉପନିଷଦରେ ଅତି ସୁନ୍ଦର ଭାବରେ ଫୁଟି ଉଠିଛି । ଦୁଇ ସୁନ୍ଦର ପକ୍ଷୀ ଏକ ବୃକ୍ଷରେ ଏକତ୍ର ବାସ କରନ୍ତି । ଦୁଇ ପକ୍ଷୀ ପରସ୍ପରର ସଖା । ସେଥିମଧ୍ୟରୁ ଜଣେ ସୁଖରେ ଫଳ ଭୋଗ କରନ୍ତି । ଅନ୍ୟଜଣକ ଅନଶନ ଥାଇ କେବଳ ଦର୍ଶନ କରନ୍ତି ।" ଏହି ଅମରବାଣୀକୁ ମଧୁସୂଦନ ଏହିପରି ଗ୍ରହଣ କରିଛନ୍ତି । ଗୋଟିଏ ପକ୍ଷୀ ଜୀବାତ୍ମା, ଅପର ପକ୍ଷୀ ପରମାତ୍ମା, ଉଭୟେ ନିରାକାର ଏବଂ ଅତୀନ୍ଦ୍ରିୟ; କିନ୍ତୁ ଜଣେ କ୍ଷୁଦ୍ର ଓ ପରିମିତ, ଅନ୍ୟଜଣକ ମହାନ୍ ଓ ଅନନ୍ତ । ପରମାତ୍ମା ବା ବ୍ରହ୍ମପକ୍ଷୀ ନାନାବିଧ ଫଳ ଏବଂ ଉପାଦେୟ ସାମଗ୍ରୀ ଜୀବାତ୍ମାକୁ ଦାନ କରୁଅଛନ୍ତି, ଜୀବାତ୍ମା ତାହା ସୁଖରେ ଭୋଗ କରୁଅଛି । (୯) ସେହି ପରମାତ୍ମାହିଁ ସନ୍ତାପିତ ପ୍ରାଣର ଚନ୍ଦନ ସ୍ୱରୂପ, ସଂସାରର ବିଷାକ୍ତ ନେତ୍ରରେ ଅଞ୍ଜନ ସଦୃଶ । ତେଣୁ ତାଙ୍କରି ପଦାରବିନ୍ଦରେ କବି ନିଜର ଭକ୍ତିଚିତ୍ତକୁ ଅର୍ପିତ କରି ପରମେଶ୍ୱରଙ୍କୁ ନିବେଦନ କରିଛନ୍ତି—"ଆସ ନାଥ ଅଗତିର ଗତି/ ତୁମ୍ଭ ବିନା ଏ ସଂସାରେ, ମରଇ ମୁଁ ହାହାକାରେ/ ତାରି ମୋତେ ଦେଇ ପ୍ରଭୁ—ଦେଇଣ ସୁମତି/ଅନନ୍ତ ଦୟା ତୁମ୍ଭର ଅନନ୍ତ ଶକତି" । "ଈଶ୍ୱରଙ୍କ

(୯) ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ନଟବର ସାମନ୍ତରାୟ

ସାନ୍ନିଧ ବ୍ୟତିରେକେ ଆତ୍ମାର ଆର୍ତ୍ତିନାଦର ପରିସମାପ୍ତି ନାହିଁ । ଏଣୁ ପରମ କାରୁଣିକ ମଙ୍ଗଳମୟ ପୁରୁଷଙ୍କ ଅନନ୍ତ ଦୟାହିଁ କବିଙ୍କର ଏକାନ୍ତ କାମ୍ୟ । (୧୦) ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଛନ୍ତି, "ହେ ଅର୍ଜ୍ଜୁନ ! ମୋତେ ଆର୍ତ୍ତି, ଜିଜ୍ଞାସୁ, ଜ୍ଞାନୀ ଓ ଅର୍ଥାର୍ଥୀ ଏହି ଚତୁର୍ବିଧ ବ୍ୟକ୍ତି ଉପାସନା କରନ୍ତି । ମଧୁସୂଦନ ସେହିଭଳି କେତେବେଳେ ଜିଜ୍ଞାସୁ, ଆର୍ତ୍ତିଭାବରେ ତ କେତେବେଳେ ଜ୍ଞାନୀ ଓ ଅର୍ଥାର୍ଥୀ ଭାବରେ ଭଗବାନଙ୍କୁ ଆରାଧନା କରିଛନ୍ତି । କବିଙ୍କ ମତରେ ଅତୀତର ବୃଥାଭାବନା କିମ୍ବା ଭବିଷ୍ୟତର ଛଳନା ନକରି ବିଳାସ ଆଳସ୍ୟ ତ୍ୟାଗପୂର୍ବକ ପ୍ରାଣପଣେ ମାନବର କଲ୍ୟାଣ ସାଧନ କରି ସେହି ପରମେଶ୍ୱରଙ୍କ ନିକଟରେ ନିଜକୁ ଉତ୍ସର୍ଗ କରି । କାରଣ ବ୍ରାହ୍ମଧର୍ମ ସର୍ବଧର୍ମ ମଧ୍ୟରେ ମହୋଦାର । ଏହା ଅଧୀନତା ଅନ୍ଧକାରକୁ ଦୂରକରି, ଦେଶ, ବର୍ଣ୍ଣ, ଜାତି ଭେଦ ପ୍ରଭୃତି ବିନାଶି ପ୍ରେମର ରାଜ୍ୟ ସ୍ଥାପନ କରୁଛି । ତେଣୁ ସେହି ବ୍ରହ୍ମକୁ ହିଁ କବି ହୃଦୟ କୁଟୀରରେ ସ୍ଥାନ ଦେଇ ମହାନନ୍ଦରେ ସୁମରିଙ୍କରି ମହାପ୍ରେମର ମିଳନ ହେଉଛିବୋଲି ଅନୁଭବକରି ଗାଇ ଉଠିଛନ୍ତି—"ସର୍ବେ ମିଳି ଡାକ-ବ୍ରହ୍ମେ/ବ୍ରହ୍ମାଣ୍ଡ ଈଶ୍ୱର ହେ/ ସେହି ବ୍ରହ୍ମନାମ ବାଜୁ ହୃଦ-ମୃଦଙ୍ଗରେ ହେ × × ଗାଅ ସର୍ବେ ସେହି ନାମ, ମଙ୍ଗଳ ଶାନ୍ତିର ଧାମ/ ନ ରହିବ ପାପ ତାପ ଆଉ ହୃଦୟରେ ହେ"/ ଉକ୍ତି ଭିତରେ ସର୍ବଧର୍ମ ସମନ୍ୱୟରେହିଁ ବ୍ରାହ୍ମଧର୍ମର ପରିପ୍ରକାଶ ଘଟିଛି । ଶୟନେ ସ୍ୱପନେ ଜାଗରଣେ ପବିତ୍ର ପ୍ରେମରେ ପୁରୁଷଙ୍କ ନାମ ଭଜନ କୀର୍ତ୍ତନକରି ତାଙ୍କରି ପବିତ୍ର ନାମକୁ ହୃଦୟ କୁଟୀରରେ ଅବସ୍ଥାନକରି ଜୀବନ ସାର୍ଥକ କରିବେ ବୋଲି କବି ଗାଇଛନ୍ତି, "ଏ ଶୁଭ କାଳରେ ମନ, ଚିନ୍ତ ନିତ୍ୟ ନିରଞ୍ଜନ/ ତାଙ୍କରି ପବିତ୍ର ନାମ ଗାଅ ପବିତ୍ର ଅନ୍ତରେ / ସାର୍ଥକ ହେବ ଜୀବନ ମିଳିବ ଅମୃତଧନ / ବିରାଜିବ ଶାନ୍ତି-ପଦ୍ମ ସ୍ୱଚ୍ଛ ହୃଦସରୋବରେ"/ ପ୍ରକୃତରେ ଭକ୍ତ ଭଗବାନଙ୍କର ଏକାନ୍ତ ଆତ୍ମୀୟ ନହେଲେ ଏଭଳି ବାଣୀ ମୁଖନିସୃତ ହୁଏବୋଲି କଳ୍ପନା କରିହୁଏନାହିଁ । ଭଗବାନଙ୍କର ସୀମା ସରହଦକୁ ଭକ୍ତ ଲଙ୍ଘନ ନ କରିବା ଯାଏ ସେ ଭକ୍ତର ଅନ୍ତର ମଧ୍ୟରେ ଅବତୀର୍ଣ୍ଣ ହୁଅନ୍ତିନାହିଁ । ଯେତେବେଳେ

---

(୧୦) ମଧୁସୃଷ୍ଟି ଅମୂର୍ତ୍ତି ଦୃଷ୍ଟି—ଡକ୍ଟର ଶରତଚନ୍ଦ୍ର ପ୍ରଧାନ (ପୃ: ୪୫)

ଭକ୍ତଚିତ୍ତ ଏକାଗ୍ର ଭାବରେ ତାଙ୍କ ନିକଟରେ ଅର୍ପିତ ହୋଇଯାଏ, ସେତେବେଳେ ପରମେଶ୍ୱର ଭକ୍ତ ହୃଦୟରେ ବିରାଜମାନ କରିଥାନ୍ତି । କୃଷ୍ଣ ଦ୍ୱୈପାୟନ ବ୍ୟାସଦେବକୃତ ଶ୍ରୀମଦ୍‌ଭଗବତ ଗୀତାରେ ଶ୍ରୀକୃଷ୍ଣ ପ୍ରିୟତମ ସଖା ଅର୍ଜ୍ଜୁନଙ୍କୁ କହୁଛନ୍ତି, "ହେ ଅର୍ଜ୍ଜୁନ—ପତ୍ରଂ ପୁଷ୍ପଂ ଫଳଂ ତୋୟଂ-ଯୋମା ଭକ୍ତ ପ୍ରୟଚ୍ଛତି । ତଦହଂ ଭକ୍ତ୍ୟାପହୃତଂ ମଶ୍ନାମି ପ୍ରୟତାତ୍ମନମ୍" ପତ୍ର, ପୁଷ୍ପ, ଫଳ, ଜଳ ପ୍ରଭୃତି ମୋତେ ଭକ୍ତି ସହକାରେ ଅର୍ପଣ ନକଲେ ମୁଁ ଭକ୍ତର ଅନ୍ତର ମଧ୍ୟରେ ଅବସ୍ଥାନ କରିପାରେ ନାହିଁ । କହିବାର ଉଦ୍ଦେଶ୍ୟ ଯଥାକ୍ରମେ ଦ୍ରୌପଦୀ, ଗଜ, ଶବରୀ, ବସୁଦେବ ତାଙ୍କୁ ଭକ୍ତିରେ ଅର୍ପଣ କରିଥିବାରୁ ସେ ତାଙ୍କୁ ଗ୍ରହଣ କରିଥିଲେ । ହୁଏତ ସେଦିନ ଭକ୍ତ-କବି ମଧୁସୂଦନ ଏହି କଥା ନିଜ ହୃଦୟରେ ଭାବି ଚିନ୍ତା କରିଥିବେ— "ଆହା କି ସୁନ୍ଦର, ଭକ୍ତ ହୃଦ ଭାବ/ବ୍ରହ୍ମଲୋକେ ସମୁଜ୍ଜ୍ୱଳ/ସେହିପରି କେବେ, ସଭାବ ପ୍ରଭାବରେ/ପୂରିବ ମୋ ଅନ୍ତସ୍ଥଳ"/କେବଳ ସେତିକ ନୁହେଁ, ପରମେଶ୍ୱରଙ୍କର ପାଦପଦ୍ମରେ ଧ୍ୟାନ ରଖି ରାବଣର ଭାଇ ବିଭୀଷଣ ମଧ୍ୟ ଲଙ୍କାରେ ରାଜାହୋଇ ପାରିଥିଲେ । ଯେଉଁ ପାଦଲାଗି ଅହଲ୍ୟା ମୁକ୍ତି ପାଇଥିଲ, ସେହି ପାଦଧୋଇ କୈବର୍ତ୍ତ ଯୁଗଯୁଗର କଳୁଷକୁ ଦୂର କରିଥିଲା ଏବଂ ସେହି ପାଦଲାଗି ଧ୍ରୁବ ପ୍ରହ୍ଲାଦ ବୈକୁଣ୍ଠରେ ଅମୂଲ୍ୟ ସମ୍ପଦ ପାଇଥିଲେ । ଯେଉଁ ପାଦଲାଗି ମାର୍କଣ୍ଡେୟ ଋଷି ପ୍ରଳୟ ଜଳରେ ବ୍ରହ୍ମାଣ୍ଡକୁ ଦେଖିପାରିଥିଲେ, ସେହି ପାଦରେ ଚନ୍ଦନଲେପି କୁବୁଜା ସୁନ୍ଦର ରୂପ ପାଇଥିଲା । ଏହିପରି ଭକ୍ତ ସଂଖ୍ୟା ଭକ୍ତ ସଂସାରରେ ଅତୁଳନୀୟ; କିନ୍ତୁ ଯୁଗଯୁଗ ଲାଗି ତାଙ୍କର ପାଦପଦ୍ମ ପାଇ ବ୍ୟାକୁଳହୋଇ ଥିଲେ ମଧ୍ୟ କବି ତାଙ୍କର ତତ୍ତ୍ୱ ସମ୍ପର୍କରେ ଅଗୋଚର । ସେ ଅନୁଭବ କରୁଛନ୍ତି ସର୍ବଦା ସେହି ଭୂମାର ଅନନ୍ତଲୀଳା । ବେଦ, ବେଦାନ୍ତ, ପୁରାଣ, ଦର୍ଶନଶାସ୍ତ୍ର ପ୍ରଭୃତିରେ ମଧ୍ୟ ତାଙ୍କର ତତ୍ତ୍ୱ ଅଗୋଚର । କାରଣ "ନିରନ୍ତ ସର୍ବ ସଂସାର, ବୋଲେ ଅଗମ୍ୟ ଅପାର/ ମହିମାର ପାରିବାର ଭୂମା ଅନନ୍ତ ଈଶ୍ୱର"/"କୀଟରୁ ପତଙ୍ଗ, ସ୍ଥାବରୁ ଜଙ୍ଗମ, ସକଳଘଟରେ ଭୂମାର ଦର୍ଶନ, ମୃତ୍ୟୁରେ ଅମୃତର ଉପଲବ୍ଧି । ଅବସାଦରେ ପ୍ରସାଦର ଆସ୍ୱାଦନ, ନିର୍ଜୀବରେ

ଜୀବନର ଉଜ୍ଜୀବନ, ଦୃକ୍ଷରେ ଉଚ୍ଚର ଆରୋପଣ, ନଗଣ୍ୟରେ ମହାନର ଆବେଦନ, ସସୀମରେ ଅସୀମର ଉଦ୍‌ବୋଧନହିଁ କବିଙ୍କ ଜୀବନରେ ସମ୍ଭବ ହୋଇଥିଲା । (୧୧) ପଣ୍ଡିତ ମୃତ୍ୟୁଞ୍ଜୟ ରଥ 'ବ୍ରହ୍ମଙ୍କ ମଧୁସୂଦନ'ରେ ସୂଚନା ଦେଇ କହିଛନ୍ତି "ନଦୀସ୍ରୋତ ଯେପରି ପ୍ରତିବନ୍ଧକ ଅତିକ୍ରମକରି ଶେଷରେ ନିଜ ନାମ ରୂପ ଭୁଲିଯାଇ ସମୁଦ୍ରରେ ମିଶିଯାଏ, ସେହିପରି ଜ୍ଞାନୀବ୍ୟକ୍ତି ସମସ୍ତ ବାଧାବିଘ୍ନ ଲଙ୍ଘି ଶେଷରେ ଆପଣାର ନାମ ରୂପ ଭେଦ ଭୁଲି ସେହି ଦିବ୍ୟ ପୁରୁଷଙ୍କ ସହିତ ମିଳିତ ହୁଅନ୍ତି ।" (୧୨) ଏହାହିଁ ତାଙ୍କ ଜୀବନର ପ୍ରତିବିମ୍ବମାତ୍ର ।

କବିଙ୍କ ମତରେ ସବୁ ତୀର୍ଥ ମଧ୍ୟରେହିଁ ମହାତୀର୍ଥ ଭକ୍ତର ହୃଦୟ କନ୍ଦର । ଯେଉଁଠାରେ ପାପତାପ-ହାରୀ ପୂର୍ଣ୍ଣବ୍ରହ୍ମ ନିର୍ବିକାରଭାବରେ ଭକ୍ତ ଚିତ୍ତରେ ଅବତୀର୍ଣ୍ଣ ହୋଇଥାନ୍ତି । ସେହି ଭକ୍ତର ହୃଦୟ ହେଉଛି ସ୍ୱର୍ଗଭୂମି, ମୋକ୍ଷଧାମ । ଯେଉଁଠାରେ କି ପୁଣ୍ୟର ଧାରା କଳୁଷଭାରକୁ ହରଣକରି ନିରନ୍ତର ଭାବରେ ଝରିଯାଉଛି । ତେଣୁ କବିଙ୍କର ସଂସାରରେ ଆଉ କାହା ପ୍ରତି ଭୟନାହିଁ । କବି ନିଜେ ଅନୁଭବ କରୁଛନ୍ତି ତାଙ୍କୁ ସେହି ବିଶ୍ୱପତି ପ୍ରେମ-ବାହୁ ବିସ୍ତାରିତ କରି ଧରି ରଖିଛନ୍ତି । ଏଣୁ ନିର୍ବିକାର ଚିତ୍ତରେ ସମଗ୍ର ପ୍ରାଣକୁ ତାଙ୍କ ନିକଟରେ ସମର୍ପଣ କରିବାଛଡ଼ା କବିଙ୍କର ଉପାୟନାହିଁ । ସେହି ପରମେଶ୍ୱର ହିଁ "ବିନାଶି ଆସକ୍ତି, ଦିଅ ପ୍ରେମଭକ୍ତି/ନେଇଯାଅ ଶାନ୍ତି ଧାମେ" ବୋଲି କବି ତାଙ୍କୁ ପ୍ରାର୍ଥନା କରିଛନ୍ତି । କବି ନିଜକୁ ଭଗବାନଙ୍କ ନିକଟରେ ପାଷାଣ୍ଡ, ନାସ୍ତିକ, ଅଧମ, କପଟାଗ୍ରହୀ ଏବଂ ମୁଖେ ପ୍ରଭୁଶବ୍ଦ ଉଚ୍ଚାରଣ ଅଥଚ ଅନ୍ତର ମଧ୍ୟରେ ଅହଂକାରର ଭାବ ନିହିତ ବୋଲି ଉଲ୍ଲେଖ କରିଥିଲେ ମଧ୍ୟ ହୃଦୟକୁଟୀରରେ ସେହି ଜ୍ୟୋତିର ଜ୍ୟୋତି ଦର୍ଶନଦେଇ ଜୀବନ ସାର୍ଥକ କରିବେବୋଲି କବିଙ୍କର ଆଶା । ସଂସାରର ମୋହ ଅନ୍ଧକାର ଭିତରେ କବିଙ୍କର ଅନ୍ଧନୟନ ପତିତପାବନଙ୍କର ଶ୍ରୀଚରଣକୁ ଦର୍ଶନ କରିପାରୁନାହିଁ ।

(୧୧) ସାହିତ୍ୟିକ ଦିଗ୍‌ଦର୍ଶନ—ଅଧ୍ୟାପକ ଡଃ ବାସୁଦେବ ସାହୁ (ପୃ—୧୯୬)

(୧୨) ଉତ୍କଳ ସାହିତ୍ୟ ୧୮।୭

ନାନାପ୍ରକାର ପାପଯାତନା ମଧ୍ୟରେ ହୃଦୟସ୍ଥ ତାଙ୍କର ଅଥୟ୍ୟ ହୋଇପଡ଼ୁଛି । ତେଣୁ କବି ଭବଗ୍ରାହୀଙ୍କ ନିକଟରେ ଆକୁଳ ହୃଦୟରେ ତାଙ୍କର ଦର୍ଶନ ଭିକ୍ଷା କରିଛନ୍ତି; କିନ୍ତୁ କବି ଅନ୍ତର୍ଯ୍ୟାମୀଙ୍କୁ ଦର୍ଶନ କରିବେ ସତ ହେଲେ ଅଟରେ ମାତ୍ର ତାଙ୍କ ପ୍ରେମପଥରେ ପଡ଼ିଗଲେ ଭକ୍ତ-ଅଶ୍ରୁ-ଜଳରେ ଭିଜି କହିବେ "କ୍ଷମା ସାଗର ବିନଧାନେ କ୍ଷମାକର/ନୋହିଲେ ଗଲିଟି ସରି ବୋଲି କର ଯୋଡ଼ି-ବି ରେ× × ରଖ ରଖ ବୋଲି କୃପାସିନ୍ଧୁ ଜଳେ ବୁଡ଼ିବି ରେ"/କବିଙ୍କର ପରମେଶ୍ୱରଙ୍କ ଚରିତରେ ଏକାଗ୍ରତା ବିଦ୍ୟମାନ । କବିଙ୍କ ଦଗ୍ଧହୃଦୟରେ ସେ ଶାନ୍ତିର ଚନ୍ଦନ, ଆନନ୍ଦ ଅଳୟରେ ପ୍ରାଣ ନନ୍ଦନ ଓ ନିଖିଳ ଜଗତ ମଧ୍ୟରେ ଅମୃତ ଧନ ସଦୃଶ ଉପଲବ୍ଧି କରୁଛନ୍ତି । ଏଣୁ ସଂସାରରୂପକ ବନ ମଧ୍ୟରେ କବିଙ୍କର ଆଶାରୂପକ ଲତା 'ଫଳୁ ଅବା ମରୁ' "ପଦଛାୟା ତଳେ/ ରଖିଅଛ ମୋତେ/ବୋଲିବି ମୁଁ ନିରନ୍ତର"/ବୋଲି ଭକ୍ତିଚିତ୍ତରେ ଗାଇ-ଉଠିଛନ୍ତି । ହେଲେ ମାତ୍ର ସ୍ୱୀୟ ମଧୁସୂଦନ ଯାହା ସ୍ୱୀକାର କରି ଯାଇଛନ୍ତି ତାହା ଆମର ସ୍ମରଣଯୋଗ୍ୟ । "ବିଭୁ ପ୍ରେମରୂପକ ସମୁଦ୍ରଜଳରେ ଶୁଭ ବିଧାନ ରୂପକ ତରଣୀ ମହାନନ୍ଦରେ ମହାପୁଣ୍ୟ ତେଜଧରି ବିଶ୍ୱ କର୍ଣ୍ଣଧାର ହରିଙ୍କଦ୍ୱାରା ଭାସି ଭାସି ଚାଲିଯାଉଛି; ମାତ୍ର ସଂସାର ରୂପକ ଜାଲରେ ପଡ଼ି ମାନବର ଆତ୍ମା ସେହି ତରଣୀକୁ ଧରିନପାରି ଫେରିଆସୁଛି । (୧୩) ଚତୁର୍ଦ୍ଦିଗରେ ମୃତ୍ୟୁର ଡଗର "ଘେନିଯାଉଅଛି କେତେ ଆତ୍ମୀୟ ସଖାରେ" କହି କବି ସଂସାରରୂପକ ଅନ୍ଧକାରରେ ତୁମରି "ଅମୃତ ଜ୍ୟୋତି" ଦେଖାଅ ବୋଲି ପ୍ରାର୍ଥନା କରିଛନ୍ତି । ବ୍ରହ୍ମହିଁ ସଂସାର ସିନ୍ଧୁକୁ ପାରିହେବା ପାଇଁ ଏକମାତ୍ର ସହାୟକ । ତେଣୁ ତାଙ୍କରି ନାମ ସ୍ମରଣକରି ତାଙ୍କ ପାଦପଦ୍ମରେ ମନପ୍ରାଣ ସମର୍ପଣ କରି ବ୍ରହ୍ମନିକେତନରେ ଆଶ୍ରୟ ନେବାହିଁ କବିଙ୍କର ଅନ୍ତିମ କାମନା ।

ପରିଶେଷରେ କୁହାଯାଇପାରେ ଯେ "ମଧୁସୂଦନଙ୍କ ସାହିତ୍ୟରୁ ଯେଉଁ ଆନନ୍ଦ ମିଳେ, ତାହା କାବ୍ୟାନନ୍ଦ ନୁହେଁ ବ୍ରହ୍ମାନନ୍ଦ ମାତ୍ର । ଯେଉଁ ରସ ପାଉ

(୧୩) ମଧୁସୂଦନ ଗ୍ରନ୍ଥାବଳୀ—ପୃ ୨୮୧

ତାହା କାବ୍ୟରସ ନୁହେଁ ଭକ୍ତିରସ ମାତ୍ର । ଏଥିରୁ ଆମେ ଯେଉଁ ଅମୃତ ପାଉ ତାହା କାବ୍ୟାମୃତ ନୁହେଁ, ଶାନ୍ତ ଅମୃତ ମାତ୍ର । ସଂସାର ବିଷାକ୍ତ ନେତ୍ରେ ଯେ ଯଥାର୍ଥତଃ 'ଅଞ୍ଜନ' ସଦୃଶ । ଯେ 'ସନ୍ତାପିତ ପ୍ରାଣର ଚନ୍ଦନ' ଓ 'ପ୍ରାଣାରାମ'—ତାଙ୍କର ଅମୃତ ପରିବେଷଣ କରିବା ମଧୁସୂଦନ ସାହିତ୍ୟର ସର୍ବଶ୍ରେଷ୍ଠ ଗୌରବ ମାତ୍ର । (୧୪) □□□

---

(୧୪) ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ନଟବର ସାମନ୍ତରାୟ
—(ପୃ ୩୩୭)

# ଓଡ଼ିଆ ଗଦ୍ୟ ଓ ଭକ୍ତକବି ମଧୁସୂଦନ

ଶ୍ରୀ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ, ବି. ଏ. (ଅନର୍ସ)
ପ୍ରାକ୍ତନ ଓଡ଼ିଆ ପ୍ରଜ୍ଞାନ ଛାତ୍ର

ଊନବିଂଶ ଶତାବ୍ଦୀରେ ସମଗ୍ର ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ ଗଦ୍ୟସାହିତ୍ୟର ପ୍ରଭୂତ ବିକାଶ ଘଟିଛି । ବଙ୍ଗଳା ସାହିତ୍ୟରେ କଲିକତା ସଂସ୍କୃତ କଲେଜର ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ତଥା ଅନ୍ୟମାନଙ୍କ-ଦ୍ୱାରା ଗଦ୍ୟର ବିକାଶ ହୋଇଥିଲା । ସେହିପରି ଆଧୁନିକ ଓଡ଼ିଆ ସାହିତ୍ୟରେ ମଧୁସୂଦନ ରାଓ ହିଁ ଗଦ୍ୟର ପ୍ରାଣପ୍ରତିଷ୍ଠା କରିଥିଲେ । ୧୮୭୦ ପ୍ରାକ୍‌କାଳରେ ରଚିତ ଓଡ଼ିଆ ଗଦ୍ୟରେ ଭାଷା ଓ ସାହିତ୍ୟିକ ମର୍ଯ୍ୟାଦାର ସନ୍ଧାନକଲେ ନିରାଶ ହେବାକୁ ପଡ଼େ । ମଧୁସୂଦନ ହିଁ ଆଧୁନିକ ଓଡ଼ିଶାର ଜ୍ଞାନ-ବିଜ୍ଞାନ-ଭିତ୍ତିକ ଗଦ୍ୟ ସାହିତ୍ୟର ପ୍ରଥମ ସାର୍ଥକ ଶିଳ୍ପୀ । ତାଙ୍କ ଗଦ୍ୟରେ ପ୍ରଥମକରି ଆଧୁନିକ ଜ୍ଞାନ-ବିଜ୍ଞାନର ଭାବମୂର୍ତ୍ତି ରୂପ ପରିଗ୍ରହଣ କରିଛି । ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାର ସଂଘର୍ଷ ହେତୁ ଗତ ଶତାବ୍ଦୀରେ ଯେଉଁ ନୂତନ ଚିନ୍ତାସ୍ରୋତର ପ୍ଲାବନ ସୃଷ୍ଟି ହୋଇଥିଲା, ଓଡ଼ିଶାରେ ସେଇ ଚିନ୍ତାସ୍ରୋତର ଯଥାର୍ଥ ସଂସ୍ଥାପକ ଥିଲେ ମଧୁସୂଦନ । ଯେଉଁ ସମୟରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅସ୍ୱୀକୃତ, ଗଦ୍ୟଭାଷା ନାମରେ ଅତି ଦରିଦ୍ର, ଶକ୍ତି ସାମର୍ଥ୍ୟହୀନ, ବଙ୍ଗଭାଷା ମିଶ୍ରିତ ସାମ୍ବାଦିକ ଭାଷା ଏକମାତ୍ର ଗଦ୍ୟରୂପେ ପ୍ରଚଳିତ, ସେହି ସମୟରେ ମଧୁସୂଦନଙ୍କ ଗଦ୍ୟସାହିତ୍ୟର ସୃଷ୍ଟି ଓ ବିକାଶ ।

ସାଧୁ ଶବ୍ଦ, ସଂସ୍କୃତ ଶବ୍ଦାଡ଼ମ୍ବର, ଆବେଗଧର୍ମୀ ବର୍ଣ୍ଣନା ହିଁ ମଧୁସୂଦନଙ୍କ ଗଦ୍ୟରୀତିର ଶ୍ରେଷ୍ଠ ଲକ୍ଷଣ । ସମାସବହୁଳ ପଦ, ଅଳଙ୍କାର ମଣ୍ଡିତ ଦୀର୍ଘବାକ୍ୟ ପ୍ରଭୃତି ମଧ୍ୟ ଅନ୍ୟତମ ଲକ୍ଷଣୀୟ ବିଷୟ । ଡକ୍ଟର ଗୋପାଳଚନ୍ଦ୍ର

ମିଶ୍ରଙ୍କ ମତାନୁଯାୟୀ "ମଧୁବାବୁଙ୍କ ସାଧୁ ଶବ୍ଦ କଠିନ ପାଣ୍ଡିତ୍ୟପୂର୍ଣ୍ଣ ଗଦ୍ୟ ସୃଷ୍ଟିର ଏକ ପ୍ରଧାନ କାରଣ ହେଉଛି ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବା ଏବଂ ପଡ଼ୋଶୀଭାଷା ପ୍ରଭାବରୁ ଏବଂ ମିସନାରୀମାନଙ୍କ ପ୍ରଣୋଦିତ ଗଦ୍ୟଶୈଳୀରୁ ତାକୁ ମୁକ୍ତକରିବା । ତାଙ୍କ ଗଦ୍ୟଭାଷାର ସଙ୍ଗୀତମୟତା ଏବଂ ଶକ୍ତିଶାଳୀତା ସ୍ୱୀକାର୍ଯ୍ୟ । ତାଙ୍କର ଅନୁବାଦିତ କିମ୍ବା ମୌଳିକ ପ୍ରବନ୍ଧସମୂହର ଶବ୍ଦ ଓଜସ୍ୱିତା, ଅଳଙ୍କାର ପ୍ରାଚୁର୍ଯ୍ୟ ଏବଂ ଭାବଗାମ୍ଭୀର୍ଯ୍ୟ ଅନନ୍ୟ ସାଧାରଣ ।" ମଧୁସୂଦନ ଓଡ଼ିଆ ଗଦ୍ୟସାହିତ୍ୟରେ ସୁଚିନ୍ତିତ ଭାବରେ ପୂର୍ଣ୍ଣଚ୍ଛେଦ, କମା, ସେମିକୋଲନ୍ ପ୍ରଭୃତିର ବ୍ୟବହାର କରିଥିଲେ । ବାକ୍ୟାଂଶ, ଶବ୍ଦାଂଶ, ବିଶେଷ୍ୟ, ବିଶେଷଣ, ସର୍ବନାମ, ଅବ୍ୟୟପଦ ପ୍ରଭୃତି ଶୃଙ୍ଖଳିତ ଭାବରେ ମଧୁସୂଦନଙ୍କ ଗଦ୍ୟରେ ବ୍ୟବହାର କରାଯାଇଛି । ସେଥିପାଇଁ ଗଦ୍ୟସାହିତ୍ୟରେ ତାଙ୍କ କୃତିତ୍ୱ ସର୍ବବାଦୀସମ୍ମତ । ଡକ୍ଟର ନଟବର ସାମନ୍ତରାୟଙ୍କ ଭାଷାରେ "ଓଡ଼ିଆ ଗଦ୍ୟଭାଷା ଯେତେବେଳେ ଅସ୍ଥିରତା ଭିତରେ ଗତିକରୁଥିଲା, ସେତେବେଳେ ବ୍ରାହ୍ମଧର୍ମାବଲମ୍ବୀ ମଧୁସୂଦନ 'ତତ୍ତ୍ୱବୋଧିନୀ' ପତ୍ରିକାର ଆଦର୍ଶରେ ଓଡ଼ିଆରେ ଏକ ମାର୍ଜିତ ସଂସ୍କୃତ ବହୁଳ ଭାଷା ଅତି ସଙ୍କୋଚନ-ଚିତ୍ତରେ ପ୍ରବର୍ତ୍ତନ କରିଥିଲେ । ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରମାଣ, ସମସ୍ତଭାବ ଅଭିବ୍ୟକ୍ତ କରିପାରିବାରେ କ୍ଷମତା ପ୍ରଦର୍ଶନ, ଦୁର୍ବଳ ପ୍ରାଣହୀନ ଭାଷାରେ ପ୍ରାଣପ୍ରାଚୁର୍ଯ୍ୟ ପ୍ରତିଷ୍ଠା, ବଙ୍ଗଳା ପ୍ରଭାବ ପରିହାର—ଏ ସମସ୍ତ ଏପରି ଭାଷା ପ୍ରବର୍ତ୍ତନଦ୍ୱାରା ସମ୍ଭବ ହୋଇଥିଲା । ମଧୁସୂଦନଙ୍କ ଏ ଭାଷାରେ ଥିବା ପ୍ରାଣପ୍ରାଚୁର୍ଯ୍ୟ, ନବୀନ ତେଜସ୍ୱୀତା, ଅତୁଳନୀୟ ଗାମ୍ଭୀର୍ଯ୍ୟ, ସ୍ୱାଭାବିକ ଅର୍ଥଧାରଣ କ୍ଷମତା ସହିତ ଗଦ୍ୟଭାଷାର ସଙ୍ଗୀତମୟତା ତଥା ସୁନିୟନ୍ତ୍ରିତ ଭାବର ସୁଷମାମୟ ସମାବେଶ ପ୍ରତ୍ୟେକ ପାଠକଙ୍କୁ ବିମୁଗ୍ଧ କରିଦେଇଥାନ୍ତି ।" (ଓଡ଼ିଆ ସାହିତ୍ୟର ଇତିହାସ : ୧୮୦୩-୧୯୨୦ )

ମଧୁସୂଦନଙ୍କ ଗଦ୍ୟରେ ମୁଖ୍ୟତଃ ତିନଗୋଟି ଧାରା ପରିଲକ୍ଷିତ ହୁଏ ।

(କ) ପ୍ରବନ୍ଧ ସାହିତ୍ୟ,

(ଖ) କଥା ସାହିତ୍ୟ,

(ଗ) ଅନ୍ୟାନ୍ୟ ଗଦ୍ୟରଚନା ।

## (କ) ପ୍ରବନ୍ଧ ସାହିତ୍ୟ

ମଧୁସୂଦନଙ୍କ 'ପ୍ରବନ୍ଧମାଳା' ୧୮୮୦ ମସିହାରେ ପ୍ରକାଶ ପାଇଥିଲା । "ଏଥିରେ ଯେଉଁ ଊଣେଇଶଟିଗୋଟି ପ୍ରବନ୍ଧ ପ୍ରକାଶ ପାଇଥିଲା, ସେମାନଙ୍କ ବିଦ୍ୟାଳୟରେ ତତ୍କାଳୀନ ପାଠ୍ୟପୁସ୍ତକର ମାନଭାବ ପରିଲକ୍ଷିତ ହୋଇଥିବା ସ୍ୱାଭାବିକ । ତେଣୁ ତାଙ୍କ ସୃଷ୍ଟିରେ ସ୍ୱାଭାବିକତାର ଅଭାବ ପରିଲକ୍ଷିତ ହୁଏ ଏବଂ ଉଚ୍ଚକୋଟୀର ଭାବୁକତା ଓ ଦାର୍ଶନିକତାର ସ୍ପଷ୍ଟ ଅଭିବ୍ୟକ୍ତି ମଧ୍ୟ ସେଥିରେ ପ୍ରକାଶ ପାଇପାରିନାହିଁ ।

ମଧୁସୂଦନଙ୍କ ଗଦ୍ୟ ଶବ୍ଦ-ପ୍ରଧାନ, ଏହାର ଶୈଳୀ ଜଟିଳ ଓ ବାକ୍ୟ ଗାମ୍ଭୀର୍ଯ୍ୟପୂର୍ଣ୍ଣ । ସୁସଂଯତ ସାଧୁ ଶବ୍ଦ ତଥା ସାହିତ୍ୟିକ ଭାଷା ଏଥିରେ ବ୍ୟବହୃତ । ଏଥିରେ 'ପ୍ରସ୍ଥାନକଲେ', 'ଗମନକଲେ', 'ପ୍ରଦାନକଲେ'—ପ୍ରଭୃତି କଠିଣ କ୍ରିୟାପଦ ବ୍ୟବହୃତ ହୋଇଅଛି । ଏହାର ରଚନା ଗୁରୁଗମ୍ଭୀର । ଉଦାହରଣ ସ୍ୱରୂପ—"ଯେଉଁ ମହାପୁରୁଷଙ୍କ ପ୍ରବର୍ତ୍ତିତ ଧର୍ମ ସଂପ୍ରତି ଆସିଆ-ଖଣ୍ଡର ଅଧିକାଂଶ ଅଧିବାସୀଙ୍କର ଅବଲମ୍ବିତ, ସେହି ଭୁବନବିଖ୍ୟାତ ମହାତ୍ମା ବୁଦ୍ଧଦେବ ନେପାଳ ରାଜ୍ୟର ହିମାଚ୍ଛନ୍ନ ପର୍ବତମାଳାର ସମୀପବର୍ତ୍ତୀ କପିଳବାସ୍ତୁ ନାମ୍ନୀ ନଗରୀରେ ଜନ୍ମ ଗ୍ରହଣ କରିଥିଲେ ।" (ବୁଦ୍ଧଦେବ—ସାହିତ୍ୟ ପ୍ରସଙ୍ଗ : ଗ୍ରନ୍ଥାବଳୀ ପୃ ୩୨୬ ) ଅନ୍ୟତ୍ର 'ରାଣୀ ଦୁର୍ଗାବତୀ'ରେ—"ଊନବିଂଶ ଶତାବ୍ଦୀର ଭାରତୀୟ ନାରୀମାନଙ୍କର ଦୁର୍ଦ୍ଦଶା ଅବଲୋକନ କରି କିଏ ବିଶ୍ୱାସ କରିବ ଯେ ଏହି ହତଭାଗ୍ୟ ଦେଶ ଏକ ସମୟରେ ସମରବିଳାସିନୀ ମନସ୍ୱିନୀ ବୀରବାଳାମାନଙ୍କର ଲୀଳାସକ୍ଷେତ୍ର ଥିଲା । 'ଭାରତୀୟ ବୀରନାରୀ' ଆଜି ଏହି ପଦ ଗୁଡ଼ିକ ଆମ୍ଭମାନଙ୍କ ସମୀପରେ ଅସାର ପ୍ରଳାପରୂପେ ପ୍ରତୀୟମାନ ହେଉଅଛି ସତ୍ୟ; କିନ୍ତୁ ଏହା କାହାରି କପୋଳକଳ୍ପିତ ନୁହେଁ । ମୁସଲମାନ ଇତିହାସ ବଜ୍ରନିଘୋଷରେ ସେହି ବୀରେନ୍ଦ୍ର ବରଣୀୟା ନାରୀମାନଙ୍କର କୀର୍ତ୍ତିଗାନ କରୁଅଛି । କବିମାନଙ୍କର ଅମୃତ ଏବଂ ପବିତ୍ର କଣ୍ଠ ସେମାନଙ୍କର ମନୋହର ଚରିତକୁ ଅମର ସଂଗୀତରେ ନିବଦ୍ଧ କରିଅଛି । ରାଣୀ ଦୁର୍ଗାବତୀ ସେହି ପୁଣ୍ୟକୀର୍ତ୍ତି ବୀରାଙ୍ଗନାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା । (ରାଣୀ

ଦୁର୍ଗାବତୀ-ସାହିତ୍ୟ ପ୍ରସଙ୍ଗ-ଗ୍ରନ୍ଥାବଳୀ ପୃ. ୩୪୬) ।” ଏହାର ଭାଷା, ବାକ୍ୟ-ବିନ୍ୟାସ, ଶବ୍ଦଯୋଜନା, ବ୍ୟାକରଣଗତ ବୈଶିଷ୍ଟ୍ୟ ଶୃଙ୍ଖଳିତ ଏବଂ ମାର୍ଜିତ । ଏହାକୁ ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟର ଏକ ସ୍ୱତନ୍ତ୍ର ରୀତି ବା ଶୈଳୀ ଭାବରେ ସ୍ୱୀକାର କରାଯାଇ ‘ମଧୁସୂଦନୀୟ ରୀତି’ କୁହାଯାଇପାରେ ।

## ବର୍ଣ୍ଣନାତ୍ମକ ଗଦ୍ୟ

“ଚିଲିକାର ଦୃଶ୍ୟ ଅତି ବିଚିତ୍ର ଓ ସୁନ୍ଦର । ପଶ୍ଚିମଦିଗରେ ପ୍ରାଚୀର-କୃତି ଭାଲେରୀ ପର୍ବତର ନାସି ବମନମୁହୋଇ ଚିଲିକାର ଜଳରାଶି ଭେଦକରୁଅଛି ଏବଂ ଜହିଆନାମକ ସୁଶ୍ୟାମଳ ଗିରି ଜଳମଧ୍ୟରେ ଉଚ୍ଚ ରହିଅଛି । ଯୋଲଗ୍ରି ନାମକ ବିମାନାକୃତି ବିଶାଳ ଗିରି ଆପଣାର ସୁନୀଳ ଉଦାରଶୋଭା ପ୍ରକାଶ କରୁଅଛି । ପାରିକୁଦ, ମାଲୁଦ ପ୍ରଭୃତି ଜଳମଧ୍ୟସ୍ଥିତ ଦ୍ୱୀପପୁଞ୍ଜ, ନଳବନ ଓ ଶସ୍ୟକ୍ଷେତ୍ରର ଶୋଭାରେ ଶୋଭିତ । ହଂସ, ବକ, ହଂସଚିଲି, କାଦମ୍ବ, ଚକ୍ରବାକ ପ୍ରଭୃତି ଲକ୍ଷ ଲକ୍ଷ ବିହଙ୍ଗ ଚିଲିକାର ତରଙ୍ଗ ଉପରେ ଭାସୁଅଛନ୍ତି, ଅଥବା ଊର୍ଦ୍ଧ୍ୱରେ ଉଡ଼ି, ହ୍ରଦକୁ ସେମାନଙ୍କର ନିଃସ୍ୱନଦ୍ୱାରା ଶବ୍ଦାୟମାନ କରୁଅଛନ୍ତି । ଲକ୍ଷ ଲକ୍ଷ ଶୁଭ୍ରବର୍ଣ୍ଣ ମତ୍ସ୍ୟ ଚିଲିକାର ଜଳରେ ସନ୍ତରଣ କରୁଅଛନ୍ତି । ମକର, ଶିଶୁମାର, ସାଙ୍କୁଚ ପ୍ରଭୃତି ଜଳବାସୀ ଜୀବମାନେ ଚିଲିକାର ସଲିଳରେ ଏଣେତେଣେ ବିଚରଣ କରୁଅଛନ୍ତି । ଚିଲିକା ଏହିପରି ନାନା ଶୋଭାର ଆଧାର ହୋଇ ଦର୍ଶକର ମନୋହରଣ କରୁଅଛି । ନାରିକେଳ, ଗୁବାକ, ପନସ, ଆମ୍ର, ତାଳ, ତମାଳ, ନାଗେଶ୍ୱର, ଚମ୍ପକ, ଅଶୋକ, କଦମ୍ବ, ବଟ, ଅଶ୍ୱତ୍ଥ, ଶାଳ୍ମଳୀ, ବିଲ୍ୱ ପ୍ରଭୃତି ବୃକ୍ଷମାଳାରେ ଶୋଭିତହୋଇ ତଟବର୍ତ୍ତୀ ଗ୍ରାମମାନ ସୁଶ୍ୟାମଳ ଓ ସ୍ନିଗ୍ଧ ଦିଶୁଅଛି । କବିବର ରାଧାନାଥ ଚିଲିକାକୁ ଶୋକପାସୋରା ଅପ୍ସରା-ଭୁବନ ଓ ପ୍ରକୃତିର ଗୁରୁ-ଚିତ୍ରଶାଳା ବୋଲି ବର୍ଣ୍ଣନା କରିଅଛନ୍ତି । ( ଚିଲିକାହ୍ରଦ-ସାହିତ୍ୟ କୁସୁମ-ଗ୍ରନ୍ଥାବଳୀ-ପୃ. ୩୦୬ ) । ଏହି ବାକ୍ୟ ତତ୍ସମ ଶବ୍ଦବହୁଳ ହୋଇଥିବାରୁ ସାଧାରଣ ଗ୍ରାମ୍ୟସ୍ତରକୁ ଆସିପାରିନାହିଁ ।

ମଧୁସୂଦନଙ୍କ ଗଦ୍ୟଲେଖା ମଧ୍ୟରୁ ଅଧିକାଂଶ ଇଂରାଜୀ ରଚନାମାନଙ୍କର ଅନୁବାଦ କିମ୍ବା ଅନୁସରଣରେ ଲିଖିତ । ଧର୍ମନୀତି, ମାନବଜାତିର ଉନ୍ନତି, ରାମାୟଣ, ସୌନ୍ଦର୍ଯ୍ୟ ଓ ରୁଚି, ପୁରୁଷ ଭାବ ଏବଂ ନାରୀଭାବ, ଗତି, ଶାସନ-ପ୍ରଣାଳୀ, ତାହାଙ୍କର ମୌଳିକ ପ୍ରବନ୍ଧ । ମାତ୍ର ନେପୋଲିୟନ, ଚନ୍ଦ୍ର ଓ ତାରା, ବାୟୁରାଶି, ଦୁର୍ଗାବତୀ, ଲିସ୍‌ବନ୍‌ ଭୂମିକମ୍ପ, ଉଲ୍‌କାପିଣ୍ଡ, ଆଇଜାକ୍‌ ନିଉଟନ୍‌, ବୁଦ୍ଧଦେବ ପ୍ରବନ୍ଧଗୁଡ଼ିକ ଯଥାକ୍ରମେ The Nepoleon Dynasty, M, Cullochys course of Reading, British Quarterly Review, Eliots' History of India Vol VI, Penny Magazine, Museum of Science, Chambers Biography, Max Muller's chips from a German Workshop ପ୍ରଭୃତି ପ୍ରବନ୍ଧ ବା ପୁସ୍ତକରୁ ଅନୂଦିତ ।" ପ୍ରବନ୍ଧମାଳା ସମ୍ପର୍କରେ ରାଧାନାଥ କହିଥିଲେ—"ପ୍ରାୟ ପ୍ରତ୍ୟେକ ପ୍ରବନ୍ଧ ଛାତ୍ରମାନଙ୍କର ଅନୁସନ୍ଧିତ୍ସା ଉଦ୍ଦୀପକ ଏବଂ ଦୃଷ୍ଟି ପ୍ରସାରପୋଷଣଯୋଗୀ ହୋଇଅଛି ଏବଂ ଆମ୍ଭମାନଙ୍କ ମାତୃଭାଷାରେ ଏ ପର୍ଯ୍ୟନ୍ତ ଯେତେଖଣ୍ଡ ଗଦ୍ୟମୟ ପାଠ୍ୟପୁସ୍ତକ ପ୍ରକାଶିତ ହୋଇଅଛି, ପ୍ରବନ୍ଧମାଳା ସେଥିମଧ୍ୟରେ ସଂସ୍କୃତାଭିମୁଖୀ । ତେଣୁ ଏଥିରେ ତତ୍ସମ ଶବ୍ଦର ପ୍ରାଚୁର୍ଯ୍ୟ, ସମାସଯୁକ୍ତ ପଦବିନ୍ୟାସ ତଥା ଦୀର୍ଘ ବାକ୍ୟ ପ୍ରଭୃତି ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ—

ଦୀର୍ଘବାକ୍ୟ:

"ଯେଉଁ ସୁବିସ୍ତୀର୍ଣ୍ଣ ବାୟୁରାଶି ସମସ୍ତ ବସୁନ୍ଧରାକୁ ସମାଚ୍ଛାଦିତ କରି ରହିଅଛି; ଯାହାର ସାଗରୋପମ ଅନନ୍ତଗର୍ଭ ମଧ୍ୟରେ ଜୀବମାନେ ମୀନାଦି ଜଳଚର ସଦୃଶ ଅବସ୍ଥାନ କରୁଅଛନ୍ତି; ଯାହାର ମୃଦୁ ହିଲ୍ଲୋଳ ବନ ଏବଂ ଉପବନମାନଙ୍କର ପତ୍ରାବଳି ଏବଂ କୁସୁମରାଶିକୁ କମ୍ପିତକରି ଏବଂ ନାସାତର୍ପଣକାରୀ ପରିମଳ ବହନକରି, ପ୍ରଣୟିଜନୋଚିତ ଯତ୍ନ ସହକାରେ

ପରିଶ୍ରାନ୍ତ ଜୀବମାନଙ୍କର ସନ୍ତାପ ଅପନୋଦନ କରୁଅଛୁ, ଯେଉଁ ପ୍ରଭଂଜନ ଭୟଙ୍କର ବେଗରେ ପ୍ରବାହିତ ହୋଇ, ଘୋର ଭୈରବନାଦରେ ସମସ୍ତ ବିଶ୍ୱକୁ ଆତଙ୍କାକୁଳ କରି ଅଟଳ ଗିରିଶୃଙ୍ଗକୁ ସୁଦ୍ଧା ବିଦୀର୍ଣ୍ଣ କରୁଅଛୁ, ଯାହାର ଅସୀମ ଶକ୍ତି ପ୍ରଚଣ୍ଡ ସଂହାରମୂର୍ତ୍ତି ଧାରଣକଲେ ଅରଣ୍ୟାନୀ ସବୁ ସମୂଳରେ ଉତ୍ପାଟିତ ହେଉଅଛୁ; ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ନଗରମାନ ବିଧ୍ୱସ୍ତ ହେଉଅଛୁ ଏବଂ ସୁବୃହତ୍ ପୋତରାଜି କ୍ରୀଡ଼ାସାମଗ୍ରୀତୁଲ୍ୟ ଇତସ୍ତତଃ ବିକ୍ଷିପ୍ତହୋଇ ଚୂର୍ଣ୍ଣ ହେଉଅଛୁ, ଯାହାକୁ ପ୍ରାଚୀନ ପଣ୍ଡିତମାନେ ପ୍ରାଣରୂପେ ଉପଲବ୍ଧି କରି ଜଗତ୍‌ପ୍ରାଣ ଆଖ୍ୟା ପ୍ରଦାନ କରିଅଛନ୍ତି, ସେହି ବାୟୁରାଶି ବିଷୟ ଆଲୋଚନା କରିବା କିଦୃଶ କୌତୁକର ବିଷୟ ।" (ବାୟୁରାଶି ପ୍ରବନ୍ଧମାଳା—ମଧୁସୂଦନ ଗ୍ରନ୍ଥାବଳୀ ପୃ ୩୭୨—ଦ୍ୱିତୀୟ ସଂସ୍କରଣ—୧୯୭୦) ଏଥିରେ ବାୟୁକୁ ଜୀବନ୍ତ ଭାବରେ ବର୍ଣ୍ଣନା କରାଯାଇଛୁ । ଏହାର ବର୍ଣ୍ଣନା ଅତ୍ୟନ୍ତ ହୃଦ୍ୟ ଏବଂ ଭେଦ ଅତ୍ୟନ୍ତ ମାର୍ଜିତ । ତେବେ ମୁଖ୍ୟତଃ ରୁଚିବୋଧ ଓ ସୌନ୍ଦର୍ଯ୍ୟବୋଧ ଉପରେ ଗୁରୁତ୍ୱ ଆରୋପ କରାଯାଇଛୁ ।

ସମାସ ବହୁଳ ପଦବିନ୍ୟାସ—

'ରାମାୟଣ'ର ଜନକନନ୍ଦିନୀ ରାମହୃଦୟ ଜ୍ୟୋତ୍ସ୍ନାରୂପିଣୀ ସୀତାଙ୍କର ହୃଦୟହାରୀ ପବିତ୍ର ଚରିତ୍ର ଯେପରି ଚିତ୍ରିତ ହୋଇଅଛୁ, ଏହିପରି ସତୀନାରୀର ଚରିତ ଅନ୍ୟ କୌଣସି ଦେଶର ସାହିତ୍ୟରେ ନାହିଁ । ସୀତା ଏକାନ୍ତ ପତିପ୍ରାଣା ଓ ସରଳହୃଦୟା ଥିଲେ, ଦୁର୍ବୃତ୍ତ ରାବଣ ତାହାଙ୍କୁ ହରଣ କରିନେଇ ଥିଲା ସତ୍ୟ; କିନ୍ତୁ ତାହାଙ୍କ ସତୀତ୍ୱର ପବିତ୍ର ପ୍ରଭାବ ଦର୍ଶନକରି ସେ ଏପରି ହତବୁଦ୍ଧି ହୋଇଥିଲା ଯେ କଦାପି ତାଙ୍କର ଅଙ୍ଗକୁ ନିଜ ଅପବିତ୍ର ହସ୍ତରେ ସ୍ପର୍ଶ କରିପାରି ନଥିଲା ।" (ରାମାୟଣ-ପ୍ରବନ୍ଧମାଳା-ଗ୍ରନ୍ଥାବଳୀ-ପୃ ୪୦୧-ଦ୍ୱିତୀୟ ସଂସ୍କରଣ—୧୯୭୦) ପ୍ରବନ୍ଧମାଳା ମୁଖ୍ୟତଃ ବିଦ୍ୟାଳୟ ପାଠ୍ୟୋପଯୋଗୀ ଲିଖିତ । ମଧୁସୂଦନ ସମାଜ ଜୀବନରେ ଶିକ୍ଷକ ହୋଇଥିବାରୁ ତାଙ୍କ ସ୍ରଷ୍ଟା ମାନସରେ ଏହି ଭାବ ପ୍ରତିଫଳିତ ।

ସୌନ୍ଦର୍ଯ୍ୟ ଚେତନା—

ମଧୁସୂଦନଙ୍କ 'ସୌନ୍ଦର୍ଯ୍ୟ ଓ ରୁଚି' ପ୍ରବନ୍ଧରୁ ତାଙ୍କ ସୌନ୍ଦର୍ଯ୍ୟ ଚେତନାର ସ୍ୱରୂପ ଅନୁମିତ ହୁଏ—"ସୌନ୍ଦର୍ଯ୍ୟ ଅନୁଭବ କରିବା ଶକ୍ତି ମନୁଷ୍ୟଜାତିର ସାଧାରଣ ସମ୍ପତ୍ତି। ଜଗତର ଏମନ୍ତ କେହି ବ୍ୟକ୍ତି ନାହିଁ ଯାହାର ମନ ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟରେ କୌଣସି ଶୋଭା ସନ୍ଦର୍ଶନ ନ କରେ।" (ସୌନ୍ଦର୍ଯ୍ୟ ଓ ରୁଚି—ପ୍ରବନ୍ଧମାଳା)।

ଶିଶୁମାନଙ୍କୁ ନୂତନ ଜ୍ଞାନ ଯୋଗାଇବା ତଥା ସେମାନଙ୍କ ସୂକ୍ଷ୍ମ ଚିନ୍ତା ଶକ୍ତିକୁ ଜାଗ୍ରତ କରାଇ ସୂକ୍ଷ୍ମ ବିଶ୍ଳେଷଣଦ୍ୱାରା ସ୍ଥୂଳପଦାର୍ଥ ପ୍ରତି ଶିଶୁମାନଙ୍କୁ ଆକୃଷ୍ଟ କରାଇବା ମଧୁସୂଦନଙ୍କ ସ୍ରଷ୍ଟା-ମାନସର ମୁଖ୍ୟ ଉଦ୍ଦେଶ୍ୟ। ଅନ୍ୟ ପକ୍ଷରେ ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟର ଆଦିଯୁଗରେ ଏହି ସୃଷ୍ଟି-ଗୁଡ଼ିକ ନିତାନ୍ତ ଉପାଦେୟ। ତେଣୁ କ୍ଷୁଦ୍ର ହେଲେମଧ୍ୟ ପ୍ରତ୍ୟେକଟି ରଚନାର ବାକ୍ୟଗୁଡ଼ିକ ମଧୁସୂଦନୀୟ ଗଦ୍ୟରୀତିର ପରିଚୟ ଦେବାକୁ ସମର୍ଥ। ପ୍ରାଚୀନ ସଂସ୍କୃତ ସାହିତ୍ୟ ଅବଲମ୍ବନରେ ତାଙ୍କର କେତେକ ଗଦ୍ୟ ରଚିତ ହୋଇଅଛି। ବିଶେଷତଃ ହିତୋପଦେଶ, ପଞ୍ଚତନ୍ତ୍ର ପ୍ରଭୃତିର ପ୍ରଭାବ ପ୍ରତିବିମ୍ବିତ। ମଧୁସୂଦନଙ୍କ ଗଦ୍ୟ ବହୁମୁଖୀ ନୁହେଁ, ବରଂ ବୈଚିତ୍ର୍ୟପୂର୍ଣ୍ଣ ଓ ଆଭିଜାତ୍ୟ ସମ୍ବଳିତ।

## (ଖ) କଥା ସାହିତ୍ୟ—

ପ୍ରଣୟର ଅଦ୍‌ଭୁତ ପରିଣାମ (୧୮୭୩)କୁ ଆଧୁନିକ ଓଡ଼ିଆ କଥା ସାହିତ୍ୟର ମୂଳଭିତ୍ତିରୂପେ ଗ୍ରହଣ କରାଯାଇପାରେ। ଏହା ସିସିଲି ଦେଶର ଏକ ଗଳ୍ପ ଅବଲମ୍ବନରେ ଲିଖିତ। ଏହି ଗଳ୍ପରେ ପ୍ରଣୟର ପରିଣାମ ଅଦ୍‌ଭୁତ ହେଲେହେଁ ଏହା ପରିଶେଷରେ ତ୍ୟାଗରେ ମହିମା ମଣ୍ଡିତ ଏବଂ ରୁଚିର ଅନୁକୂଳ। ସାହିତ୍ୟରେ ଯେଉଁ ସମୟରେ ଯୁଗଧର୍ମକୁ ଲକ୍ଷ୍ୟ ରଖି ଅତୀତ ସାହିତ୍ୟର 'ପ୍ରେମ'କୁ ଅଶ୍ଳୀଳ ଆଖ୍ୟା ଦିଆଯାଇଥିଲା, ସେ ଯୁଗର ତ୍ୟାଗଦୀପ୍ତ ଏ ପ୍ରଣୟର ଆବିର୍ଭାବ ସ୍ରଷ୍ଟାମାନସର ଆଦର୍ଶର ପ୍ରତିଷ୍ଠା

କରିଅଛି । 'ହେମମାଳା' (୧୮୯୭)ରେ ସେହିପରି ଆଦର୍ଶ ପ୍ରେମର ବର୍ଣ୍ଣନା କରାଯାଇଛି । ମଧୁସୂଦନ ସାର୍ଥକ ଗଳ୍ପକାର ନୁହନ୍ତି । ତେବେ ଆଦି ପର୍ଯ୍ୟାୟରେ ଲିଖିତ ତାଙ୍କର ଗଳ୍ପ ଦୁଇଟିର ସାରସ୍ୱତ ମୂଲ୍ୟବୋଧକୁ ଆଧୁନିକ ଓଡ଼ିଆ କଥାସାହିତ୍ୟର ବିକାଶର କ୍ରମ-ପର୍ଯ୍ୟାୟର ବୋଲି ଅସ୍ୱୀକାର କରାଯାଇ ନପାରେ ।

## (ଗ) ଅନ୍ୟାନ୍ୟ ରଚନା—

ଅନୁବାଦ ଉତ୍ତରରାମଚରିତ, ମନ୍ତବ୍ୟ, ପରିଦର୍ଶନ-ବିବରଣୀ, ଅଭିଭାଷଣ, ଚିଠିପତ୍ର ଏବଂ ସମୀକ୍ଷା···ଇତ୍ୟାଦି । ମଧୁସୂଦନ ପ୍ରଥମ କରି ପ୍ରାଚ୍ୟ-ପାଶ୍ଚାତ୍ୟ ମାନଦଣ୍ଡରେ କବିବର ରାଧାନାଥଙ୍କ ମହାଯାତ୍ରାର ସମୀକ୍ଷା କରି ମୁଖବନ୍ଧ ଲେଖିଥିଲେ । ତାଙ୍କର କେତେକ ଦୁର୍ଲଭ ରଚନା ହେଉଛି; "କବିର କୌଶଳ, ପୂର୍ଣ୍ଣଧର୍ମ, ଗୋଟିଏ କଥା, ଶିକ୍ଷା ସମସ୍ୟା, ଅନନ୍ତ-ଆମ୍ଭମାନଙ୍କର ଆଦର୍ଶ, ସମାଲୋଚନା—ବିଜୟଗୀତିକା—ପ୍ରଥମ ଓ ଦ୍ୱିତୀୟ ଭାଗ, ଅଧ୍ୟାତ୍ମତତ୍ତ୍ୱ ଚିନ୍ତା, ଧର୍ମର ବଳ, ବିଦ୍ୟାଳୟର ଶାସନ···ଇତ୍ୟାଦି ।

ମଧୁସୂଦନଙ୍କ ଗଦ୍ୟ ସମସାମୟିକ ଗଦ୍ୟଭଳି ବାର୍ତ୍ତାମୂଖୀ ନହୋଇ ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ମନୋଜ୍ଞ ହୋଇପାରିଛି । ସୁନିର୍ବାଚିତ ଶବ୍ଦ ଗୁମ୍ଫନକୌଶଳ ଏହାର ଅନ୍ୟ ଏକ ବିଶେଷତ୍ୱ, ତାଙ୍କର ଲକ୍ଷ୍ୟ ଥିଲା, ପାଠକ ଚିତ୍ତରେ ସାହିତ୍ୟ ଚେତନା ଜାଗ୍ରତ କରାଇବା । ତେଣୁ ଭାବୋଦ୍ଦୀପକ ଭାଷା ପ୍ରୟୋଗ ସମୟରେ ତାଙ୍କ ରଚନା ତତ୍ସମ ଶବ୍ଦରେ ପରିପୂର୍ଣ୍ଣ ହୋଇଛି । ସେ ମୁଖ୍ୟତଃ କବି । ତେଣୁ ଗଦ୍ୟରେ ମଧ୍ୟ ଚିତ୍ରକଳ୍ପ, ଅନୁପ୍ରାସ, ଧ୍ୱନ୍ୟାତ୍ମକ ଭାଷା ପ୍ରୟୋଗ କରିବାକୁ ଚେଷ୍ଟା କରିଛନ୍ତି । ସେ ଶିକ୍ଷାପ୍ରଦ ଓ ଚିନ୍ତାମୂଳକ ବିଷୟବସ୍ତୁ ଅବଲମ୍ବନରେ ଶୁଦ୍ଧ ଓ ପରିମାର୍ଜିତ ଭାଷାରେ ଗଦ୍ୟରଚନା କରି ଥିବାରୁ ଓଡ଼ିଆ ଗଦ୍ୟ ସାହିତ୍ୟରେ ଏକ ନୂତନ ପରଂପରା ପ୍ରତିଷ୍ଠା କରିଛନ୍ତି । ପରବର୍ତ୍ତୀ କାଳରେ ବିଶ୍ୱନାଥ କର, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ ପ୍ରମୁଖ ଲେଖକଗଣ ମଧୁସୂଦନ ସୃଷ୍ଟ ପ୍ରଚଳିତ ଓଡ଼ିଆ ଗଦ୍ୟରୀତିଦ୍ୱାରା ପ୍ରଭାବିତ ହୋଇ ଥିବାର ଲକ୍ଷ୍ୟ କରାଯାଏ ।

ମଧୁସୂଦନ ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ନିରଳସ ସାହିତ୍ୟ ସାଧନା କରି ନୂତନ ରୁଚିବୋଧର ପ୍ରତିଷ୍ଠା କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ପରିଶେଷରେ ପ୍ରିୟରଞ୍ଜନ ସେନ୍‌ଙ୍କ ସହିତ ସ୍ୱରମିଳାଇ କୁହାଯାଇ ପାରେ—

"Oriya literature gained from him both in range and content and the gift was spontaneous."

(Modern Oriya Literature—Calcutta University—1947)

□□□

# ପ୍ରବଂଧ ଓ ମଧୁମାନସ

ଶ୍ରୀ କୈଳାସଚନ୍ଦ୍ର ମିଶ୍ର, ବି.ଏ. ଅନର୍ସ

ପ୍ରାକ୍ତନ ଓଡ଼ିଆ ପ୍ରଜ୍ଞାନ ପ୍ରେସ

ପ୍ରବଂଧ ଓ ମଧୁମାନସର ଆଲୋଚନା ପ୍ରସଂଗରେ ପ୍ରବଂଧ ଶବ୍ଦଟି ଆପେ ଆପେ ଚକ୍ଷୁସମ୍ମୁଖକୁ ଆସିଥାଏ । ପ୍ରବଂଧ ଶବ୍ଦର ବ୍ୟବହାର ପ୍ରାଚୀନ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ବହୁଳ ଭାବରେ ଦେଖାଯାଏ । ଉଦାହରଣ ସ୍ୱରୂପ ଏଠାରେ ସ୍ୱଳ୍ପ କେତୋଟି ଉଦାହରଣ ଉପସ୍ଥାପିତ କରାଗଲା ।

ଜୟଦେବ ଗୀତଗୋବିନ୍ଦ କାବ୍ୟରେ କହିଛନ୍ତି—

"ଶ୍ରୀ ବାସୁଦେବ ରତିକେଳି କଥା ସମେତଂ
ମେତଂ କରୋତି ଜୟଦେବ କବିଃ ପ୍ରବଂଧ"

'ପରିମଳା'ରେ ନରସିଂହ ସେଣ ଉଲ୍ଲେଖ କରିଛନ୍ତି—

"ନାଚଇ ସୁନ୍ଦରୀ ନାନା ପ୍ରବଂଧରେ ତହିଁ
ଟବୁକେ ତର୍ଜନ ଦେଇ ନାନା ମଣ୍ଡ ହୋଇ ।"

ରହସ୍ୟ ମଂଜରୀରେ ନବମ ଛାନ୍ଦରେ କୁହାଯାଇଛି—

ଗାବନ୍ତି, ବାବନ୍ତି, ପଢ଼ନ୍ତି, ଜଢ଼ନ୍ତି, ନାଚନ୍ତି, କାଛନ୍ତି ଛଟା
ସଜନୀ ବୋଇଲେ ଏତେବେଳେ ସଖି ବିଚ୍ଛେଦ ପ୍ରବଂଧ ଭେଟା ।"

ସେହିପରି ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି' କହେ—

"ଯମକାଦି ଚିତ୍ରକାବ୍ୟ ପ୍ରବଂଧ ପ୍ରବଂଧ
ଯଥାଜାତ ଧନ୍ଦା ଏହି ବୁଧ ମନବୋଧ ।"

ଓଡ଼ିଆ 'ଭାଗବତ'ରେ କୁହାଯାଇଛି—
"କଥା ପ୍ରବଂଧେ ଭାଗବତ
କହଇ ଦାସ ଜଗନ୍ନାଥ ।"

'ଚତୁରବିନୋଦ'କାର ପ୍ରବଂଧ ଶବ୍ଦକୁ ବ୍ୟବହାର କରି କହନ୍ତି "ନାନାକଥା ପ୍ରବଂଧେନ ଚରିତ୍ରଚରିତ ଯାବୃଶଂ" । କେବଳ ଏତିକି ନୁହେଁ, ଏହି ଶବ୍ଦଟି 'ରସକଲ୍ଲୋଳ' ଓ ଭଂଜାସ୍ନ ସାହିତ୍ୟରେ ମଧ୍ୟ ଅନୁଭବ୍ୟ । ଉପରୋକ୍ତ ବ୍ୟବହାର ଗୁଡ଼ିକରେ ପ୍ରବଂଧ ଶବ୍ଦକୁ କାବ୍ୟାବଳୀ କୌଶଳ ଯୋଜନା ପୂର୍ବାପର ସଂଗତି କ୍ରମିକତା ଆୟୋଜନ ବ୍ୟବସ୍ଥା ବନ୍ଦୋବସ୍ତ ଓ ଉତ୍କୃଷ୍ଟ ବନ୍ଧନ ଅର୍ଥରେ ବ୍ୟବହାର କରାଯାଇଥିଲା । ଇଂରେଜୀ ସାହିତ୍ୟରେ ମଧ୍ୟ ଅନୁରୂପ ଭାବେ ପଦ୍ୟରେ ପ୍ରବଂଧ ରଚିତ ହୋଇଥିଲା । ଉଦାହରଣ ସ୍ୱରୂପ ଆଲେକ୍‌ଜାଣ୍ଡାର ପୋପ୍‌ଙ୍କ 'Essy on Man' କବିତାକୁ ଗ୍ରହଣ କରାଯାଇପାରେ । ଅତଏବ ପ୍ରବନ୍ଧ ସାଂପ୍ରତିକ ଗଦ୍ୟର ଏକ ବଳିଷ୍ଠ ବିଭାଗ, ଏକ ବୌଦ୍ଧିକ ବିସ୍ଫୋରଣ ହେଲେ ମଧ୍ୟ ଏହି ଶବ୍ଦଟିର କଳ୍ପନା ପ୍ରାଚ୍ୟସାହିତ୍ୟରେ ଅନୁଭୂତ ହେଉଥିବାର ପ୍ରମାଣ ଉପରୋକ୍ତ ଉଦାହରଣରୁ ପ୍ରମାଣିତ ହେଲା; ମାତ୍ର ସମକାଳରେ ପ୍ରବନ୍ଧ ଶବ୍ଦ ବ୍ୟାପକ ଅର୍ଥାଭିସନ୍ଧି ନେଇ ପ୍ରଯୁକ୍ତ ହୋଇଛି । ଏହା ଇଂରାଜୀ Eassy ବା Eassies ଶବ୍ଦର ଶବ୍ଦାନ୍ତର । ଏହାର ଆଭିଧାନିକ ଅର୍ଥ ପ୍ରବନ୍ଧ ଉଦ୍ୟମ ବା ରଚନା ।

କହିବା ବାହୁଲ୍ୟ ଏହି ଅର୍ବାଚୀନ ପ୍ରବନ୍ଧ ବିଭାଗଟି ପ୍ରଥମ ଗଦ୍ୟରୂପ ନୁହେଁ, ପରନ୍ତୁ ଏହା ଓଡ଼ିଆ ଗଦ୍ୟର ଏକ ପୁଷ୍ଟଳ ପ୍ରକାଶ । ଓଡ଼ିଆ ସାହିତ୍ୟରେ · ଶିଳାଲେଖ, ମାଦଳାପାଞ୍ଜି, ରାଜବଂଶାବଳୀ, ସନନ୍ଦ ଓ ଟୀକାଟିପ୍‌ପଣି ପ୍ରଭୃତିକୁ ଛାଡ଼ିଦେଲେ ମହାଭାରତର 'କଂସର ଚଉତିଶା', ଜଗନ୍ନାଥଦାସଙ୍କର 'ତୁଳାଭିଣା', କବିସୂର୍ଯ୍ୟ ବଳଦେବଙ୍କର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ଗଦ୍ୟାଂଶ, ବତିଶ ସିଂହାସନ ଓ ବଡ଼ଜେନାଙ୍କର ଚତୁରବିନୋଦକୁ ଅନ୍ୟ ଗୋଟିଏ ଗୋଟିଏ ଗଦ୍ୟରୂପ ରୂପେ ଗ୍ରହଣ କରାଯାଇପାରେ ।

ସାହିତ୍ୟ ଯୁଗାତୀତ ଯୁଗାଶ୍ରୟୀ ଧର୍ମର ଏକ ମିଶ୍ରକଳା । କାଳାତୀତ ହେଲେହେଁ ସାହିତ୍ୟର ଚିରସବୁଜ ସଞ୍ଜୀବନ ଶରୀରରେ କାଳର ଶାଣିତ ସ୍ୱାକ୍ଷରକୁ ଅସ୍ୱୀକାର କରିହେବ ନାହିଁ । ସାହିତ୍ୟ ଯେପରି ସନାତନ ସତ୍ୟର ବାହନ ସେହିପରି କାଳଚକ୍ରର ପୋଚାଶ୍ରୟ ଓ ଯୁଗମାନସର ଏକ ସ୍ୱଚ୍ଛ ପ୍ରତିଛବି, ପ୍ରତିନିଧି ଓ ପ୍ରକାଶକ । ସାହିତ୍ୟର ବେଳାଭୂମିରେ ସ୍ପଷ୍ଟ ବା ଅସ୍ପଷ୍ଟ ସମୟର ଏକ ସୁନିର୍ଦ୍ଦିଷ୍ଟ ପଦଚିହ୍ନ ଯେ ରହିବ, ଏହା ଅନସ୍ୱୀକାର୍ଯ୍ୟ । ତେଣୁ ସାହିତ୍ୟର ଆଙ୍ଗିକ ଓ ଆତ୍ମିକର ସୂକ୍ଷ୍ମ ବ୍ୟବଚ୍ଛେଦ କଲେ ଯୁଗମାନସର ହୃଦ୍ୟମଧୁର ସ୍ପନ୍ଦନ ସ୍ପଷ୍ଟଭାବେ ଅନୁଭୂତ ହୁଏ । ସାହିତ୍ୟର ଏହି ସାର୍ବଜନୀନ ସତ୍ୟ ସମସ୍ତ ଭୌଗୋଳିକ ଅସାମଞ୍ଜସ୍ୟତା ନିର୍ବିଶେଷରେ ଯେ କୌଣସି ସାହିତ୍ୟ ପ୍ରତି ଅଭିପ୍ରେତ । ତେଣୁ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟପରି ଏହି ଓଡ଼ିଆ ସାହିତ୍ୟରେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଯୁଗର ଚିନ୍ତାଧାରା ଓ ବୃତ୍ତିର ପ୍ରଭାବ ସଙ୍କେତ ସ୍ପଷ୍ଟ ବିଦ୍ୟମାନ । ସ୍ପଷ୍ଟକରି କହିଲେ ଏହି ନବୀନ ଚିନ୍ତାଧାରା ଓ ଚିତ୍ତବୃତ୍ତିର ସାର୍ଥକ ପ୍ରତିଫଳନ ଠିକ୍ ସମାନ ନହେଲେ ମଧ୍ୟ ସାହିତ୍ୟର ଯେ କୌଣସି ବିଭାଗରେ ଅନୁଭବ୍ୟ । ତେଣୁ ସାହିତ୍ୟର ପ୍ରବନ୍ଧ ବିଭାଗଟି ଏହି ସାହିତ୍ୟରୁ ବଞ୍ଚିତ ହୁଅନ୍ତା କିପରି ! ଏହା ଫରାସୀ ସାହିତ୍ୟିକ ମୋର୍ଣ୍ଟେନ୍‌ଙ୍କଠାରୁ ଜନ୍ମଲାଭ କରି ଇଂରେଜ ପ୍ରାବନ୍ଧିକ ଫ୍ରାନ୍‌ସିସ୍ ବେକନ୍‌ଙ୍କଦ୍ୱାରା ପରିବର୍ଦ୍ଧିତ ହୋଇ ପରିବର୍ତ୍ତିତ ପରିସ୍ଥିତିରେ ଭାରତବର୍ଷରେ ପଦପାତ କଲା ।

ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ଆଧୁନିକ ମଣିଷର ମାନସିକ ଜନ୍ମାନ୍ତର ଘଟାଇ ନବଜାଗରଣ ସୃଷ୍ଟି କଲା । ନଅଙ୍କ ଦୁର୍ଭିକ୍ଷ, ଭାଷାବିଲୋପ ଆନ୍ଦୋଳନ, ପାଦ୍ରୀମାନଙ୍କ ଧର୍ମପ୍ରଚାର ଓଡ଼ିଶାବାସୀଙ୍କ ମନରେ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି କଲା । ଏହି ଆତ୍ମଗ୍ଲାନିକୁ ଦୂରୀଭୂତ କରିବାପାଇଁ ଉଦ୍ୟମ ହେଲା । ଆଧୁନିକ ସାହିତ୍ୟରେ କୌଣସି ବିଷୟରେ ତଥ୍ୟ ଅନ୍ୱେଷଣ ହେତୁ ଉଦ୍ଦୀପକ ସଙ୍ଘାତପୂର୍ଣ୍ଣ ଗଦ୍ୟସମାବେଶ ପ୍ରବନ୍ଧାଧୀନ । ଏହା ଗଦ୍ୟର ଏକ ଗୁରୁଶିଳ୍ପ ଓ ମାନବୀୟ ଜ୍ଞାନବିଜ୍ଞାନ ଚିନ୍ତାଚେତନାର ଅଶେଷ ସମ୍ପଦ । ସମୟର ବିବର୍ତ୍ତନରେ ପ୍ରଗତିଶୀଳ ଚିନ୍ତାନାୟକମାନେ ଏହି ଦୁର୍ବୋଧ ଅସ୍ପଷ୍ଟ ଧାରଣାଠାରୁ ଦୂରେଇ ଯାଇ ଏକ ବ୍ୟାପକ ଦୃଷ୍ଟିକୋଣରୁ ଏହାର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି ।

ସେମାନଙ୍କ ଦୃଷ୍ଟିରେ ଏହା ସୃଜନଶୀଳ ଗଦ୍ୟସୃଷ୍ଟି ଯହିଁରେ ଏକ ନିର୍ଦ୍ଦିଷ୍ଟ ବିଷୟରେ ଲେଖକର ଅଭିମତର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଲେଖକର ବ୍ୟକ୍ତିତ୍ୱ କଷଟି ପଥରରେ ଏହା ହୁଏ ମାଧୁର୍ଯ୍ୟମଣ୍ଡିତ । ଏଥିରେ ଲେଖକର ମୁଗ୍ଧମର୍ପଣ, ଅଧ୍ୟୟନ, ବିଶ୍ୱାସବୋଧ ସହ ଆତ୍ମଦ୍ୱନ୍ଦ୍ୱ ମନର ସନ୍ଦେହ, ସଂଶୟ, ବ୍ୟାକୁଳତା ସବୁ କିଛି ପ୍ରକାଶିତ ହୁଏ । ଏହି କାରଣରୁ ଆଧୁନିକ ଜୀବନପର ପ୍ରବନ୍ଧସାହିତ୍ୟ ଅସୀମ । ଏଥିରେ ମାନବର ସର୍ବୋତ୍ତମ ଚିନ୍ତାର ଅବିକଳ ପରିପ୍ରକାଶ ଘଟିଥାଏ । ପ୍ରବନ୍ଧ ଏକ ସାରସ୍ୱତ ଗଦ୍ୟ ସୃଷ୍ଟି । ଲେଖକ ବ୍ୟକ୍ତିତ୍ୱର ରୂପାୟନ ଓ ଚିନ୍ତାର ଶୀତଳ ସ୍ପର୍ଶରେ ଏହା କଲକଲ୍ଲୋଳ । ସ୍ୱାଭାବିକ ପ୍ରକାଶ, ସଙ୍ଗତ ଭାବନା, ସଂଯତ ଚେତନାରେ ଏହା ବର୍ତ୍ତୁଳ ।

ଇଂରାଜୀରେ Essay ର ସମଧର୍ମୀ ରଚନା ସ୍କେଚ୍, ମନୋଗ୍ରାଫ୍, ଟ୍ରିଟିଜ୍, ଡିସ୍କୋର୍ସ, ଡିସରେସନ୍, ଡ୍ରାଫ୍ଟ୍, ଥେସିସ୍, କ୍ରିଟିସିଜମ୍, ବେଲେସ୍ ଲେଟର ଇତ୍ୟାଦିକୁ ଗ୍ରହଣ କଲାପରେ ଭାରତୀୟ ସାହିତ୍ୟରେ ପ୍ରବନ୍ଧର ସମାନ୍ତରାଳ ଗଦ୍ୟସୃଷ୍ଟିଭାବରେ ରଚନା, ନିବନ୍ଧ, ସନ୍ଦର୍ଭ, ଆଲୋଚନା, ରମ୍ୟରଚନା, ଚରିତ ପ୍ରଭୃତିକୁ ସ୍ୱୀକୃତି ଦିଆଯାଇଛି । ସୁତରାଂ ବୃହତ୍ତର ଦୃଷ୍ଟିରୁ ବିଗ୍ଭରକଲେ, ନାଟକ, ଗଳ୍ପ, ଉପନ୍ୟାସ ବ୍ୟତୀତ ଅନ୍ୟ ସମସ୍ତ ଗଦ୍ୟସୃଷ୍ଟି ପ୍ରବନ୍ଧକଳାର ପରିସରଭୁକ୍ତ । ମାତ୍ର ଆଙ୍ଗିକ ଓ ଆତ୍ମିକର ବ୍ୟବଚ୍ଛେଦ କରି ଆଲୋଚକମାନେ ପ୍ରବନ୍ଧକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରିଥାନ୍ତି । ତାହା ହେଲା ବସ୍ତୁନିଷ୍ଠ ଓ ବ୍ୟକ୍ତିନିଷ୍ଠ ପ୍ରବନ୍ଧ । ବସ୍ତୁନିଷ୍ଠ ପ୍ରବନ୍ଧରେ ଲେଖକର ପ୍ରଜ୍ଞାର ସ୍ପର୍ଶ ମିଳେ । ଏହା ପାଠକର ବୁଦ୍ଧିକୁ ତୀକ୍ଷ୍ଣତୋଧର, ଦୃଷ୍ଟିକୁ ସମୁଜ୍ଜ୍ୱଳ ଓ ଜ୍ଞାନର ପରିଧିକୁ ପ୍ରଶସ୍ତକରି ଗଢ଼େ । ବ୍ୟକ୍ତିନିଷ୍ଠ ପ୍ରବନ୍ଧରେ ଲେଖକର ପ୍ରାଣରେ ଅଭ୍ରାନ୍ତ ସ୍ପର୍ଶ ପାଠକ ଲାଭକରିବା ସଙ୍ଗେସଙ୍ଗେ ପ୍ରାବନ୍ଧିକର ସ୍ୱତଃସ୍ଫୂର୍ତ୍ତି ଉଚ୍ଛ୍ୱାସର ବାଙ୍ମୟ ରୂପ ସନ୍ଦର୍ଶନ କରିପାରେ ।

ଭକ୍ତକବି ମଧୁସୂଦନ ହେଉଛନ୍ତି ପ୍ରଥମ ଶ୍ରେଣୀର ପ୍ରାବନ୍ଧିକ । ମଧୁବାବୁଙ୍କ ପ୍ରବନ୍ଧ ଆଲୋଚନା ତତ୍କାଳୀନ ସାମାଜିକ ପୃଷ୍ଠଭୂମିର ଅପେକ୍ଷା ରଖେ । ଓଡ଼ିଶାର ପାଠ୍ୟପୁସ୍ତକ ଆନ୍ଦୋଳନ ଏହାର ମୂଳାଧାର । ମଧୁସୂଦନଙ୍କ

ସମକାଳୀନ ଓଡ଼ିଶାରେ ପାଠ୍ୟପୁସ୍ତକର ଏକାନ୍ତ ଅଭାବ ଅନୁଭୂତ ହେଉଥିଲା । ଓଡ଼ିଆଭାଷା ଶିକ୍ଷାପାଇଁ ସେ କାଳରେ ଓଡ଼ିଆ ସାହିତ୍ୟରେ ଉପଯୁକ୍ତ ପାଠ୍ୟପୁସ୍ତକ ସୁଲଭ ନ ଥିଲା । ସେ ଯୁଗରେ ବହୁ କୃତବିଦ୍ୟ ସାହିତ୍ୟ-ସାଧକ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କରିଥିଲେ । ଏହି ଅଭାବବୋଧ ମଧୁସୂଦନଙ୍କୁ ପ୍ରବନ୍ଧରଚନା ଦିଗରେ ଟାଣିନେଇଥିଲା ।

ମଧୁବାବୁଙ୍କ ପ୍ରବନ୍ଧଗୁଡ଼ିକୁ ବର୍ଣ୍ଣନାତ୍ମକ, ବିବରଣୀମୂଳକ, ତାତ୍ତ୍ୱିକ ଓ ଆଲୋଚନାମୂଳକ, ତଥ୍ୟ ପରିବେଷଣମୂଳକ, ସମ୍ବାଦମୂଳକ ଆଦି ପର୍ଯ୍ୟାୟରେ ବିଭକ୍ତ କରିଯାଇପାରେ ।

ମଧୁବାବୁଙ୍କର ଶୈଳୀ ବିଦ୍ୟାସାଗରୀୟ ଶୈଳୀଦ୍ୱାରା ପ୍ରଭାବିତ । ଗୁରୁଗାମ୍ଭୀର୍ଯ୍ୟ ଭାଷା ତାଙ୍କର ପ୍ରବନ୍ଧଗୁଡ଼ିକର ଭାବଗାମ୍ଭୀର୍ଯ୍ୟ ରକ୍ଷାକରିବା ସଙ୍ଗେସଙ୍ଗେ ଯୁକ୍ତିଗୁଡ଼ିକୁ ବଳିଷ୍ଠଭାବେ ଉପସ୍ଥାପନା କରିପାରିଛି । ଏହି ଉନ୍ନତ ଶୈଳୀ ସାଙ୍ଗକୁ ମାର୍ଜିତ ଭାଷା ଭାବ ସରଣୀକୁ ସୁନ୍ଦରରୂପେ କଳକଲ୍ଲୋଳିତ କରି ମଧୁମାନସୀୟ ପ୍ରତିଭାର ପ୍ରମାଣ ଦେଇଛି ।

ପର୍ଯ୍ୟାୟକ୍ରମେ ପ୍ରବନ୍ଧ ଆଲୋଚନା କଲାପୂର୍ବରୁ ମୁଖ୍ୟତଃ ତିନିଗୋଟି ବିଷୟରେ ଗୁରୁତ୍ୱ ଆରୋପ କରିବା ଉଚିତ । ପ୍ରଥମତଃ ଲେଖକଙ୍କର ବ୍ୟକ୍ତିତ୍ୱ ଓ ଦୃଷ୍ଟିକୋଣ ଅର୍ଥାତ୍ ବର୍ଣ୍ଣିତ ବିଷୟ ପ୍ରତି ଲେଖକଙ୍କର ତତ୍‌କାଳୀନ ଦୃଷ୍ଟିଭଙ୍ଗୀ ଏବଂ ସମଗ୍ରଭାବେ ଜୀବନ ପ୍ରତି ସନ୍ଦେଶ । ଦ୍ୱିତୀୟତଃ ପ୍ରବନ୍ଧରେ ଲେଖକଙ୍କର ଚିନ୍ତାର ଅବକାଶ ଅର୍ଥାତ୍ ଲେଖକ ଆଲୋଚ୍ୟ ବିଷୟର କେଉଁ ବିଭାଗ ବର୍ଣ୍ଣନା ଲାଗି ନିର୍ବାଚନ କରିଛନ୍ତି ଓ ଉକ୍ତ ଭାବନାକୁ କିପରି ଅବତାରଣା କରିଛନ୍ତି । ତୃତୀୟତଃ ଆଲୋଚ୍ୟ ବିଷୟବସ୍ତୁର ଉପସ୍ଥାପନା ତାହାର ମର୍ମୋଦ୍‌ଘାଟନ ଓ ବ୍ୟାଖ୍ୟାନର ସମସ୍ତ କଳାନୈପୁଣ୍ୟ ମଧ୍ୟ ବିଚାର୍ଯ୍ୟ ।

ଚିଲିକା ହ୍ରଦ, ବ୍ୟାଘ୍ର, ଆକାଶମଣ୍ଡଳ, କାଶ୍ମୀରର ପ୍ରାକୃତିକ ଶୋଭା (ସାହିତ୍ୟ କୁସୁମ), ଜଳରାଶି, ଜଳପ୍ରପାତ, ହିମାଳୟ (ସାହିତ୍ୟ ପ୍ରସଙ୍ଗ), ବାୟୁରାଶି, ସୂର୍ଯ୍ୟ (ପ୍ରବନ୍ଧମାଳା) କୁମ୍ଭୀର, ସର୍ପ (ବାଳବୋଧ) ପ୍ରବନ୍ଧଗୁଡ଼ିକ

ବର୍ଣ୍ଣନାତ୍ମକ ପ୍ରବନ୍ଧ ପର୍ଯ୍ୟାୟଭୁକ୍ତ । ବର୍ଣ୍ଣନାତ୍ମକ ପ୍ରବନ୍ଧ ଆଲୋଚନାପାଇଁ କାଶ୍ମୀରର ପ୍ରାକୃତିକ ଶୋଭା ଓ ହିମାଳୟ ପ୍ରବନ୍ଧ ଦୁଇଟିକୁ ବିଚାରକୁ ନିଆଯାଇପାରେ । କାଶ୍ମୀରର ପ୍ରାକୃତିକ ଶୋଭାର ଏକ ବର୍ତ୍ତିଳ ପରିବେଶ ପ୍ରବଂଧଟିରେ ସୃଷ୍ଟି କରାଯାଇଛି । ପ୍ରାବଂଧିକଙ୍କର ସୌନ୍ଦର୍ଯ୍ୟବୋଧ କାବ୍ୟିକ ବ୍ୟଞ୍ଜନାଦ୍ୱାରା ଅତ୍ୟନ୍ତ ମହିମାମୟ ହୋଇଉଠିଛି । ପ୍ରାବଂଧିକଙ୍କ ଭାଷାରେ "କାଶ୍ମୀରର ଋତୁ ପରିବର୍ତ୍ତନ ଅତି ସୁନ୍ଦର । ବସନ୍ତ ପୂର୍ବରୁ ଯେତେବେଳେ ବରଫ ବା ଘନ ତୁଷାରର ଦ୍ରବ ଆରମ୍ଭ ହୁଏ, ସେତେବେଳେ ତୁଷାରମଣ୍ଡିତ ବୃକ୍ଷଲତା ତୁଷାର ବରଣ ଛାଡ଼ି ପୁଷ୍ପମୁକୁଳରେ ବିଭୂଷିତ ହୁଅନ୍ତି ।" କାଶ୍ମୀରର ପ୍ରାକୃତିକ ଶୋଭା ପଠନ କଲେ ପାଠକର ଅନ୍ତଃସ୍ଥଳରେ ଜୀବନ୍ତ ପ୍ରକୃତିର ମହିମାମୟ ରୂପଲାବଣ୍ୟ ପ୍ରତିଭାତ ହୁଏ । କାବ୍ୟଧର୍ମୀ ବଳିଷ୍ଠ ଭାଷାବିନ୍ୟାସ ଯୋଗେ ପ୍ରବଂଧଟି ଅତ୍ୟନ୍ତ ଋଦ୍ଧିମନ୍ତ । କାଶ୍ମୀର ସଂପର୍କରେ ଏକ ସ୍ପଷ୍ଟଧାରଣା ପ୍ରଦାନ କରିବା ଏ ପ୍ରବଂଧର ଉଦ୍ଦେଶ୍ୟ ।

ବର୍ଣ୍ଣନାଧର୍ମୀ ପ୍ରବଂଧ ହିସାବରେ ହିମାଳୟ ଅନ୍ୟ ଏକ ସାର୍ଥକ ସୃଷ୍ଟି । ପ୍ରବଂଧର ଆରମ୍ଭ କାବ୍ୟାତ୍ମକ, ବର୍ଣ୍ଣନା ବେଶ୍ ଫଟୋଗ୍ରାଫିକ୍, ସର୍ବୋପରି ଶବ୍ଦ ସଂଯୋଜନା ଗୁରୁଗମ୍ଭୀର । ପ୍ରବଂଧଟିରେ ହିମାଳୟର ଅବସ୍ଥିତି ଏହାର ପରିବେଶ ହିମାଳୟର ପ୍ରକୃତି, ଜୀବଜନ୍ତୁ, ଧାତବ ଦ୍ରବ୍ୟ, ଗିରିପଥ, ଶୃଙ୍ଗମାନଙ୍କର ଏକ ସଠିକ୍ ତାଲିକାର ସମାହାର । 'ହିମାଳୟ' ପାଠକଲେ ମନେହୁଏ ସତେ ଯେପରି ହିମାଳୟର ଭୂଗୋଳ ଏକ କାବ୍ୟିକ ଭଙ୍ଗୀ ମାଧ୍ୟମରେ ଅପରୂପ ରୂପଲାବଣ୍ୟମୟ ହୋଇଉଠିଛି । ଏହା କେବଳ ପାଠ୍ୟୋପଯୋଗୀ ପ୍ରବଂଧ ନୁହେଁ, ମାନବକୁ ବୁଦ୍ଧିଦୀପ୍ତ କରି ତାର ଜ୍ଞାନାର୍ଜନର ମାର୍ଗ ପ୍ରଶସ୍ତ କରିବାପାଇଁ ଅଭିପ୍ରେତ । ଏହି ପ୍ରବଂଧଟି ମଧୁସୂଦନଙ୍କ ଗଦ୍ୟଶୈଳୀର ଏକ ଉତ୍କୃଷ୍ଟ ଉଦାହରଣ । ବିଷୟବସ୍ତୁର ଉପସ୍ଥାପନା ଅତ୍ୟନ୍ତ ଅଭିନବ । ଏହି ଫଟୋଗ୍ରାଫିକ୍ ପ୍ରବଂଧଗୁଡ଼ିକ ଓଡ଼ିଆ ବର୍ଣ୍ଣନାତ୍ମକ ପ୍ରବଂଧଗୁଡ଼ିକୁ ବଞ୍ଚାଇ ରଖିଛି ।

ମହର୍ଷି ଦେବେନ୍ଦ୍ରନାଥ, ରାମତନୁ ଲାହିଡ଼ି, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ହାଜି ମହମ୍ମଦ ମୁସିନ୍, ମହାରାଣୀ ଭିକ୍ଟୋରିଆ, ସମ୍ରାଟ ସପ୍ତମ ଏଡ୍‌ୱାର୍ଡ୍,

ଆକବର, ରଙ୍ଗନାଥ ଶାସ୍ତ୍ରୀ, ସାର୍ ଶୟଦ୍ ଅହମ୍ମଦ, ସଫଳସ୍ୱପ୍ନ, ପ୍ୟାରୀମୋହନ ଆଚାର୍ଯ୍ୟ, ରାଣୀ ଅହଲ୍ୟାବାଈ, (ସାହିତ୍ୟ କୁସୁମ) ବୁଦ୍ଧଦେବ, ହସ୍ତୀ, କୃଷ୍ଣମୋହନ ବନ୍ଦୋପାଧ୍ୟାୟ, ରାଣୀ ଦୁର୍ଗାବତୀ, ସାର୍ ଆଇଜାକ୍ ନିଉଟନ୍, କୁମାରୀ ଫ୍ଲରେନ୍ସ ନାଇଟିଙ୍ଗେଲ, ମହାପୁରୁଷ ନାଇଟିଙ୍ଗେଲ୍, ବାବର, ଅଶୋକ, କୁମାରୀ ତରୁଦତ୍ତ, ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ର ଶେଖର ସିଂହ (ସାହିତ୍ୟ ପ୍ରସଙ୍ଗ), ନେପୋଲିୟନ୍, ବାରାଣାସୀ (ପ୍ରବନ୍ଧମାଳା), ଓଡ଼ିଶା, ଭାରତବର୍ଷ, ଶେରସାହ, କବି ରାଧାନାଥ ରାୟ ପ୍ରବନ୍ଧଗୁଡ଼ିକ ବିବରଣୀମୂଳକ ପ୍ରବନ୍ଧ ପର୍ଯ୍ୟାୟଭୁକ୍ତ । ଇତିହାସ ଶୈଳୀରେ ଚରିତ୍ର ଗଠନ ପାଇଁ ଶିକ୍ଷକ ମଧୁସୂଦନ ମହାପୁରୁଷମାନଙ୍କ ଜୀବନୀ ଅଧ୍ୟୟନ କରି ବିବରଣାତ୍ମକ ପ୍ରବନ୍ଧ ରଚନା କରିଛନ୍ତି । ଏତଦ୍‌ଭିନ୍ନ ଭାରତବର୍ଷ ଓ ଓଡ଼ିଶା ପ୍ରଭୃତି ପ୍ରବନ୍ଧ ମାଧ୍ୟମରେ ଜାତୀୟତାବୋଧ ସୃଷ୍ଟି କରିବା ପାଇଁ ପ୍ରଚେଷ୍ଟା କରିଛନ୍ତି । ପ୍ରତିନିଧିଭାବେ ପ୍ୟାରୀମୋହନ ଆଚାର୍ଯ୍ୟ ଓ ବୁଦ୍ଧଦେବ ପ୍ରବନ୍ଧଟିକୁ ବିଚାରକୁ ନିଆଗଲା ।

ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରବନ୍ଧଟି ଇତିହାସ ଶୈଳୀରେ ଲେଖା । ପ୍ୟାରୀମୋହନ ଥିଲେ ମଧୁବାବୁଙ୍କର ବନ୍ଧୁ । ତେଣୁ ବନ୍ଧୁ ବିୟୋଗ ପରେ ସ୍ମୃତି ତର୍ପଣ ଉଦ୍ଦେଶ୍ୟରେ ମଧୁମାନସରୁ ଏ ପ୍ରବନ୍ଧଟି ସୃଷ୍ଟି ହୋଇପରି ମନେହୁଏ । ସ୍ୱଳ୍ପ ପରିସର ମଧ୍ୟରେ ପ୍ୟାରୀମୋହନଙ୍କ ସୁଗୁଣଯୁକ୍ତ ଜୀବନୀକୁ ଦର୍ଶାଇ ଦିଆଯାଇଛି । ପରୋକ୍ଷରେ ଏହି ପ୍ରବନ୍ଧଟିରେ ତତ୍‌କାଳୀନ ଓଡ଼ିଶାର ସାମାଜିକ ଚିତ୍ର ପରିସ୍ଫୁଟିତ ହୋଇଛି । ଏହି ପ୍ରବନ୍ଧର ଭାଷା ଜଟିଳ ନୁହେଁ ।

'ବୁଦ୍ଧଦେବ' ତାଙ୍କର ଅନ୍ୟ ଏକ ବିବରଣୀମୂଳକ ପ୍ରବନ୍ଧ । ବୌଦ୍ଧଧର୍ମର ଜନକ ବୁଦ୍ଧଙ୍କର ମହିମାମୟ ଜୀବନର ପ୍ରତିଟି ମୋଡ଼ ଏହି ପ୍ରବନ୍ଧରେ ପ୍ରକାଶିତ ହୋଇଛି । ଏହାର ଭାଷା ଅତ୍ୟନ୍ତ ଗମ୍ଭୀର ହୋଇଥିବାରୁ ବୁଦ୍ଧ ଚରିତ୍ରର ଗାମ୍ଭୀର୍ଯ୍ୟ ରକ୍ଷାକରି ପାରିଛି ।

ଅଧ୍ୟବସାୟ (ସାହିତ୍ୟ କୁସୁମ), ଚନ୍ଦ୍ର ଓ ତାରା, ରୋମନ୍ଥକ ଜନ୍ତୁ (ସାହିତ୍ୟ ପ୍ରସଙ୍ଗ), ଜାତୀୟ ସାହିତ୍ୟ, ଶାସନ ପ୍ରଣାଳୀ, ରାମାୟଣ, ଗତି

(ପ୍ରବନ୍ଧମାଳା) ପ୍ରଭୃତି ପ୍ରବନ୍ଧଗୁଡ଼ିକ ତାତ୍ତ୍ୱିକ ଓ ଆଲୋଚନାମୂଳକ ପ୍ରବନ୍ଧ ପର୍ଯ୍ୟାୟଭୁକ୍ତ । ଏହି ପ୍ରବନ୍ଧ ଗୁଡ଼ିକରେ ପ୍ରାବନ୍ଧିକ ନିଜର ମନୋଭାବ ଓ କେତେକ ପଦାର୍ଥ ସମ୍ପର୍କୀୟ ଜ୍ଞାନର ପରିପ୍ରକାଶ ଘଟାଇଛନ୍ତି । ଉଦାହରଣ ସ୍ୱରୂପ ଅଧିବସାୟ ଓ ଜାତୀୟ ସାହିତ୍ୟକୁ ଆଲୋଚନା କରାଯାଇପାରେ ।

ଅଧିବସାୟ ପ୍ରବନ୍ଧରେ ମଧୁସୂଦନ ଅଧିବସାୟଦ୍ୱାରା କିପରି ଅସମ୍ଭବ ସମ୍ଭବ ହୁଏ, ତାହା ଉଦାହରଣ ମାଧ୍ୟମରେ ପ୍ରମାଣ କରିଛନ୍ତି । ଏହି ପ୍ରବନ୍ଧଟିର ଉଦ୍ଦେଶ୍ୟ ବାଳକ ବାଳିକାମାନଙ୍କୁ ଅଧିବସାୟୀ କରାଇବା । ଅତଏବ ଏହାର ଭାଷା ସରଳ ଓ ଭାବ ମଧ୍ୟ ସ୍ପଷ୍ଟ । କିନ୍ତୁ ଜାତୀୟ ସାହିତ୍ୟ ପ୍ରବନ୍ଧ ମଧୁପ୍ରତିଭାର ଏକ ବଳିଷ୍ଠ ସୃଷ୍ଟି । ଉକ୍ତ ପ୍ରବନ୍ଧରେ ଜାତୀୟ ବିକାଶ ସହିତ ସାହିତ୍ୟ କିପରି ଓତପ୍ରୋତଭାବେ ଜଡ଼ିତ, ପ୍ରାବନ୍ଧିକ ତାହା ଦର୍ଶାଇଛନ୍ତି । ପୃଥିବୀର ବିଭିନ୍ନ ସମାଜର ଇତିହାସ ସହ ସାହିତ୍ୟର ସାମଞ୍ଜସ୍ୟ ଆଣି ପ୍ରାବନ୍ଧିକ କହନ୍ତି, "ପ୍ରାଚୀନ ଆର୍ଯ୍ୟଜାତି, ପ୍ରାଚୀନ ଗ୍ରୀକ୍ ଓ ରୋମକ୍ ଜାତି, ଆଧୁନିକ ଇଂଲଣ୍ଡୀୟ, ଫରାସୀ ଏବଂ ଜର୍ମାନି ଜାତିମାନଙ୍କର ସାହିତ୍ୟ ଉଲ୍ଲିଖିତ ମତର ଅନୁକୂଳ ପ୍ରମାଣ ସ୍ୱରୂପ । ଯେଉଁ ଜାତିମାନେ ଅର୍ଦ୍ଧ ସଭ୍ୟ, ସେମାନଙ୍କର ସାହିତ୍ୟ ଅତ୍ୟନ୍ତ ଅପରିପକ୍ୱ ଏବଂ ନିକୃଷ୍ଟ, ପୁଣି ଯେଉଁ ଜାତିମାନେ ଘୋର ଅସଭ୍ୟ ଅବସ୍ଥାରେ ଅଛନ୍ତି, ସେମାନେ ସମ୍ପୂର୍ଣ୍ଣ ରୂପେ ସାହିତ୍ୟ ବିବର୍ଜିତ ।" ପ୍ରବନ୍ଧର ଭାବକୁ ସୁଚାରୁରୂପେ ପ୍ରକାଶ କରିବାପାଇଁ ସେ ବଳିଷ୍ଠ ଶବ୍ଦ ସଂଯୋଜନା ସାହାଯ୍ୟରେ ମାର୍ଜିତ ଶୈଳୀର ବ୍ୟବହାର ନେଇଛନ୍ତି । ଏହି ପ୍ରବନ୍ଧଟିରେ ମାତୃଭାଷା ପ୍ରତି ଏକ ଉତ୍ତମ ମନୋଭାବ ସୃଷ୍ଟି କରିବାପାଇଁ ପ୍ରାବନ୍ଧିକ ପାଠକମାନଙ୍କ ଆଗରେ ରାସ୍ତା ଖୋଲି ଧରିଛନ୍ତି । ସାହିତ୍ୟର ଉନ୍ନତି ସମାଜର ଉନ୍ନତି ସହ ଓତପ୍ରୋତଭାବେ ଜଡ଼ିତ ଥିବାରୁ ସାହିତ୍ୟର ଉନ୍ନତି କାମନା କରିଛନ୍ତି । ଏହା ମଧୁମାନସର ଏକ ସାର୍ଥକ ଆଲୋଚନାମୂଳକ ପ୍ରବନ୍ଧ ।

ପରିଶ୍ରମର ସୁଖ, ପୁରୁଷଭାବ ଓ ନାରୀଭାବ, ବ୍ରହ୍ମାଣ୍ଡ କି ପ୍ରକାଣ୍ଡ (ପ୍ରବନ୍ଧମାଳା), ଆତ୍ମପ୍ରତ୍ୟୟ (ଉତ୍କଳ ସାହିତ୍ୟ ୧ମ ଭାଗ ୮୯୭ ସଂଖ୍ୟା) ପ୍ରବନ୍ଧଗୁଡ଼ିକ ଭାବନାମୂଳକ ପ୍ରବନ୍ଧ ପର୍ଯ୍ୟାୟଭୁକ୍ତ । ଏହି ପ୍ରବନ୍ଧଗୁଡ଼ିକରେ

କେତେକ ନିର୍ଦ୍ଦିଷ୍ଟ ବିଷୟ ଉପରେ ପ୍ରାବନ୍ଧିକଙ୍କ ଭାବନାଭଙ୍ଗୀର ଏକ ମନୋହର ଚିତ୍ରବିନ୍ୟାସ ହୋଇଛି । ପୁରୁଷଭାବ ଓ ନାରୀଭାବ ପ୍ରବନ୍ଧରେ ମାନବୀୟ ହୃଦୟର ପରିପ୍ରକାଶକୁ ଦ୍ୱିଧା ବିଭକ୍ତ କରିଛନ୍ତି ।

ଜୀବଜନ୍ତୁ, ପାରାବତ (ସାହିତ୍ୟ କୁସୁମ), ଉଲ୍‌କାପିଣ୍ଡ, ବାନର (ସାହିତ୍ୟ ପ୍ରସଙ୍ଗ), ଆଗ୍ନେୟଗିରି ପ୍ରଭୃତି ତଥ୍ୟ ପରିବେଷଣମୂଳକ ପ୍ରବନ୍ଧ ଅନ୍ତର୍ଭୁକ୍ତ । ଏହି ପ୍ରବନ୍ଧଗୁଡ଼ିକର ଉଦ୍ଦେଶ୍ୟ ତଥ୍ୟ ପରିବେଷଣ ମାଧ୍ୟମରେ ଶିକ୍ଷାଦାନ କରି ଜ୍ଞାନ ବୃଦ୍ଧି କରାଇବାରେ । ଅତଏବ କଳାକୁଶଳତା ଏଠାରେ ପୂର୍ଣ୍ଣମାତ୍ରାରେ ରକ୍ଷିତ ହୋଇପାରି ନାହିଁ ।

ଆଗ୍ନେୟଗିରି ଏକ ବହୁ ଆଲୋଚିତ ପ୍ରବନ୍ଧ । ଏହି ପ୍ରବନ୍ଧରେ ମଧୁସୂଦନ ଆଗ୍ନେୟଗିରି ସମ୍ପର୍କରେ ଏକ ଧାରଣା ଦେଇଛନ୍ତି । ଫଟୋଗ୍ରାଫିକ୍ ଚିତ୍ର ସାଙ୍ଗକୁ ଭାଷାବୈଚିତ୍ର୍ୟ ଆଗ୍ନେୟଗିରିର ପରିବେଶକୁ ରୁଦ୍ରସୁନ୍ଦର କରିଦେଇଛି ।

କାଗଜ, ଓଡ଼ିଶାର ପ୍ରାଚୀନକୀର୍ତ୍ତି (ସାହିତ୍ୟ କୁସୁମ), ଲିସ୍‌ବନ୍ ଭୂମିକମ୍ପ (ସାହିତ୍ୟ ପ୍ରସଙ୍ଗ) ପ୍ରବନ୍ଧଗୁଡ଼ିକ ସମ୍ବାଦମୂଳକ ପ୍ରବନ୍ଧ ନାମରେ ପରିଚିତ । ଅତୀତରେ ଘଟି ଯାଇଥିବା ଘଟଣା ବା କୌଣସି ପଦାର୍ଥର ସାମ୍ବାଦିକ ଶୈଳୀରେ ଉପସ୍ଥାପିତ ହୋଇଥିବା ବର୍ଣ୍ଣନାତ୍ମକ ପ୍ରକାଶ ସମ୍ବାଦମୂଳକ ପ୍ରବନ୍ଧ ନାମରେ ଅଭିହିତ ହୁଏ । କାଗଜ ପ୍ରବନ୍ଧରେ କାଗଜର ସୃଷ୍ଟି ସମ୍ପର୍କୀୟ ସମ୍ବାଦ ପରିବେଷିତ ହୋଇଛି । ସେହିପରି ଓଡ଼ିଶାର ପ୍ରାଚୀନ କୀର୍ତ୍ତି ଓ ଲିସ୍‌ବନ୍ ଭୂମିକମ୍ପ କେତେକ ସମ୍ବାଦଧର୍ମୀ ତଥ୍ୟକୁ ନେଇ ଗଢ଼ିଉଠିଛି । ଲିସ୍‌ବନ୍‌ରେ ଅତୀତରେ ଘଟି ଯାଇଥିବା ଲୋମହର୍ଷଣକାରୀ ଭୂମିକମ୍ପର ଚିତ୍ର ଲିସ୍‌ବନ୍ ଭୂମିକମ୍ପ ପ୍ରବନ୍ଧର ଆଧାର । ଏହି ପ୍ରବନ୍ଧଟି ଜଣେ ଭୁକ୍ତଭୋଗୀର ବର୍ଣ୍ଣନାନୁଯାୟୀ ହୋଇଥିବାରୁ ଏହାର ପରିବେଷଣ ଶୈଳୀ ବେଶ୍ ରୁଚିମନ୍ତ ।

ଶିକ୍ଷାର ପ୍ରତିଫଳନ ଘଟିଥାଏ ପ୍ରାବନ୍ଧିକର ପ୍ରବନ୍ଧରେ, ତାର ଦୃଷ୍ଟିକୋଣ ବିଗ୍ରହମନ୍ତ ହୋଇଥାଏ ପ୍ରବନ୍ଧ ମୁକୁରରେ ଏବଂ ଏହାକୁ ବହନ କରିନିଏ ପ୍ରାବନ୍ଧିକର ଶୈଳୀ । ଅତଏବ ମଧୁବାବୁଙ୍କ ପ୍ରବନ୍ଧର ମୂଲ୍ୟାୟନ ପାଇଁ ତାଙ୍କର ଚରିତ୍ର, ଶିକ୍ଷା, ଆଦର୍ଶ, ରୁଚିକୁ ସତର୍କ ଭାବେ ଜାଣିବା

ଆବଶ୍ୟକ । ମଧୁସୂଦନ ଇଂରେଜ ସାହିତ୍ୟିକମାନଙ୍କ ମଧ୍ୟରୁ ମାର୍ଟିନିଓ, ରସ୍କିନ୍, ଇମରସନ, ସ୍ମେନ୍ସର, ଭିକ୍ଟରହ୍ୟୁଗୋ, ମାଥ୍ୟୁ ଆର୍ନୋଲଡ଼, ଆରମଷ୍ଟ୍ରଙ୍ଗ୍, ଟେନିସନ୍, ଓ୍ୱାର୍ଡସ୍ୱାର୍ଥ, ଗେଟେ, ସେକ୍ସପିୟର, ସେଲି ପ୍ରଭୃତିଙ୍କ ସାହିତ୍ୟ କୃତି ପାଠ କରିଥିଲେ । ସେହିପରି ସେ ଭବଭୂତିଙ୍କ 'ଉତ୍ତର-ରାମଚରିତ,' 'ମାଳତୀ ମାଧବ,' କାଳିଦାସଙ୍କ 'କୁମାର ସମ୍ଭବମ୍,' 'ରଘୁବଂଶମ୍', 'ଅଭିଜ୍ଞାନମ୍ ଶକୁନ୍ତଳଂ' ଏବଂ ବାଲ୍ମୀକିରାମାୟଣ, ଶ୍ରୀମଦ୍‌ଭାଗବତ୍ ଗୀତା, ବେଦାନ୍ତ ଦର୍ଶନ ପ୍ରଭୃତି ଅଧ୍ୟୟନ କରିଥିଲେ । ମଧୁସୂଦନ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ମାଇକେଲ୍ ମଧୁସୂଦନ ଦତ୍ତ, ଭୁଦେବ ମୁଖୋପାଧ୍ୟାୟ, ହେମଚନ୍ଦ୍ର ସରକାର, ନବୀନ୍ ଚନ୍ଦ୍ର, ବଙ୍କିମ୍ ଚନ୍ଦ୍ର, ରଙ୍ଗଲାଲ୍ ବାନାର୍ଜି, ରବୀନ୍ଦ୍ରନାଥ ଠାକୁର, କାଳୀପ୍ରସନ୍ନ ସିଂହ ପ୍ରଭୃତି ବଙ୍ଗୀୟ ସାହିତ୍ୟିକଙ୍କ ସାହିତ୍ୟ ପାଠ କରିଥିଲେ । ଏତଦ୍‌ଭିନ୍ନ ସାରଳା ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଓ ବଳରାମ ଦାସଙ୍କ ରାମାୟଣ ପାଠ କରିବା ସଙ୍ଗେ ସଙ୍ଗେ ମହାରାଷ୍ଟ୍ରୀ କବି ତୁକାରାମଙ୍କ ଉପଦେଶାବଳୀ ପାଠ କରିଥିଲେ । ଏ ସବୁର ପ୍ରଭାବ ତାଙ୍କ ପ୍ରବନ୍ଧଗୁଡ଼ିକରେ ପରିଲକ୍ଷିତ ହୁଏ ।

ମଧୁସୂଦନ ଥିଲେ ବ୍ରାହ୍ମଧର୍ମାବଲମ୍ବୀ । ତାଙ୍କର ଦୃଷ୍ଟିରେ ଜୀବନ ବ୍ୟର୍ଥ ନୁହେଁ । ତାହା ସତ୍ୟ ଶିବ ସୁନ୍ଦରର ଲୀଳାଭୂମି, ଏକ ମହତ୍ ଅନନ୍ତ ଉଦ୍ଦେଶ୍ୟର ବାହନ ।

ଏହି ମୃତ୍ୟୁମୟ ଜଗତରେ ଅମୃତତ୍ୱ ଲାଭ କରିବା ଲାଗି ମଣିଷ ନିଜକୁ ପ୍ରସ୍ତୁତ କରିପାରେ । ସେଥିପାଇଁ ତ୍ୟାଗ ଓ ସାଧନା ଲୋଡ଼ା । ସାଧକ ତୃଣଠାରୁ ଅଧିକ ନମ୍ର, ଅବନତ ହେବ । ବୃକ୍ଷପରି ସର୍ବ ସହିଷ୍ଣୁ ହେବ । ଆପେ ମାନୀ ହୋଇ ଅପରକୁ ମାନଦେବା ଲାଗି ମନରୁ ସମସ୍ତ ଅହଙ୍କାର ଦୂର କରିବ । ଏ ସବୁର ସେ ଥିଲେ ଜଣେ ମୂର୍ତ୍ତିମନ୍ତ ବିଗ୍ରହ । ଅତଏବ ତାଙ୍କ ବ୍ୟକ୍ତିତ୍ୱର ଛାପ ପ୍ରତ୍ୟେକଟି ଲେଖାରେ ସ୍ପଷ୍ଟ ।

ମଧୁସୂଦନ ପ୍ରବନ୍ଧ ଭିତରେ ସମୟେ ସମୟେ ପ୍ରାବନ୍ଧିକର ରୂପଟିକୁ ହଜାଇଦେଇ ଶିକ୍ଷକ ରୂପେ ବାହାରି ଆସିଛନ୍ତି । ତାଙ୍କର ଅଧ୍ୟବସାୟ ମାର୍ଜିତ

ଚିନ୍ତାଧାରା ସମାଜକୁ ଗଢ଼ିତୋଳିବାର ପ୍ରଚେଷ୍ଟା ପ୍ରତିଟି ପ୍ରବନ୍ଧରେ ଅନୁରଣିତ ହୋଇଛି । ବ୍ୟକ୍ତିବାଦକୁ ସେ ସମାଜ ଭିତରେ ହଜାଇ ଦେଇଛନ୍ତି । ତେଣୁ ତାଙ୍କର ପ୍ରତିଟି ପ୍ରବନ୍ଧ ବ୍ୟକ୍ତିନିଷ୍ଠ ନ ହୋଇ ବସ୍ତୁନିଷ୍ଠ ହୋଇଉଠିଛି ।

ପ୍ରାବନ୍ଧିକ ହିସାବରେ ମଧୁସୂଦନ ଓଡ଼ିଆ ସାହିତ୍ୟ ଆକାଶରେ ଚିରଭାସ୍ୱର । ଗୁଣାତ୍ମକ, ପରିମାଣାତ୍ମକ ବିଚାର କଲେ ମଧୁସୂଦନ ହେଉଛନ୍ତି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଜନକ । ଭାଷା, ଭାବ, ବର୍ଣ୍ଣନାଶୈଳୀ, ଉପସ୍ଥାପନା କୌଶଳ, ପରିବେଷଣ ପରିପାଟୀ, ବିଷୟ ନିର୍ବାଚନର ଅଭିନବ ପ୍ରୟୋଗ ଓଡ଼ିଆ ଭାଷାକୁ ସମୁନ୍ନତ କରିବା ସଙ୍ଗେ ସଙ୍ଗେ ପ୍ରବନ୍ଧ ସାହିତ୍ୟର ଗୁଣାତ୍ମକ ମାନକୁ ବହୁଗୁଣିତ କରିଛି । ଉପରୋକ୍ତ ଆଲୋଚନାର ସମୀକରଣ ପୂର୍ବକ ସମାଲୋଚନାର ଉଦାରତା ନେଇ କହିଲେ ପ୍ରାବନ୍ଧିକ ମଧୁସୂଦନ ହେଉଛନ୍ତି ପ୍ରବନ୍ଧ ସାହିତ୍ୟର ଆଦିଯୁଗର ଜଣେ ସାର୍ଥକ ବିନ୍ଧାଣି । ଆଜି ସେହି ମୂଳଦୁଆ ଉପରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟ ପ୍ରତିଷ୍ଠିତ ହୋଇ ମଧୁମାନସୀୟ ପ୍ରବନ୍ଧଧାରାର ମହିମା ପ୍ରକାଶ କରୁଛି ମାତ୍ର ।

□□□

# ଗାଳ୍ପିକ ମଧୁସୂଦନ

କୁମାରୀ କବିତା ଖଣ୍ଟାଇ

ତୃତୀୟ ବର୍ଷ କଳା (ଓଡ଼ିଆ ପ୍ରଜ୍ଞାନ)

ମାନବ ହୃଦୟର ଏକ ଆବେଗମୟ ମୁହୂର୍ତ୍ତର ପରିପ୍ରକାଶ ସଙ୍ଗୀତ ହିଁ ସାହିତ୍ୟର ଆଦିମ ରୂପ । ବେଦନା ସଞ୍ଜାତ ଜୀବନ ନିର୍ବାହ ଏହି ଭାବପ୍ରବଣତାକୁ ଅଧିକ ପ୍ରଖର କରି ପରିଣତ କରିଛି ସଙ୍ଗୀତରେ । ସେଦିନ ଅରଣ୍ୟାନୀର କୋମଳତାକୁ ଉପହାସିତ କରି ବ୍ୟାଧ ଶରାଘାତ ମୁକ୍ତ ବ୍ୟଥିତ କ୍ରୌଞ୍ଚର ଅନ୍ତିମ ପରିଣତି ଅନୁଧ୍ୟାନ କରି ଶୋକାକୁଳ କଣ୍ଠରେ ଆଦିକବି ଗାଇ ଉଠିଥିଲେ ସୃଷ୍ଟିର ପ୍ରଥମ ଶ୍ଳୋକ—

"ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚ ମିଥୁନାଦେକ ମବଧୀଃ କାମ ମୋହିତମ୍ ।"

ଏହି ସଙ୍ଗୀତର ପରବର୍ତ୍ତୀ ପର୍ଯ୍ୟାୟ ହିଁ କାହାଣୀ । ସଙ୍ଗୀତ ଅପେକ୍ଷା ମଣିଷ ମନର ଭାବ ଅଧିକ ଭାବରେ କାହାଣୀ ମାଧ୍ୟମରେ ପ୍ରକାଶିତ ହୋଇଥାଏ । ସାହିତ୍ୟର ଚିରନ୍ତନ ଲକ୍ଷ୍ୟ ସମାଜକୁ ଦିଗ୍‌ଦର୍ଶନ ଦେବା ଓ ଆନନ୍ଦ ସୃଷ୍ଟି କରିବା କାହାଣୀର ଅନ୍ୟତମ ଉଦ୍ଦେଶ୍ୟ ।

ଗପଟିଏ କୁହ ଏକ ବହୁ ପ୍ରଚଳିତ ପ୍ରଶ୍ନ । ପ୍ରସଙ୍ଗ କ୍ରମେ ଇଉରୋପୀୟ କାହାଣୀ ସାହିତ୍ୟର ପ୍ରଥମ ପର୍ବ ବିଷୟରେ ଆଲୋଚନା କରାଯାଇପାରେ । ଆରବ୍ୟ କାହାଣୀ ହିଁ ପଶ୍ଚିମୀ କାହାଣୀ ସାହିତ୍ୟର ଉତ୍ସ । ନାରୀ ଜଗତ ପ୍ରତି ବିଶ୍ୱାସ ହରାଇ ଆରବ ସମ୍ରାଟ୍ ବାସର-ନାୟିକାକୁ ହତ୍ୟା କରୁଥିଲେ । ମାତ୍ର ମନ୍ତ୍ରୀକନ୍ୟା ସାହାରିଅର ଗଳ୍ପକୁ ମାଧ୍ୟମ ରୂପେ ଧରିରଖି ଏକହଜାର ଏକ ରାତ୍ରୀ ସମ୍ରାଟଙ୍କଠାରୁ ନିଜକୁ ବଞ୍ଚାଇ ରଖିଥିଲେ । ଏହି ହଜାର ଏକ ରାତ୍ରୀର

କାହାଣୀ ହିଁ ଆରବ୍ୟ କାହାଣୀ ନାମରେ ପରିଚିତ । ବାଇବେଲ୍‌ର ସଙ୍କୋଳିତ କାହାଣୀ ମଧ୍ୟ ଏହି ପରଂପରାର ଅନ୍ୟ ଏକ ସ୍ୱତନ୍ତ୍ର ଉଚ୍ଛ୍ୱାସ । ଐତିହାସିକ ଦୃଷ୍ଟିରୁ ଏ ସବୁର ଅଭ୍ୟୁଦୟ ଭାରତୀୟ କାହାଣୀ ସାହିତ୍ୟର ଆନୁମାନିକ ହଜାର ବର୍ଷ ପରେ । ଅତଏବ ବିଶ୍ୱସାହିତ୍ୟକୁ ଭାରତୀୟ ସାହିତ୍ୟର ଦାନ ଅତୁଳନୀୟ । ସମାଲୋଚକମାନେ ଉପନିଷଦ, ବେଦ, ଜାତକ କାହାଣୀ ଓ ପୁରାଣ ପ୍ରଭୃତିର କାହାଣୀ ଭାବେ ବିଶ୍ୱକାହାଣୀ ସାହିତ୍ୟ ଉପରେ ପ୍ରଭାବ ପକାଇଥିବାର ମନ୍ତବ୍ୟ ଦିଅନ୍ତି । ଏହି ମର୍ମରେ ଉଇଣ୍ଟର-ନିଜ୍ ତାଙ୍କର 'A History of Indian Literature' ଗ୍ରନ୍ଥରେ କହନ୍ତି, "It is most wonderful that the Indian narrative material has passed from nation to nation in such a way that we find in allmost all the countries of Europe and Asia and even among those of Africa, stories and tales of which the original home is India." ଏହି ମନ୍ତବ୍ୟରୁ ଭାରତୀୟ କାହାଣୀ ସାହିତ୍ୟର ପରମ୍ପରା ଅନୁମାନ କରାଯାଇପାରେ । ଓଡ଼ିଆ ସାହିତ୍ୟରେ 'ଚତୁର ବିନୋଦ', 'ବତିଶ ସିଂହାସନ' ପ୍ରଭୃତି ଏହି ଚିନ୍ତାଧାରାର ଅନ୍ୟତମ ଅଭିବ୍ୟକ୍ତି ।

ଅବଶ୍ୟ ଆଧୁନିକ ଗଳ୍ପ କହିଲେ ଆମେ ଯାହା ବୁଝୁ, ତାହା କାହାଣୀ ସାହିତ୍ୟରେ ବିଚ୍ଛୁରିତ, ମାତ୍ର ଗଳ୍ପ ସୃଷ୍ଟିର ମୂଳଭିତ୍ତିରୂପେ କାହାଣୀର ସ୍ୱୀକୃତି ଅନସ୍ୱୀକାର୍ଯ୍ୟ । ବିଶ୍ୱସାହିତ୍ୟରେ ଗଳ୍ପ ସାହିତ୍ୟର ଆଙ୍ଗିକ ଓ ଆତ୍ମିକରେ ସଂଗଠିତ ପରିବର୍ତ୍ତନ ଆଧୁନିକ ପ୍ରାନ୍ତୀୟ ଭାରତୀୟ ସାହିତ୍ୟ ଗୁଡ଼ିକରେ ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରତିବିମ୍ବିତ ହେଲି ଓ ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର ତ୍ରୟୀ ରାଧା, ମଧୁ ଓ ସେନାପତି ପ୍ରଥମେ ଏହି ବିଭାଗଟିକୁ ଓଡ଼ିଆ ସାହିତ୍ୟରେ ସ୍ଥାନ ଦେଲେ । ଯଦିଓ ଗଳ୍ପ ସାହିତ୍ୟର ଜନକରୂପେ ଫକୀରମୋହନଙ୍କୁ ସ୍ୱୀକୃତି ଦିଆଯାଇଛି, ତଥାପି ଗଳ୍ପ ସାହିତ୍ୟର ବିକାଶ

ଢଙ୍ଗରେ ରାଧାନାଥ ଓ ମଧୁସୂଦନଙ୍କ ପ୍ରାଥମିକ ପ୍ରଚେଷ୍ଟାକୁ ଏଡ଼େଇ ଦିଆ-ଯାଇନପାରେ ।

ଗାଳ୍ପିକ ମଧୁସୂଦନଙ୍କ ସୃଷ୍ଟି ପ୍ରତିଭାର ବିଶ୍ଳେଷଣ ପୂର୍ବରୁ ଏହାର ପୃଷ୍ଠ-ଭୂମି ସମ୍ପର୍କରେ ସାମାନ୍ୟ ଆଲୋକପାତ କରାଯାଇପାରେ । ୧୮୦୩ ମସିହାରେ ଇଂରେଜମାନଙ୍କର ଓଡ଼ିଶା ଅଧିକାରଠାରୁ ୧୯୦୩ ମସିହା ଉତ୍କଳ ସମ୍ମିଳନୀ ପର୍ଯ୍ୟନ୍ତ ସମୟସୀମା ମଧ୍ୟରେ ଓଡ଼ିଶାର ସାଂସ୍କୃତିକ, ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ଆଧ୍ୟାତ୍ମିକ ସ୍ତରରେ ବିପୁଳ ପରିବର୍ତ୍ତନ ସଂଗଠିତ ହୋଇଥିଲା । ଇଂରେଜ ଅଧିକାର ସାଙ୍ଗକୁ ଇଂରାଜୀ ଶିକ୍ଷାର ପ୍ରଚଳନ, ଭାଷାବିଲୋପ ଆନ୍ଦୋଳନ, ନଅଙ୍କ ଦୁର୍ଭିକ୍ଷ, ପତ୍ରପତ୍ରିକା ଆନ୍ଦୋଳନ ଓ ଚିନ୍ତାଧାରାର ନବୀକରଣ ଓଡ଼ିଶାବାସୀଙ୍କ ମନରେ ରାସ୍ତା ଖୋଲିଦେଲା । ଓଡ଼ିଆ ଭାଷାକୁ ବଞ୍ଚାଇବାପାଇଁ ପାଠ୍ୟପୁସ୍ତକ ଆନ୍ଦୋଳନ ଏକ ନୂଆ ମୋଡ଼ ନେଲାବେଳକୁ ସେ ଯୁଗର ଚିନ୍ତାଶୀଳ ବ୍ୟକ୍ତିମାନେ ମୌଳିକ ସାହିତ୍ୟ ସୃଷ୍ଟିକରି ଓଡ଼ିଆ ଭାଷାକୁ ସମୃଦ୍ଧ କରିବାରେ ସାହାଯ୍ୟ କଲେ । ମଧୁସୂଦନ ଏହି ସ୍ରୋତର ଅନ୍ୟତମ ପରିପ୍ରକାଶ । ମଧୁସୂଦନ ମୁଖ୍ୟତଃ କବି; ମାତ୍ର ତାଙ୍କର ବହୁବିଧ ପ୍ରତିଭା, ପ୍ରବନ୍ଧ, ଗଳ୍ପ, ଅନୁବାଦ, ବ୍ୟଙ୍ଗରଚନା, ଜୀବନୀ ଓ କାହାଣୀ ସୃଷ୍ଟିରେ ଅଧିକ ବ୍ୟାପ୍ତ । 'ପ୍ରଣୟର ଅଦ୍ଭୁତ ପରିଣାମ' ଏକ ଅନୂଦିତ ବଡ଼ ଗଳ୍ପ । ଏହା ଜଣେ ସିସିଲିୟାନ୍ ସାହିତ୍ୟିକଙ୍କ ଗଳ୍ପର ଅନୁବାଦ ହୋଇଥିଲେ ମଧ୍ୟ ମଧୁସୂଦନ ଏଥିରେ ନିଜର ମୌଳିକତା ଫୁଟାଇ ପାରିଛନ୍ତି ।

ଗଳ୍ପଟିରେ ପୁରୁଷ ଚରିତ୍ର ହେଉଛନ୍ତି ସିସିଲ୍ ସମ୍ରାଟ ରଜର । ତାଙ୍କ ଭାଇ ମେନଫ୍ରିଂ, ସିଫ୍ରେଡ଼, ହେନେରି, ପିଡ୍ରୋ—ସ୍ତ୍ରୀ ଚରିତ୍ର କନଷ୍ଟାନ୍‌ସିଆ, ଡିଏନା, ମାଟିଲଡ଼ା । ସମ୍ରାଟ ରଜର, ମେନ୍‌ଫ୍ରି, କନ୍‌ଷ୍ଟାନ୍‌ସିଆ ଓ ଡିଏନା ଚରିତ୍ର ଗୁଡ଼ିକ ମୁଖ୍ୟତଃ ଗଳ୍ପର ପୃଷ୍ଠଭୂମିରେ ଅବସ୍ଥାପିତ ହୋଇଛନ୍ତି । ଗଳ୍ପର ମୁଖ୍ୟ ନାୟକ ସିଫ୍ରେଡ଼ ଏବଂ ସହକାରୀ ଚରିତ୍ର ହେନେରୀ, ମାଟିଲଡା, ପିଡ୍ରୋ । ଚରିତ୍ର ଗୁଡ଼ିକର ମାନସିକ ସ୍ଥିତି, ଭାବାବେଗ

ଗଳ୍ପଟିରେ ବେଶ୍ ସ୍ପଷ୍ଟ । ଏହାର ଆଲୋଚନା ପ୍ରସଙ୍ଗରେ ଗଳ୍ପଟିକୁ ଉଲ୍ଲେଖ କରାଯାଇ ପାରେ ।

ସମସ୍ୟାନୁକ୍ରମେ କନେଷ୍ଟ ମେନ୍‌ଫ୍ରି ବିଦ୍ରୋହ କରି ସମ୍ରାଟ ରିଚାର୍ଡଙ୍କ ଦ୍ୱାରା ବନ୍ଦୀ ହୁଅନ୍ତି ଏବଂ କନେଷ୍ଟା କନ୍‌ଷ୍ଟାନ୍‌ସିଆ ତାଙ୍କୁ ବହୁ ଯାତନା ପ୍ରଦାନ କରନ୍ତି । ମାତ୍ର ମେନ୍‌ଫ୍ରିଙ୍କ ଏକମାତ୍ର ସନ୍ତାନ ରାଜକ୍ରୋଧରୁ ମନ୍ତ୍ରୀ ସିଫ୍ରେଡ଼ଙ୍କଦ୍ୱାରା ରାଜଭକ୍ତ ରୂପେ ବର୍ଦ୍ଧିତ ହୋଇ ଏକମାତ୍ର ସିଂହାସନାଧିକାରୀ ରୂପେ ପରିଚୟିତ ହୁଅନ୍ତି । ତାଙ୍କର ପିତୃବ୍ୟଙ୍କ ପ୍ରତି ମମତା ଜନ୍ମ ହୋଇଥାଏ । ଏକତ୍ର ସିଫ୍ରେଡ଼ଙ୍କ କନ୍ୟା ମାଟିଲ୍‌ଡ଼ାଙ୍କ ସହ ବର୍ଦ୍ଧିତ ହୋଇଥିବାରୁ ହେନରି କ୍ରମଶଃ ମାଟିଲ୍‌ଡାଙ୍କ ନିକଟକୁ ଚାଲି ଆସିଛନ୍ତି । ବର୍ତ୍ତମାନ ଉଭୟେ ଉଭୟଙ୍କର ପ୍ରେମିକ ପ୍ରେମିକା । ଏହି ସମୟରେ ମହାରାଜାଙ୍କର ମୃତ୍ୟୁର ଖବର ଆସେ । ହେନେରି ରାଜପଦ ଲାଭକରନ୍ତି ମାତ୍ର ସଂଘର୍ଷ ଆରମ୍ଭ ହୁଏ । ଏହି ସଂଘର୍ଷ ବାହ୍ୟିକ ନୁହେଁ ମାନସିକ । ମହାରାଜା ଆଜ୍ଞାପତ୍ରରେ କନ୍‌ଷ୍ଟାନ୍‌ସିଆଙ୍କ କନ୍ୟା ଭିଏନାଙ୍କୁ ହେନେରୀ ବିବାହ ନ କଲେ ରାଜ୍ୟପ୍ରାପ୍ତି ହେବେନାହିଁ ବୋଲି ଉଲ୍ଲେଖ କରିଛନ୍ତି । ହେନେରି ଏହି ମାନସିକ ସ୍ଥିତାବସ୍ଥାକୁ ସହି ନେଇ ମାଟିଲ୍‌ଡ଼ାଙ୍କୁ ବିବାହ କରିବା ପାଇଁ ଏକ କୌଶଳ ଅବଲମ୍ବନ କରି ପ୍ରତ୍ୟକ୍ଷରେ ଭିଏନାଙ୍କୁ ବିବାହ କରିବାକଥା ସ୍ୱୀକାର କଲେ; ମାତ୍ର ଏହାର ଭୁଲ ପରିଣତି ସ୍ୱରୂପ ମାଟିଲ୍‌ଡ଼ାର ବିବାହ ପିଟ୍ରୋଙ୍କ ସହ ଅନୁଷ୍ଠିତ ହୋଇଗଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସେମାନଙ୍କ ଜୀବନ ମଧ୍ୟ ଶଙ୍କାକୁଳ ପରିବେଶ ମଧ୍ୟରେ ଗତିଗଲା । ଅପର ପକ୍ଷରେ ହେନେରି ସତ୍ୟକୁ ମାଟିଲ୍‌ଡାଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ବାରମ୍ବାର ଚେଷ୍ଟାକରି ବିଫଳ ହେବାରୁ ବାଧ୍ୟ ହୋଇ ପିଟ୍ରୋଙ୍କୁ ବନ୍ଦୀ କଲେ । ପିଟ୍ରୋ ବନ୍ଦୀରୁ ମୁକ୍ତହୋଇ ଦୁର୍ଗରେ ପ୍ରବେଶକରି ମାଟିଲ୍‌ଡ଼ା ସହ ହେନେରୀଙ୍କୁ ଦେଖିବାକୁ ପାଇଲେ । ଇତି ମଧ୍ୟରେ ହେନେରୀ ମାଟିଲ୍‌ଡ଼ାଙ୍କୁ ମନରୁ ଦୂର କରିଥିଲେ ମଧ୍ୟ ପିଟ୍ରୋଙ୍କର ଅବାଞ୍ଛିତ ଆଗମନ ପରିବେଶଟିକୁ ନୂଆ ମୋଡ଼ ଦେଲା । ପିଟ୍ରୋ ହେନେରୀଙ୍କ ଉପସ୍ଥିତିକୁ ସହି ନ ପାରି ଯୁଦ୍ଧ କରିବାକୁ ଆସି ନିଜେ ନିହତ ହେଲେ ଏବଂ ନିଜ ତରବାରୀ ସାହାଯ୍ୟରେ ମାଟିଲ୍‌ଡ଼ାଙ୍କୁ ହତ୍ୟା କଲେ ।

ଗଳ୍ପଟିର ଅନ୍ତିମ ପର୍ଯ୍ୟାୟରେ ମାର୍ଟିଲ୍ଡ଼ା ହେନେଷ୍ଟଙ୍କୁ ନିଜ ମନର ଦେବତାରୂପେ ସ୍ୱୀକାର କରି ମୃତ୍ୟୁ ବରଣ କରିଛନ୍ତି । ନିଜ ଭୁଲର ପ୍ରାୟଶ୍ଚିତ୍ତ ସ୍ୱରୂପ ମାର୍ଟିଲ୍‌ଡ଼ାଙ୍କ ପିତା ଇହଧାମ ପରିତ୍ୟାଗ କରିଛନ୍ତି । ଅପର ପକ୍ଷରେ ହେନେଷ୍ଟ ଜୀବନବ୍ୟାପୀ ଅବିବାହିତ ରହିଛନ୍ତି ।

ମୋଟାମୋଟି ଏହା ହେଉଛି 'ପ୍ରଣୟର ଅଦ୍ଭୁତ ପରିଣାମ' ଗଳ୍ପର ମର୍ମ । ମାତ୍ର ସିଫ୍ରେଡ଼ ଚରିତ୍ରର ବିଶେଷତ୍ୱ ହେଉଛି, ସେ ଯେପରି ପ୍ରଭୁଭକ୍ତ ସେପରି ସତ୍ୟବାଦୀ ଓ କୁଟନୀତିଜ୍ଞ ମଧ୍ୟ । ପ୍ରେମିକା ହିସାବରେ ମାର୍ଟିଲ୍‌ଡ଼ାଙ୍କ ମନୋଭାବ ଅତ୍ୟନ୍ତ ଭାବୋଦ୍ଦୀପକ । ତାର ମାନସିକ ଦନ୍ଦ୍ୱର ଗଳ୍ପରେ ଉତ୍ତମରୂପେ ଚିତ୍ରିତ ହୋଇଅଛି । ଆପଣା ପ୍ରେମିକର ଭାବୀ ରାଜପଦ ଆଶା କରି ନିଜର ଦୁର୍ଭାଗ୍ୟକୁ ସେ ଅନୁଭବ କରିପାରିଛନ୍ତି । ସିଡ୍ରୋଙ୍କ ସହ ବିବାହୋତ୍ତର କାଳରେ ମାର୍ଟିଲ୍‌ଡାଙ୍କର ମାନସିକ ଦ୍ୱନ୍ଦ୍ୱ ବେଶ୍ ସ୍ପଷ୍ଟ । ସିଡ୍ରୋଙ୍କୁ ସେ ଆପଣାର କରି ପାରିନାହାନ୍ତି, ଅପର ପକ୍ଷରେ ହେନେଷ୍ଟଙ୍କୁ ମଧ୍ୟ ସାକ୍ଷାତ୍ କରିବାର ଅବସର ଦେଇ ନାହାନ୍ତି । ଏହି କାରଣରୁ ହିଁ ହେନେଷ୍ଟ ବାଧ୍ୟ ହୋଇ ସିଡ୍ରୋଙ୍କୁ ବନ୍ଦୀ କରି ମାର୍ଟିଲ୍‌ଡ଼ାର ଭ୍ରମଧାରଣା ଦୂର କରିବା ପାଇଁ ଗୁପ୍ତ ମାର୍ଗରେ ଆସିଛନ୍ତି । ପ୍ରେମ ଅତ୍ୟନ୍ତ ଉଚ୍ଚକୋଟୀର ହୋଇ ମଧ୍ୟ ତାର ପରିଣାମ ଅତ୍ୟନ୍ତ ଦୁର୍ଭାଗ୍ୟପୂର୍ଣ୍ଣ ହୋଇଅଛି । ହେନେଷ୍ଟ ଜଣେ ଶ୍ରେଷ୍ଠ ପ୍ରେମିକ ରୂପେ ଚିତ୍ରିତ ହୋଇଛନ୍ତି । ସେ ରାଜପଦ ଅପେକ୍ଷା ନିଜ ପ୍ରେମକୁ ଉଚ୍ଚସ୍ଥାନ ଦେବାର ପ୍ରମାଣ ଅଲେଖା କାଗଜରେ ହସ୍ତାକ୍ଷର କରି ସିଫ୍ରେଡ଼ଙ୍କୁ ପ୍ରଦାନ କରିବାର ଅନୁମିତ ହୁଏ । ମାନବର ପ୍ରବୃତ୍ତି ଅନୁଯାୟୀ ସେ କୌଶଳ ପ୍ରୟୋଗ କରିବାର ଚେଷ୍ଟା କରିଥିଲେ ମଧ୍ୟ ସ୍ୱ ପ୍ରେମ ପ୍ରତି ଅବମାନନା କରିନାହାନ୍ତି ।

ସିଡ୍ରୋ ଜଣେ ରୂପମୁଗ୍ଧ ସ୍ୱାମୀ । ନିଜର ପତ୍ନୀକୁ ରାତ୍ରୀ କାଳରେ ହେନେଷ୍ଟଙ୍କ ଗହଣରେ ଦେଖି ସାଧାରଣ ସ୍ୱାମୀ ପରି ସେ କ୍ରୁଦ୍ଧ ହୋଇ ଉଠିଛନ୍ତି । ଅପର ପକ୍ଷରେ ତାଙ୍କର ଦୂରଦୃଷ୍ଟି ପ୍ରତିଶୋଧ ପରାୟଣ କରିଦେଇଛି । ଅତ୍ୟଧିକ କ୍ରୋଧବଶତଃ ପ୍ରତିଶୋଧ ନେବାକୁ ଯାଇ ନିଜେ ପ୍ରାଣଦାନ କରିବା ସଙ୍ଗେ ସଙ୍ଗେ ମାର୍ଟିଲ୍ଡ଼ାଙ୍କୁ ବଧ କରି ସିଏ ହିଁ ଗଳ୍ପର ଶେଷାଙ୍କ ପୂରଣ କରିଛନ୍ତି ।

ସିଫ୍ରେଡ଼ ହେଉଛନ୍ତି ଗଳ୍ପର କେନ୍ଦ୍ରବିନ୍ଦୁ । କାରଣ ସିଫ୍ରେଡ଼ଙ୍କ ବ୍ୟତିରେକେ ଗଳ୍ପର କଳ୍ପନା ଅସମ୍ଭବ । ସେ ହେଉଛନ୍ତି ମେନ୍‌ଫ୍ରିଙ୍କ ବିରୁଦ୍ଧରେ ମୁକ୍ତିଯୋଦ୍ଧାକାମୀ । ହେନେଷ୍ଟଙ୍କ ପାଳକ ଭାବେ ସେ ମଧ୍ୟ ରଜରଙ୍କୁ ସଦ୍‌ବୁଦ୍ଧି ଦେଇଛନ୍ତି । ସେ ହେଉଛନ୍ତି ମାଟିଲ୍‌ଡ଼ାଙ୍କ ପିତା, ପୁଣି ସେ ପ୍ରଭୁଭକ୍ତ ମନ୍ତ୍ରୀ ହେଉଛନ୍ତି ହେନେଷ୍ଟଙ୍କୁ ସିଂହାସନରେ ବସାଇବାର ଶ୍ରେଷ୍ଠ ଶନ୍ଧାଣି । ହେନେଷ୍ଟ ତାଙ୍କ କନ୍ୟାଙ୍କୁ ଭଲ ପାଆନ୍ତି । ଏ କଥା ଜାଣି ମଧ୍ୟ ହେନେଷ୍ଟ ଭଲ ପାଇଁ ତଏନାଙ୍କୁ ବିବାହ କରିବା ପାଇଁ ସେ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ ପିଡ୍ରୋଙ୍କସହ ନିଜ କନ୍ୟାର ବିବାହ ସମାପନ କରିଛନ୍ତି । ଗଳ୍ପର ପ୍ରତ୍ୟେକ ମୋଡ଼ରେ ରହିଛନ୍ତି ସିଫ୍ରେଡ଼ । ଅତଏବ୍ ସିଏ ହିଁ ହେଉଛନ୍ତି ଗଳ୍ପର କେନ୍ଦ୍ରବିନ୍ଦୁ । ପ୍ରତ୍ୟେକଙ୍କୁ ସେ ଭଲ ପାଇଛନ୍ତି । ମାତ୍ର ନିଜର ଭଲ ପାଇବା ହିଁ ଚରମ ପରିଣତି ଆଣିଛି ।

ଏକ ଅନୂଦିତ ଗଳ୍ପ ହୋଇଥିବାରୁ 'ପ୍ରଣୟର ଅଦ୍ଭୁତ ପରିଣାମ' ଗଳ୍ପଟିରେ ଗଳ୍ପର ଧର୍ମଗୁଡ଼ିକ ଏଠାରେ ବେଶ୍ ରକ୍ଷିତ ହୋଇଛି । ଡଃ ନଟବର ସାମନ୍ତରାୟଙ୍କ ଭାଷାରେ ଏହା ଏକ ଅନୂଦିତ ଗଳ୍ପ ହୋଇଥିବାରୁ କ୍ଷୁଦ୍ର ଗଳ୍ପ ସୁଲଭ ଚମତ୍କାରିତା ଘଟଣା ପ୍ରବାହ ଓ ଅନ୍ତର୍ଦ୍ୱନ୍ଦ୍ୱ ପ୍ରକାଶ ସ୍ପଷ୍ଟ ହୋଇ ଉଠିଛି ।

ତାଙ୍କର ଅନ୍ୟତମ ଗଳ୍ପ 'ହେମମାଳା' ହିଁ ମଧୁସୂଦନଙ୍କର ଅନ୍ୟତମ ସୃଷ୍ଟି । ଏହି ଗଳ୍ପର ଚରିତ୍ରଗୁଡ଼ିକ ହେଲେ ହେମମାଳା, ତାର ମା, ପୁରୁଷୋତ୍ତମ ଦେବ, ସନ୍ନ୍ୟାସୀ, ବିକ୍ରମ ଓ ବିକ୍ରମର ମାତା ପିତା । ଜୀବନୀ ଶୈଳୀରେ ଗଳ୍ପଟି ରଚିତ ହୋଇଅଛି । ନାୟକ ବିକ୍ରମ ନିଜ ଜୀବନ କାହାଣୀ ଉଦ୍‌ଘାଟିତ କରିବା ପ୍ରସଙ୍ଗରେ ରୂପସୀ ହେମମାଳାର ସନ୍ଦର୍ଶନଠାରୁ ତାର ମୃତ୍ୟୁପର୍ଯ୍ୟନ୍ତ ବର୍ଣ୍ଣନା କରିଛି । ପ୍ରସଙ୍ଗକ୍ରମେ ହେମମାଳା ସହ ପିଲାଦିନେ ବିକ୍ରମର ବନ୍ଧୁତା ଓ ସନ୍ନ୍ୟାସୀଙ୍କ ସେବାକୁ ମୁଗ୍ଧଇ ଦିଆଯାଇଛି । ଏହି ଗଳ୍ପରେ ଅତିସୁନ୍ଦର ଭାବେ ମଧୁସୂଦନ ଓଡ଼ିଶାର ଇତିହାସକୁ ସଂଯୋଜିତ କରିଛନ୍ତି । ବିକ୍ରମ ମୁହଁରେ କାଞ୍ଚି କଳିଙ୍ଗର ଯୁଦ୍ଧଚିତ୍ର ଅତ୍ୟନ୍ତ ସ୍ପଷ୍ଟ ହୋଇ-ଉଠିଛି । ବିକ୍ରମ ଗ୍ରାମ୍ୟ ସେନାଙ୍କର ସେନାପତିତ୍ୱ ନେଇ ଗଜପତି ସେନାରେ

ସମ୍ମିଳିତ ହୋଇଛି । ଅପରଯୀମ ଗଜପତିସେନା ରାତ୍ରି କାଳରେ କାଞ୍ଚି ନିକଟରେ ନିଶି ଯାପନ କରୁଥିବା ସମୟରେ କାଞ୍ଚି ସେନାର ପ୍ରଚଣ୍ଡ ଆକ୍ରମଣ ଗଜପତି ସେନାମାନଙ୍କୁ କ୍ଷତବିକ୍ଷତ କରିଦେଇଛି । ଏହି ପ୍ରଥମ ଯୁଦ୍ଧରେ ମରଣାନ୍ତକ ଆଘାତ ପାଇ ମଧ୍ୟ ବିକ୍ରମ ସନ୍ନ୍ୟାସ କର୍ତ୍ତୃକ ଜୀବନଲାଭ କରିଛନ୍ତି । ଏହା ପରେ ଗଜପତିଙ୍କ ଦ୍ୱିତୀୟବାର ଯୁଦ୍ଧଯାତ୍ରାରେ ବିକ୍ରମ ଯୋଗଦେଇ କାଞ୍ଚି ରାଜ୍ୟ ଜୟ କରିଛନ୍ତି । ବିଜୟୋନ୍ମତ୍ତ ଗଜପତି ସେନା ସହ ବିକ୍ରମ ପୁରୁଷୋତ୍ତମ ଯାତ୍ରା କରିଛନ୍ତି । ରାଜା ପୁରୁଷୋତ୍ତମ ଦେବଙ୍କ ବିବାହ କାର୍ଯ୍ୟ ସମାପନ ପରେ ବିକ୍ରମାଦି ରାଜସେନାନୀ ପୁରସ୍କୃତ ହୋଇଛନ୍ତି ।

ଅପର ପକ୍ଷରେ ବିକ୍ରମର ମୃତ୍ୟୁ ଖବର ଗ୍ରାମେ ଗ୍ରାମେ ବ୍ୟାପିଯାଇଛି । ବିକ୍ରମର ପିତାମାତା ଇହଧାମ ପରିତ୍ୟାଗ କରିଛନ୍ତି । ହେମମାଳାର ଅବସ୍ଥା ମରଣୋନ୍ମୁଖୀ । ଏହି ଅଭାବିତ ପରିବେଶ ମଧ୍ୟରେ ଉକ୍ତ ଗ୍ରାମରେ ସନ୍ନ୍ୟାସୀଙ୍କ ଆବିର୍ଭାବ ଘଟିଛି । ବିକ୍ରମ ଓ ହେମମାଳାର ଅନ୍ତିମ ମିଳନର ସୂତ୍ରଧରରୂପେ ସନ୍ନ୍ୟାସୀ ସ୍ୱକାର୍ଯ୍ୟ ସମ୍ପାଦନ କରିଛନ୍ତି । ଗଳ୍ପର ପରିଶେଷରେ ହେମମାଳାର ମୃତ୍ୟୁ ଓ ବିକ୍ରମର ସନ୍ନ୍ୟାସ ଗ୍ରହଣରେ ଚରମ ପରିଣତି ଆସିଛି ।

ଦେଖିବା କଥା ମଧୁସୂଦନ ଏହି ଗଳ୍ପଟିର କଙ୍କାଳ 'ପ୍ରଣୟର ଅଦ୍ଭୁତ ପରିଣାମ'ରୁ ହିଁ ଗ୍ରହଣ କରିଛନ୍ତି । ବିକ୍ରମ, ହେମମାଳା, ସନ୍ନ୍ୟାସୀ ଚରିତ୍ର ଯଥାକ୍ରମେ ହେନେରୀ, ମାଟିଲ୍ଡା ଓ ସିଫ୍ରେଡ଼ ଚରିତ୍ରକୁ ଅନୁକରଣ କରିଛି । ଗାଳ୍ପିକ ମଧୁସୂଦନ ଏଠାରେ କେବଳ ପରିବେଶ ଓ ସାମାଜିକ ବେଷ୍ଟନୀ ବଦଳାଇ ଦେଇଛନ୍ତି । ହେନେରୀ, ମାଟିଲ୍ଡା ପାଶ୍ଚାତ୍ୟ ଜଗତର ପ୍ରେମିକ ପ୍ରେମିକା ହୋଇଥିବାରୁ ମନୋଭାବର ଆଦାନପ୍ରଦାନ ସୁଷ୍ଠୁରୂପେ ସମ୍ପାଦନ କରୁଥିବାବେଳେ ବିକ୍ରମ ଓ ହେମମାଳା ବାଲ୍ୟକାଳରୁ ଏକାତ୍ର ରହିଥିଲେ ମଧ୍ୟ ପ୍ରାଚ୍ୟ ଚଳଣି ଅନୁଯାୟୀ କେବଳ ଚକ୍ଷୁପାତରେ ପ୍ରଣୟ ବିନିମୟ କରିଛନ୍ତି । ସିଫ୍ରେଡ଼ 'ପ୍ରଣୟର ଅଦ୍ଭୁତ ପରିଣାମ' ଗଳ୍ପର ଅଗ୍ରଗତି କରାଇଥିବା ପରି ସନ୍ନ୍ୟାସୀ ହେମମାଳା ଗଳ୍ପର ଅଗ୍ରଗତି କରାଇଛନ୍ତି । ସେହି ହିଁ ହେମମାଳା ଓ ବିକ୍ରମର ପିଲାଦିନ ବନ୍ଧୁତ୍ୱର ସୂତ୍ରଧର ! ସିଫ୍ରେଡ଼ ହେନେରୀଙ୍କୁ ରାଜକ୍ରୋଧରୁ ରକ୍ଷାକଲାପରି ଓ ରାଜ୍ୟପ୍ରାପ୍ତି ହାନିରୁ ରକ୍ଷା କଲାପରି ସନ୍ନ୍ୟାସୀ ଯୁଦ୍ଧରେ

ବନ୍ଧମକୁ ରକ୍ଷା କରିଛନ୍ତି ଏବଂ ତାର ବଞ୍ଚିଥିବା ଖବର ଗ୍ରାମକୁ ବହିଆଣିଛନ୍ତି । ସେ ପୁଣି ହେମମାଳା ଓ ବନ୍ଧମକୁ ହେମମାଳାର ଅନ୍ତିମ ସମୟରେ ଭେଟାଇଛନ୍ତି ଏବଂ ବନ୍ଧମକୁ ସନ୍ନ୍ୟାସ ପ୍ରଦାନ କରିଛନ୍ତି । ଦେଖିବା କଥା 'ପ୍ରେମର ଅଦ୍ଭୁତ ପରିଣାମ'ରେ ବାସ୍ତବକତା ସୃଷ୍ଟି ଉଠିଥିବା ସମୟରେ ଏଠାରେ ଗାଳ୍ପିକ ଜବରଦସ୍ତ ଚରିତ୍ର ସଞ୍ଚାଳନା କଲାପରି ମନେ ହେଉଛି; ମାତ୍ର ଏହା ଏକ ସାର୍ଥକ ସୃଷ୍ଟି ନ ହେଲେ ମଧ୍ୟ ମଧୁସୂଦନଙ୍କ କଥକ ପ୍ରତିଭାର ଅନ୍ତରାୟ ନୁହେଁ, ଅତି ଶାଳୀନ ଦୃଷ୍ଟିଭଙ୍ଗୀ ଓ ମାର୍ଜିତ ରୁଚିନେଇ ମଧୁସୂଦନ ଚରିତ୍ରଗୁଡ଼ିକୁ ଚଳଚ୍ଚଳ କରାଇଛନ୍ତି ।

ମୂଳତଃ ବିଚାର କଲେ ଏହି ଦୁଇଟି ହେଉଛି ଗାଳ୍ପିକଙ୍କର ରଚିତ ଗଳ୍ପ; ମାତ୍ର ଏତଦ୍‌ଭିନ୍ନ ଶିକ୍ଷାପ୍ରଦ ଓ ଚପଳମତି ବାଳକ ବାଳିକାମାନଙ୍କର ମନୋହରଣକୋଷ୍ଠ କେତେଗୁଡ଼ିଏ ଗଳ୍ପ 'ସାହିତ୍ୟ କୁସୁମ' ଓ 'ସାହିତ୍ୟ ପ୍ରସଙ୍ଗ'ରେ ସନ୍ନିବେଶିତ କରିଛନ୍ତି । କହିବା ବାହୁଲ୍ୟ ଯେ ଏହି ଗଳ୍ପ ଗୁଡ଼ିକ ମାଧ୍ୟମରେ ତାଙ୍କର କଥକ ପ୍ରତିଭା ସ୍ପଷ୍ଟ ହୋଇଉଠିଛି । ପିତୃଭକ୍ତି, ପ୍ରଭୁପରାୟଣତା, ସଫଳ ସ୍ୱପ୍ନ, ଗୁରୁଭକ୍ତି, ରାମାୟଣ କଥା, ମହାଭାରତ କଥା, କୁଠାର ଓ ଜଳଦେବତା, ଜଣେ ଲୋକ ଓ ଗୋଟିଏ ଓଟ, ବ୍ୟାଧ ଓ କପୋତ କଥା, ପ୍ରେମର ଜୟ, ଆନ୍‌ଡ୍ରୋକ୍ଲସ୍ ଓ ସିଂହ, ରାଜମସ୍ତକ ବିକ୍ରୟ, ଅଗ୍ନିପରୀକ୍ଷା, ବନ୍ଧୁ ପ୍ରଭୃତି ଗଳ୍ପ ପଦବାଚ୍ୟ ନ ହେଲେ ମଧ୍ୟ ମଧୁମାନସୀୟ ଗଳ୍ପୀୟ ଶୈଳୀର ଗୋଟିଏ ଗୋଟିଏ ପରିପ୍ରକାଶ । ଏହି କାହାଣୀଗୁଡ଼ିକର ମୂଳ ଉପାଦାନ ଦେଶବିଦେଶର ଲୋକକଥା ଓ ପୁରାଣ ପୃଷ୍ଠାରୁ ସଂଗ୍ରହ କରି ମଧୁସୂଦନ ଉପସ୍ଥାପିତ କରିଛନ୍ତି । ଶିକ୍ଷକ ମଧୁସୂଦନ ଏହି ଗଳ୍ପ ଗୁଡ଼ିକ ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କର ଚରିତ୍ର ଗଠନ ସମ୍ଭବ ବୋଲି ମନେ କରିଥିଲେ । ଏଠାରେ ସୃଷ୍ଟି କଳା ଅପେକ୍ଷା ବିଷୟବସ୍ତୁର ଶିକ୍ଷଣୀୟତା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । କହିବା ବାହୁଲ୍ୟ ଯେ ଅନେକ କ୍ଷେତ୍ରରେ ଏଗୁଡ଼ିକ ସାର୍ଥକ ହୋଇ ଉଠିଛନ୍ତି । ଆନ୍‌ଡ୍ରୋକ୍ଲସ ଓ ସିଂହ ବହୁପରିମାଣରେ ଗଳ୍ପର ଧର୍ମ ରକ୍ଷା କରିଛନ୍ତି । ଏହି ଗଳ୍ପଟିରେ ପଶୁର

ଉଦାରତା ଓ ମାନବର ପଶୁତ୍ୱବୋଧ ଦର୍ଶାଇବା ସଙ୍ଗେ ସଙ୍ଗେ ମନସ୍ତାତ୍ତ୍ୱିକ ଚରିତ୍ରଗୁଡ଼ିକ ମଧ୍ୟ ଅତିସୁନ୍ଦର ଭାବେ ଉପସ୍ଥାପିତ କରାଯାଇଛି ।

ମଧୁସୂଦନ ମୁଖ୍ୟତଃ ଥିଲେ ଜଣେ ଶିକ୍ଷକ ଓ ବ୍ରାହ୍ମଧର୍ମାବଲମ୍ବୀ ଜଣେ ନିଷ୍ଠାପର ଦେବୋପମ ମାନବ । ଅତଏବ ସମାଜକୁ ସତ୍‌ପଥରେ ଚଳାଇବାର ନୈତିକ ନିର୍ଦ୍ଦେଶ ଦେବାର ଅଧିକାର ଥିଲା କେବଳ ତାଙ୍କର । ଏଣୁ ଗାଳ୍ପିକ ମଧୁସୂଦନଙ୍କ ଗଳ୍ପ ଦିଓଟି ଏହି ନିୟମର ବଶବର୍ତ୍ତୀ ହୋଇ ତାଙ୍କର ଆଦର୍ଶବାଦକୁ ଧରିରଖିଛି ।

ଗଳ୍ପାଲୋଚନା ସମୟରେ ମଧୁସୂଦନଙ୍କୁ ସମାଲୋଚକମାନେ ଗଳ୍ପର ଜନକ ହିସାବରେ ପ୍ରାଧାନ୍ୟ ନ ଦେଲେ ମଧ୍ୟ ତାଙ୍କର ଗଳ୍ପ ସାହିତ୍ୟକୁ ଯେ ଦାନ ଯଥେଷ୍ଟ, ଏ କଥା ଯେ କେହି ମୁକ୍ତକଣ୍ଠରେ ସ୍ୱୀକାର କରିବ । ସ୍ପଷ୍ଟଭାବେ କହିଲେ, ଗଳ୍ପ ସାହିତ୍ୟର ଅଗ୍ରଗତିରେ ମଧୁସୂଦନଙ୍କ ପ୍ରଚେଷ୍ଟା ଏକ ସୂକ୍ଷ୍ମ ପାବଚ୍ଛ ସଦୃଶ । □□□

# ଶିଶୁସାହିତ୍ୟିକ : ମଧୁସୂଦନ

ଶ୍ରୀମତୀ ଜୟନ୍ତୀ ଦାସ
ପଞ୍ଚମ ବାର୍ଷିକ ଶ୍ରେଣୀ, ବାଣୀବିହାର

ପ୍ରାୟତଃ ପ୍ରତ୍ୟେକ ମନୁଷ୍ୟ ଜଣେ ଜଣେ ବେଦନାସିକ୍ତ ମାନସିକ ରୋଗୀ । ରୋଗର ନିରାକରଣ ପାଇଁ ସାହିତ୍ୟ ହେଉଛି ଏକ ଔଷଧ । ସାହିତ୍ୟ କୌଣସି ଦିଗହରା ପଥିକର ପ୍ରଶ୍ନ କୁହେଳୀ ନୁହେଁ—ଏହା ଦିଗ୍‌ଭ୍ରଷ୍ଟାର ମଧୁ ବିହାର ବହୁ ଆକାଂକ୍ଷିତ ସୁନେଲି ସ୍ୱପ୍ନ । ସାହିତ୍ୟର ପ୍ରତିଟି ଶାଖାରେ ଜୀବନକୁ ଖୋଜି ଖୋଜି ମନୁଷ୍ୟ ପଥହରା ହୋଇନି; କ୍ଲାନ୍ତ ହୋଇନି ବରଂ ସାହିତ୍ୟର ମୁଠା ମୁଠା ପରାଗ ରେଣୁରେ ନିଜେ ଖେଳିଛି—ଯେତେବେଳେ ଦୁଃଖର ଓଜନିଆ ବାଦଲ ମଣିଷର ମନଆକାଶକୁ ଆଚ୍ଛନ୍ନ କରେ କିମ୍ବା ହତାଶାର ମରୁଭୂମିରେ ସେ କ୍ଲାନ୍ତ ହୋଇପଡ଼େ, ସେତେବେଳେ ସେ ଖୋଜେ ଏମିତି ଏକ ସାହିତ୍ୟ, ଯାହା ତା'ର ଦୁଃଖର ପରିସମାପ୍ତି ଆଣିଦେବ କିମ୍ବା ଆଣିଦେବ ତା' ହତାଶାର ପୂର୍ଣ୍ଣଚ୍ଛେଦ । ଠିକ୍ ଏହି ପ୍ରକାର ସାହିତ୍ୟର ଆଭାସ ମିଳିଥିଲା ମଧୁସୂଦନଙ୍କ ସୃଷ୍ଟିରେ—ଯାହା ତରଳ ଶିଶୁ ହୃଦୟରେ ଉଜ୍ଜ୍ୱଳ ଟିକି ଟିକି ଚେତନା ସୃଷ୍ଟି କରିଥିଲା । ରାଧାନାଥଙ୍କ ସମସାମୟିକ ହେଲେହେଁ ତାଙ୍କ ପରି ପ୍ରେମ ଓ ପ୍ରଣୟ କାହାଣୀମୂଳକ କାବ୍ୟ ରଚନାରେ ମନୋନିବେଶ ନକରି ସେ ଗୀତି-କବିତା ଓ ଗଦ୍ୟରଚନାକୁ ଆପଣା ପ୍ରତିଭା ପ୍ରକାଶର ମାଧ୍ୟମ ରୂପେ ବରଣ କରିନେଇଥିଲେ । ଶିଶୁଉପଯୋଗୀ ପାଠ୍ୟ ପୁସ୍ତକ ରଚନାକରି ଶିଶୁସାହିତ୍ୟିକ ରୂପେ ଖ୍ୟାତି ଅର୍ଜନ କରିଥିଲେ ।

ଝଡ଼ବତାସର ଅବସାନ ପରେ ଆକାଶ ନିର୍ମଳ ହୋଇଯାଇଥାଏ । ଠିକ୍ ସେହିପରି ୧୮୭୦ ସାଲ ପରେ ପରେ ଓଡ଼ିଆ ଭାଷା ଜଗତରେ ଦେଖା ଦେଇଥିବା ଝଡ଼ ଝଞ୍ଜାର ଅବସାନ ହେଲା । ଓଡ଼ିଆ ଜାତି ନିଜର ଭାଷା ଓ

ସାହିତ୍ୟକୁ ସୁପ୍ରତିଷ୍ଠିତ କରିବା ପାଇଁ ବଦ୍ଧପରିକର ହୋଇ ଉଠିଲା ସତ; କିନ୍ତୁ ଏତେ ଶୀଘ୍ର ସୁଦୃଢ଼ କରିପାରିନଥିଲା । ୧୮୭୪ର 'ଉତ୍କଳପୁତ୍ର'ରେ ସେକାଳର ଓଡ଼ିଆ ସାହିତ୍ୟ ସଂପର୍କରେ ତେଣୁ 'ଉତ୍କଳ ସାହିତ୍ୟ' ଶୀର୍ଷକ ଲେଖାରେ କୁହାଯାଇଥିଲା—"ଉତ୍କଳ ସାହିତ୍ୟର ଅବସ୍ଥା ଯେ ଅଦ୍ୟାବଧି ଶୋଚନୀୟ, ଏକଥା କିଏ ଅସ୍ୱୀକାର କରିବ ? ଆଜିପର୍ଯ୍ୟନ୍ତ ସରସ, ସୁଲଳିତ ଶୃଙ୍ଗାର ରସ ବିବର୍ଜିତ, ମନୋଦୁଃଖହର ଓ ପ୍ରୀତିପଦ ଖଣ୍ଡିଏ ଗଦ୍ୟ କି ପଦ୍ୟ ମୂଳଗ୍ରନ୍ଥ ଓଡ଼ିଆ ଭାଷାରେ ଦେଖିବାକୁ ପାଇବାର ଦୁଷ୍କର ।" ବୋଧହୁଏ ଓଡ଼ିଆ ସାହିତ୍ୟ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ପରି ଯୁଗ ସ୍ରଷ୍ଟାଙ୍କୁ ଅପେକ୍ଷାକରି ରହିଥିଲା; ଆଉ ସେମାନଙ୍କର ସାରସ୍ୱତ ମିଳନରେ ଓଡ଼ିଆ ସାହିତ୍ୟର ନୂତନ ଦିଗନ୍ତ ଉନ୍ମୋଚିତ ହେଲା ।

ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ (୧୮୫୩) ମଧୁସୂଦନ ଜନ୍ମଗ୍ରହଣ କରିଥିଲେ ଫଗୁଣର ମୁଠା ମୁଠା ଆଶ୍ଚର୍ଯ୍ୟ ଭିତରେ । ସେ ଥିଲେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମାର୍ଜିତ ରୁଚି ଓ ଦାର୍ଶନିକ ଚିନ୍ତାଧାରାର ପ୍ରଥମ ପ୍ରୟୋଗ କର୍ତ୍ତା । ଓଡ଼ିଆରେ ପ୍ରବନ୍ଧ ରଚନାର ଧାରା, ଇଂରାଜୀ କବିତା ଓ ସଂସ୍କୃତ 'ଉତ୍ତର ରାମଚରିତ' ପ୍ରଭୃତିର ଅନୁବାଦ କାର୍ଯ୍ୟରେ ସେ ପ୍ରଥମେ ହାତ ଦେଇଥିଲେ । ଓଡ଼ିଆ କଥା-ସାହିତ୍ୟ ସୃଷ୍ଟିର ପ୍ରଥମ ପରିଚୟ (ପ୍ରଣୟର ଅଦ୍ଭୁତ ପରିଣାମ, ଚନ୍ଦ୍ର ଓ ତାରା) ତାଙ୍କ ରଚନାବଳୀରୁ ମିଳୁଥିଲେ ହେଁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଗୀତିକବିତା କ୍ଷେତ୍ରରେ ହିଁ ସେ ଉଚ୍ଚକୋଟୀର କଳାନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି । ସେ ବହିର୍ଜଗତ ଅପେକ୍ଷା ଓ ମନୁଷ୍ୟର ବ୍ୟାବହାରିକ ଜୀବନର ଚିତ୍ରକାର ଅପେକ୍ଷା ଅଧିକତର ମାନବ ଆତ୍ମାର କବି । ଜୀବନର ଚିରନ୍ତନ ସତ୍ୟ ଉଦ୍‌ଘାଟନ ଲାଗି ଓ ମାନବପ୍ରାଣରେ ଦେବତ୍ୱର ସଂଧାନ ଉଦ୍ଦେଶ୍ୟରେ ତାଙ୍କ ଲେଖନୀ ଅବିରଳ ଭାବରେ ସୃଷ୍ଟି-ମୁଖର ଥିଲା । ବିପୁଳ ସାହିତ୍ୟ ସୃଷ୍ଟି ସମ୍ଭାର ମଧ୍ୟରେ ମଧୁସୂଦନଙ୍କ ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ ଶିଶୁସାହିତ୍ୟ କ୍ଷେତ୍ରରେ ।

ଶିଶୁର ଦରବୋଲି ଭାଷା କବି ମନକୁ ବିଚଳିତ କରେ । ତା'ର ଦୁଃଖ, ତା ଚିତ୍ତବିକାରରେ ଅଭାବ କବି ହୃଦୟକୁ ବିମର୍ଦ୍ଦିତ କରେ । ଶିଶୁମାନଙ୍କର ଅଭାବ

ଅସୁବିଧା ଓ ସେମାନଙ୍କର ଶିକ୍ଷା ସଂଗଠନର ଗୁରୁଦାୟିତ୍ୱ ନେଇ ମଧୁସୂଦନ ତେଣୁ ଏ ଜାତିପାଇଁ ପାଠ୍ୟପୁସ୍ତକ ରଚନାର ଭାର ବହନ କରିଥିଲେ । କିନ୍ତୁ ତାଙ୍କ ରଚିତ ପାଠ୍ୟପୁସ୍ତକ ଗୁଡ଼ିକ କେବଳ ଭାଷା-ଶିକ୍ଷାର ପରିସର ମଧ୍ୟରେ ସୀମିତ ନ ହୋଇ ରସୋତ୍ତୀର୍ଣ୍ଣ ସାହିତ୍ୟ ହୋଇଯାଇଛି । ତାଙ୍କ ରଚିତ ପାଠ୍ୟପୁସ୍ତକ ଗୁଡ଼ିକ ଆଜି ମଧ୍ୟ ସଫଳ ଶିଶୁସାହିତ୍ୟ ରୂପେ ସମାଦୃତ । ମଧୁସୂଦନଙ୍କ ମତରେ—"ମାତୃଭାଷା କୋଷରେ ରକ୍ଷିତ ସାହିତ୍ୟର ଅଧ୍ୟୟନ ଦ୍ୱାରା ବାଳକ ବାଳିକାମାନଙ୍କର ମାନସିକ ଓ ଆଧ୍ୟାତ୍ମିକ ଶକ୍ତି ବିକାଶ ପ୍ରାପ୍ତ ହୁଏ । ଭାବ ଗ୍ରହଣ କରିବାର ଓ ଭାବ ପ୍ରକାଶ କରିବାର ଶକ୍ତି ମାତୃଭାଷାର ସାହାଯ୍ୟରେ ସହଜରେ ଲାଭ କରାଯାଏ ।" ତେଣୁ ସେ ନିଜେ ତରୁଣ ଜୀବନରୁ ଶିକ୍ଷାବିଭାଗ ସହ ସଂପୃକ୍ତ ରହି ଏ ଦେଶର ଅସହାୟ-ଦଳିତ ଶତ ଶତ ଶିଶୁଙ୍କର ଶିକ୍ଷାର ବିକାଶ ପ୍ରତି ଧ୍ୟାନ ଦେଇଥିଲେ । ତାଙ୍କ କାବ୍ୟ କୃତି ମଧ୍ୟରେ ଏକ ଶିଶୁ ଦରଦୀ ମନ ଲୁଚି ରହିଥିଲା । ସର୍ବାନ୍ତ-କରଣରେ ସେ ଭଲପାଉଥିଲେ ଗ୍ରାମ ତଥା ଶିଶୁମାନଙ୍କୁ । ତାଙ୍କ ମତରେ, ଶିଶୁମାନେ ଅବହେଳାର ବସ୍ତୁ ନୁହନ୍ତି—ଆଦରର ସାମଗ୍ରୀ ଏବଂ ସ୍ନେହର ଧନ । ସେମାନଙ୍କଠାରେ ଦେବତ୍ୱ ପ୍ରଚ୍ଛନ୍ନ ରହିଛି । ପିଲାମାନେ ଯଦି ଭଲ ବହି ତାଙ୍କର ଗ୍ରାମ ଜୀବନର ପ୍ରାରମ୍ଭରୁ ନ ପା'ନ୍ତି ଏବଂ ବିକୃତ ଓଡ଼ିଆ ଭାଷାରେ ଲେଖା ହୋଇଥିବା ସାହିତ୍ୟ ପଢ଼ନ୍ତି, ତାହାହେଲେ ସେମାନଙ୍କର ଭବିଷ୍ୟତ ନଷ୍ଟ ହୋଇଯିବ । ବୁଦ୍ଧିବୃତ୍ତିର ଯଥାଯଥ ବିକାଶରେ ଘୋର ଅନ୍ତରାୟ ସୃଷ୍ଟି ହେବ । କୋମଳମତି ଶିଶୁମାନଙ୍କର କେବଳ ବହୁମୂଲ୍ୟ ସମୟ ନୁହେଁ; ବିକାଶୋନ୍ମୁଖ ଶକ୍ତିର ଘୋର ଅପଚୟ ଘଟିବ । ବୈଜ୍ଞାନିକ ଓ ମନସ୍ତାତ୍ତ୍ୱିକ ଭିତ୍ତିରେ ଲିଖିତ ସରସ ଓ ଶିକ୍ଷଣୀୟ ପାଠ୍ୟପୁସ୍ତକ ଯଦି ଗ୍ରାମମାନଙ୍କୁ ଦିଆ ନଯାଏ, ପଢ଼ାଇବାର ପ୍ରଣାଳୀ ଯଦି ଚିତ୍ତାକର୍ଷକ ଓ ବୁଦ୍ଧିବୃତ୍ତିର ବିକାଶକ ନହୁଏ—ତେବେ ଗ୍ରାମମାନଙ୍କର ଯେ କେବଳ ଜ୍ଞାନର ପରିସର ବୃଦ୍ଧିପାଇବ ନାହିଁ ତା ନୁହେଁ; ସେମାନଙ୍କର ଚରିତ୍ର ମଧ୍ୟ ସୁଗଠିତ ହୋଇପାରିବ ନାହିଁ ବୋଲି ମଧୁସୂଦନ ମତ ଦେଇଥିଲେ ।

ଶିଶୁକୁ ଅକ୍ଷର ପରିଚୟ ଶିକ୍ଷା ଦେବାପାଇଁ, ତା' ମନଭିତରେ ଜାତୀୟତାପ୍ରୀତି, ଭଗବତ୍ ପ୍ରେମ ଭରିଦେବା ପାଇଁ; ତା' ମନରୁ ମିଛ ଅହମିକା ଦୂରେଇ ଦେବାପାଇଁ, ସର୍ବୋପରି ପ୍ରଥମରୁ ଶିଶୁକୁ ଗୋଟିଏ ସୁସ୍ଥ-ସୁନ୍ଦର, ଉନ୍ନତ ଚିନ୍ତା ସଂପନ୍ନ ବ୍ୟକ୍ତିତ୍ୱରେ ରୂପାୟିତ କରିବା ପାଇଁ ସେ ସୃଷ୍ଟି କଲେ 'ବର୍ଣ୍ଣବୋଧ'। ତାଙ୍କର ନବ୍ୟରୁଚି ସଂପନ୍ନ ପାଠ୍ୟପୁସ୍ତକ କେବଳ ପ୍ରାଥମିକ ଓ ନିମ୍ନ ମାଧ୍ୟମିକ ଶିକ୍ଷା ପ୍ରଣାଳୀରେ ଗୋଟିଏ ନୂତନ ଅଧ୍ୟାୟ ସୃଷ୍ଟି କଲା ନାହିଁ; ସୃଷ୍ଟି କଲା ଛାତ୍ରମାନଙ୍କ ମନରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତିର ନୂତନ ଆଭିମୁଖ୍ୟ, ସଶ୍ରଦ୍ଧ ଅନୁରାଗ ଓ ମମତା। 'ସୁନ୍ଦର ସଂସାର', 'ପରମେଶ୍ୱର', 'ସ୍ତବ', 'ପ୍ରଭାତ' ଓ 'ସନ୍ଧ୍ୟା' ଶିଶୁ କବିତାଗୁଡ଼ିକ ତାଙ୍କର 'ବର୍ଣ୍ଣବୋଧ'ରେ ଦେଖିବାକୁ ମିଳେ। ୧୮୯୫ ସାଲରେ ଏହା ପ୍ରକାଶ ପାଇଥିଲା। 'ବର୍ଣ୍ଣବୋଧ' ବହିରେ ଏମିତି ଏକ ମାଦକତା ଭରିରହିଛି; ଯେଉଁମାନେ ସେ ବହିକୁ ଦେଖିଛନ୍ତି, ସେମାନେ ଆଧୁନିକ ଅକ୍ଷର-ପରିଚୟ ବହିମାନଙ୍କୁ ନାକଟେକି ସେହି 'ବର୍ଣ୍ଣବୋଧ' ଯୁଗକୁ ଫେରିଯିବାକୁ ସତେ ଯେମିତି ବ୍ୟାକୁଳ ହୋଇ ପଡ଼ୁଛନ୍ତି।

'ସୁନ୍ଦର ସଂସାର' କବିତାରେ କବି ଶିଶୁକୁ ଦୟାସାଗର ଈଶ୍ୱରଙ୍କ ସଂପର୍କରେ ସଚେତ କରାଇ ଦେଇଛନ୍ତି। ଶିଶୁ ବିସ୍ମୟ ବିସ୍ଫାରିତ ନୟନରେ ସୁନ୍ଦର ଆକାଶ, ଉଜ୍ଜ୍ୱଳ ସୂର୍ଯ୍ୟ, ଚନ୍ଦ୍ର ତାରା, ନୀଳ ସମୁଦ୍ର, ଶ୍ୟାମଳ ପୃଥିବୀ, ନଦନଦୀ, ପର୍ବତ, ଫୁଲଫଳ ଶୋଭିତ ବୃକ୍ଷଲତା ସନ୍ଦର୍ଶନ କରି ଆନନ୍ଦ ବିଭୋର ଚିତ୍ତରେ ସତେ ଯେମିତି ଗାଉଛି—

"କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର
ଧନ୍ୟ ମହାପ୍ରଭୁ ମହିମା ତୁମର ଅଟେ ଅନନ୍ତ ଅପାର।"

ମାତ୍ର 'ପରମେଶ୍ୱର'ରେ ଶିଶୁ ପତିତପାବନ, ଅଗତିର ଗତି ପରମ ଈଶ୍ୱରଙ୍କ ଉପସ୍ଥିତି ଅନୁଭବ କରିଛି। ସେ ଅନୁଭବ କରୁଛି—

"ମୋ ପାଶେ ଅଛନ୍ତି ଦିବସ ରଜନୀ
ମହାପ୍ରଭୁ ପରାତ୍ପର।"

ଏଣୁ ଶିଶୁ ପ୍ରାଣରେ ସରଳ ଈଶ୍ୱରାନୁଭବ କବିତାକୁ ଉଦ୍ବୋଧିତ କରିପାରିଛନ୍ତି । 'ପରମେଶ୍ୱର'ରେ ଶିଶୁ ଯେଉଁ ଈଶ୍ୱରାନୁଭୂତି ଲାଭ କଲା, ତାର ପରିଣତି 'ଧ୍ରୁବ'ରେ ଦେଖିବାକୁ ମିଳେ । ଶିଶୁର ସଂସାର ପିତାମାତା, ଭ୍ରାତା ଭଗିନୀଙ୍କୁ ନେଇ ସୁନ୍ଦର ତଥା ଆନନ୍ଦମୟ ହୋଇଛି ଏବଂ ସେ ଏହି ଆନନ୍ଦ ଘନ ସଂସାରରେ ବନ୍ଧୁ ଅନ୍ତରେ ଦିନ କାଟିବାକୁ ଇଚ୍ଛା ପ୍ରକାଶ କରିଛି । 'ପ୍ରଭାତ' କବିତାରେ ଶିଶୁ ଅନ୍ତରର ଜାଗୃତି ପାଇଁ ଏକ ମଧୁର ପରିବେଶ ସୃଷ୍ଟି କରାଯାଇଛି । ସୂର୍ଯ୍ୟଙ୍କର କନକ କିରଣରେ ଦଶଦିଗ ଖୁବ୍ ଆପଣାର ମନେ ହୋଇଛି । ପକ୍ଷୀର କାକଳୀରେ ଜଡ଼ ମନୁଷ୍ୟ ଚେତନା ଫେରିପାଇଛି । ଆଉ ଠିକ୍ ସେହି ମୁହୂର୍ତ୍ତରେ ଶିଶୁର ଦରଦୀ ପ୍ରାଣରେ ଚମକ୍ ଲାଗିଛି ଏବଂ ସେ ମଧ୍ୟ ପକ୍ଷୀ ସଙ୍ଗୀତ ସହ ତାଳ ମିଳାଇ ପ୍ରଭାତ ବନ୍ଦନା ସଙ୍ଗେ-ଜଗତ ପିତାଙ୍କର ଗାନ ଗାଇବାକୁ ଇଚ୍ଛା ପ୍ରକାଶ କରିଛି । ମାତ୍ର ପରବର୍ତ୍ତୀ ସମୟରେ ଆସିଛି 'ସନ୍ଧ୍ୟା' । ସେ ସଂଧ୍ୟା ମନୋରମ ବେଶରେ ଦେହରେ କଳାଶାଢ଼ୀ ପିନ୍ଧି, ମନ୍ଦିରର ଘଣ୍ଟାଧ୍ୱନି ଭିତରେ ମଥାରେ ସିନ୍ଦୂର ଟୋପା ପିନ୍ଧି ଶିଶୁମନକୁ ଆନନ୍ଦରେ ପୂର୍ଣ୍ଣକରି ଆସିଛି । ସଂଧ୍ୟା ଦୀପ ଜାଳିଦେଇ ଗୃହିଣୀ ତାର ସନ୍ତାନର ଶୁଭ ମନାସିଛି । କୃଷକ ହଳକାମ ସାରି ଘରକୁ ଫେରୁଛି, ପୁଣି ଶୁଭୁଛି ପକ୍ଷୀର ଘରବାହୁଡ଼ା ସ୍ୱନ । ତାର ବେଦନା ବଦଗ୍ଧ ଦିନର ଅବସାନ ହୋଇଛି । ଚାରିଆଡ଼େ ଅନ୍ଧାରର ରାଜତ୍ୱ । ଏ ସମସ୍ତ ଚିତ୍ର ଶିଶୁ ମନରେ ଗଭୀର ରେଖାପାତ କରେ ।

ତେଣୁ ମନେହୁଏ କବି ଶିଶୁକୁ ଏ ଜଗତ ସହିତ ପରିଚିତ ହେବାପାଇଁ ତାର ନଦନଦୀ, ବିହଙ୍ଗ, ପର୍ବତ ମାନଙ୍କ ସହିତ ଆତ୍ମୀୟତା ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରିଛନ୍ତି । 'ବର୍ଣ୍ଣବୋଧ' ଦ୍ୱାରା ଶିଶୁକୁ ଅକ୍ଷର ଶିକ୍ଷାଠାରୁ ଆରମ୍ଭକରି ଜଗତ ସମ୍ବନ୍ଧରେ ଧାରଣା ଦେବା କବି ମଧୁସୂଦନଙ୍କର ଲକ୍ଷ୍ୟ ହୋଇଛି । ତେଣୁ ଏବେସୁଦ୍ଧା ବହୁ ପାଠ୍ୟପୁସ୍ତକ ରଚିତ ହେଲେ ମଧ୍ୟ 'ବର୍ଣ୍ଣବୋଧ' ପାଇଁ ଶିଶୁର ମନରେ ଅସୀମ ଆଗ୍ରହ ରହିଛି । ବର୍ଣ୍ଣବୋଧ ହିଁ ତା ସୁଖ ଦୁଃଖର ସାଥୀ । ତା' ଆରମ୍ଭ ଓ ଶେଷର ସାଥୀ । ରାଧାନାଥ ୧ । ୨ । ୧୮୯୩ରେ ଏହାର ନୂତନ ସଂସ୍କରଣ ସଂପର୍କରେ

ମନ୍ତବ୍ୟ ଦେଇ କହିଥିଲେ—"× × × ପାଠଶାଳାର ଛାତ୍ରମାନଙ୍କର କ୍ଷମତା ଉପଯୋଗୀ ଭାଷା ଏଥିରେ ବ୍ୟବହାର କରାଯାଇଛି । ସୂକ୍ତି ମାତ୍ର ବିଷୟକ ବହୁତ ଦରକାରୀ ପାଠ୍ୟର ସମାବେଶରେ ଏ ପୁସ୍ତକର ଉପଯୋଗିତା ଯଥେଷ୍ଟ ବୃଦ୍ଧି ପାଇଛି ।" ଶିଶୁର ବର୍ଣ୍ଣ ପରିଚୟ, ଭାଷା ଶିକ୍ଷା, ଶବ୍ଦଶୁଦ୍ଧତା, ଉପଧାମିଳନ ପାଇଁ 'ବର୍ଣ୍ଣବୋଧ' ହିଁ ଏକମାତ୍ର ଅଭ୍ରାନ୍ତ ପଥପ୍ରଦର୍ଶକ । ସେଥିରେ ଅକାର, ଆକାର, ଦୀର୍ଘ ଉ କାର, ଚନ୍ଦ୍ରବିନ୍ଦୁ ଯୋଗ ସହିତ, ସର୍ବାଙ୍ଗ ଭାଷାର ସୌଷ୍ଠବ ସଂପାଦିତ ହୋଇଛି । ଏହାର ପଂକ୍ତିଗୁଡ଼ିକ ଅନେକ ସ୍ଥଳରେ ବାକ୍‌ଧର୍ମୀ । ଯଥା—

"ଲେଖା ପଢ଼ାରେ ଦିଅ ମନ
ହେଳା ନକର ଶିଶୁଗଣ ।
× × ×
ଚାଲି ବାଛୁରି ଆସ ଆସ
ଖାଇବ ପରି ଦୂବ ଘାସ…ଇତ୍ୟାଦି ।"

ଏହା ମାଧ୍ୟମରେ ଗାଁ ଗହଳ ସଂପର୍କରେ ଶିଶୁକୁ ଅବହିତ କରାଯାଇଛି । ତା' ଛଡ଼ା ସଙ୍ଗୀତମୟ ଭାଷା ସଂଯୋଜନା ଓ ଲୋକ-ଗୀତିକାର ସମାବେଶ ମଧ୍ୟ ଏଥିରେ ରହିଛି; ଯାହାଦ୍ୱାରା ଶିଶୁ ଏହି ବହି ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରିବ ଏବଂ ଫଳରେ ତା ଚିତ୍ତବୃତ୍ତିର ବିକାଶ ହୋଇପାରିବ । ଯଥା—

ହରିଣ ନଦିଏ ଧରି । ଦଉଡ଼ନ୍ତି ବଡ଼ ଖରି
ଭାଲୁଆ ବଡ଼ ଚତୁର । ପଇଡ଼ ବଡ଼ ମଧୁର—(ସଙ୍ଗୀତମୟ ଭାଷା)
× × ×
ଝୁଲରେ ହାତୀ ଝୁଲ । ବା' ପାଣି ଖାଇ ଫୁଲ ।
× × ×
ଚକା ଚକା ଭଉଁରି । ମାମୁଁ ଘର ଚଉଁରି ।
× × ×
ଡାମରା କାଉରେ ଡାମରା କାଉ
ପର୍ବତେ ପର୍ବତେ ବୋବାଉ ଥାଉ… ଇତ୍ୟାଦି—(ଲୋକ ଗୀତିକା)

ଯେତେବେଳେ ଶିଶୁଉପଯୋଗୀ ପାଠ୍ୟପୁସ୍ତକ ରଚିତ ହୋଇ ନ ଥିଲା ସେତେବେଳେ ପିଲାମାନଙ୍କୁ 'ମଥୁରା ମଙ୍ଗଳ', 'ଗୋପୀଭାଷା' ଓ 'ଭାଗବତ' ମାଧ୍ୟମରେ ଶିକ୍ଷା ଦିଆଯାଉଥିଲା । ପରମେଶ୍ୱରଙ୍କୁ ସହଜରେ ଉପେକ୍ଷା କରିହୁଏନା । ତେଣୁ ମଧୁସୂଦନ ମଧ୍ୟ ପୂର୍ବୋକ୍ତ ରାଗ-ରାଗିଣୀକୁ ପରିହାର ନକରି

"ଆକାଶ ଦିଶେ କି ସୁନ୍ଦର
ତାହାକୁ ରଚିଲେ ଈଶ୍ୱର ।"

ପରି ନୂତନ ବିଷୟବସ୍ତୁ ପରିବେଷଣ କଲେ । ତେବେ 'ବର୍ଣ୍ଣବୋଧ' କେବଳ ବର୍ଣ୍ଣ ଅବବୋଧ ବା ବର୍ଣ୍ଣ ଶିକ୍ଷାପାଇଁ ଅଭିପ୍ରେତ ନୁହେଁ; ଏଦେଶରେ ସାହିତ୍ୟିକ ଗୋଷ୍ଠୀ ସୃଷ୍ଟି ପାଇଁ ପ୍ରେରଣା ମଧ୍ୟ ।

ମଧୁସୂଦନ ଥିଲେ ଆଧୁନିକ ଯୁଗ ସାହିତ୍ୟର ତ୍ରିବେଣୀ ଧାରାର ଅନ୍ୟତମ ମୁଖ୍ୟ ସ୍ରୋତ । ତାଙ୍କର ସାହିତ୍ୟରେ ଆଶାବାଦ, ଆନନ୍ଦବାଦ ଏବଂ ବ୍ରହ୍ମବାଦର ପ୍ରାଣସ୍ପନ୍ଦନ ଅତ୍ୟନ୍ତ ପ୍ରଭାବଶାଳୀ । ସେ ସତ୍ୟ, ଶିବ ଓ ସୁନ୍ଦରର କବି । ତାଙ୍କର କାବ୍ୟ ସଂସାରରେ ସର୍ବସ୍ୱ ଉଚ୍ଚକୋଟୀର କବିତ୍ୱର ସ୍ପର୍ଶ ହୁଏତ ନାହିଁ; ମାତ୍ର ତହିଁରେ ଅଛି ନୀତିବୋଧ, ଆଦର୍ଶ ଏବଂ ଆଧ୍ୟାତ୍ମିକ ଅନୁଚିନ୍ତା । ପ୍ରକୃତି ଓ ପୁରୁଷ, ପରମାତ୍ମା ଓ ଜୀବାତ୍ମା ତାଙ୍କ କାବ୍ୟ ସଂସାରରେ ଏକ ହୋଇଯାଇଛନ୍ତି । ତାଙ୍କ ପାଇଁ ଏହି ସୃଷ୍ଟି ହେଲା ଅମୃତର ଗନ୍ତାଘର ଏବଂ ସେହି ଅମୃତର ସଂଧାନ ଦେଇଛନ୍ତି ସେ ଶିଶୁ-ମାନଙ୍କୁ ତାଙ୍କ ରଚନାବଳୀରେ—

"ଅମୃତ ଉତ୍ସାହ ପୁଣି ଆନନ୍ଦ ଅମୃତ
ଝରମାର ପ୍ରାୟ ସଦା ହେଉଛି ନିଃସୃତ ।"

ଜଡ଼ ପ୍ରକୃତି ରାଜ୍ୟରେ ସେ ଶୁଣିଛନ୍ତି ଭଗବାନଙ୍କର ଅମୃତୋପମ ବାଣୀ ଏବଂ ପ୍ରତିକବିତାର ଛନ୍ଦେ ଛନ୍ଦେ ସେ ବାଣୀ ଶିଶୁର ହୃଦୟକୁ ଝଙ୍କୃତ କରିଛି; କିଶୋରର ମନଭିତରେ ନୂଆ ଉନ୍ମାଦନା ଭରିଦେଇଛି ଓ ବୃଦ୍ଧର ଅନ୍ତରରେ କରୁଣ ମୂର୍ଚ୍ଛନା ସୃଷ୍ଟି କରିଛି । କେବଳ ସେତିକି ନୁହେଁ, ଶିଶୁକୁ ଓଡ଼ିଆ ସାହିତ୍ୟ ଓ ଜ୍ଞାନ ବିଜ୍ଞାନ ସହିତ ପରିଚିତ କରାଇଦେବା ପାଇଁ ସେ

'ଛନ୍ଦମାଳ', 'କବିତାବଳୀ' ଓ 'ପ୍ରବନ୍ଧମାଳା' ପରି ପାଠ୍ୟପୁସ୍ତକମାନ ରଚନା କରିଥିଲେ । ଏଥିରେ ମନୁଷ୍ୟର ଚିନ୍ତାଶକ୍ତିକୁ ଉଦ୍ଦୀପ୍ତ କରିବାପାଇଁ ଉପାଦାନ ରହିଛି । ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏହି ପୁସ୍ତକଗୁଡ଼ିକ ପଢ଼ିବାଦ୍ୱାରା ସେ ଉନ୍ନତ ଚିନ୍ତାରାଜ୍ୟରେ ବିଚରଣ କରିବାକୁ ସମର୍ଥ ହୋଇଥାଏ । ତାଙ୍କ 'ଛନ୍ଦମାଳା' (୧୮୮୦-୮୧) ପ୍ରଥମ ଭାଗ ଗର୍ଭିତ ଛଅ ଋତୁ ବର୍ଣ୍ଣନା ହିଁ ଓଡ଼ିଆ ସାହିତ୍ୟରେ 'ଋତୁଚକ୍ର' ସୃଷ୍ଟିର ପ୍ରଥମ ନୈବେଦ୍ୟ । ତାଙ୍କର ବସନ୍ତ ହିଁ ଋତୁଚକ୍ରର ଆଦି ଋତୁ । ବସନ୍ତ ହେଉଛି ମଧୁ ଋତୁ—ଏହା ଯୌବନର ଋତୁ—ସୌନ୍ଦର୍ଯ୍ୟର ଋତୁ ତଥା ହୃଦୟ ଉନ୍ମେଷକାରୀ ଋତୁ । ଏହା କିଶୋରମାନଙ୍କ ପାଇଁ ଉଦ୍ଦିଷ୍ଟ ହେତୁ କବି ଲୀଳା ପରାୟଣ କିଶୋରଙ୍କ କଥା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ଶିଶୁଗଣ ଏବେ ହରଷେ ରତ
ଫୁଲ ଉପବନେ ବୁଲି ସତତ
× × ×
ନାନା ରଙ୍ଗେ ଖେଳି ତରୁ ତଳରେ
କରନ୍ତି ସଙ୍ଗୀତ ଆନନ୍ଦ ଭରେ ।"

ତେଣୁ କବି ଦୃଷ୍ଟିରେ ବସନ୍ତ କେବଳ ଯୌବନର ଋତୁ ନୁହେଁ; ଶିଶୁ ଜୀବନର ପରମାବଧି ଋତୁ ମଧ୍ୟ । ଶାରଦୀୟ ମନ୍ଦ ଅନିଳର ପୁଷ୍ପ-ଗନ୍ଧହାରୀ ରୂପର କମନୀୟ ବର୍ଣ୍ଣନା ସଙ୍ଗେ ସବୁ ଋତୁ ବର୍ଣ୍ଣନାରେ ସୌନ୍ଦର୍ଯ୍ୟ-ପ୍ରେମୀ କବିଙ୍କର ସୌନ୍ଦର୍ଯ୍ୟପ୍ରାଣତା ପ୍ରକାଶ ପାଇଛି । ବାଳକମାନଙ୍କର ପ୍ରଦୋଷ କ୍ରୀଡ଼ା ପ୍ରସଙ୍ଗରେ ସେ ଲେଖନ୍ତି—

"ପ୍ରଦୋଷେ ଫୁଟଇ କହ୍ଲି-ଫୁଲ ଘରେ ଘରେ
ବାଳକେ ତୋଳନ୍ତି ତାହା ମହା ଆନନ୍ଦରେ ।"

କବି ମଧୁସୂଦନ 'ଛନ୍ଦମାଳା'ର 'ବିଦ୍ୟା', 'ସୁଶୀଳତା' ନାମକ କ୍ଷୁଦ୍ର ନୀତିଉପଦେଶ ସମ୍ବଳିତ କବିତା ଗୁଡ଼ିକରେ ଶିଶୁମାନଙ୍କୁ ଯେଉଁ ନୀତିବାକ୍ୟ ପ୍ରଦାନ କରିଛନ୍ତି, ତାହା ହିଁ ଥିଲା ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ତାଙ୍କର ଆଦର୍ଶ

ବା ସ୍ୱପ୍ନ । 'ସତ୍ୟବ୍ରତ', 'ପତିପ୍ରେମ' ପ୍ରଭୃତି କବିତାଗୁଡ଼ିକରେ କବିତ୍ୱର ପରାକାଷ୍ଠା, ନବ ପ୍ରାଣର ଅନ୍ତଃସଲିଳା ଫଲ୍‌ଗୁଧାରାର ଉତ୍ସ, ସସ୍ନେହ କରସ୍ପର୍ଶର ମାଧୁର୍ଯ୍ୟ ଛନ୍ଦେ ଛନ୍ଦେ ଫୁଟି ଉଠିଛି—

"ବାଳକେ ମୋର ବୋଲକର
ମର୍ତ୍ତ୍ୟ ପାଳିବ ନିରନ୍ତର...ଇତ୍ୟାଦି ।"

ସେ ଶିଶୁମାନଙ୍କୁ ଉଦ୍‌ବୋଧନ ଦେଇ ତାଙ୍କ ସାହିତ୍ୟ ସାଧନାର ପ୍ରଥମାବସ୍ଥାରେ 'ଜନ୍ମ ମରଣ' କବିତାରେ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଅବତାରଣା କରିଛନ୍ତି । ଜନ୍ମ କାଳରେ ଶିଶୁ କ୍ରନ୍ଦନ କରେ; କିନ୍ତୁ ବନ୍ଧୁ ସ୍ୱଜନମାନେ ହର୍ଷ ପ୍ରକାଶ କରନ୍ତି । ମୃତ୍ୟୁ ଜନ୍ମର ବିପରୀତ ଅବସ୍ଥା । ଗୋଟିକରେ ଆବିର୍ଭାବ ଏବଂ ଅନ୍ୟଟିରେ ତିରୋଧାନ । ଏଥିପାଇଁ ଏକ ସୁନ୍ଦର ଉଦାହରଣ ଦେଇ ସେ କହନ୍ତି—

"ଜନନୀ ଗର୍ଭରୁ ଯେଉଁ କ୍ଷଣି
ଜନ୍ମି ଛୁଇଁଲ ଏ ଧରଣୀ
ତୁମ୍ଭଙ୍କୁ ଦେଖି ହର୍ଷଭରେ
ହସିଲେ କେତେ ନାରୀ ନରେ

× × ×

ମୁଦିବ ଅନ୍ତେ ଦେନ ତୋଳେ
କିନ୍ତୁ କାନ୍ଦିବେ ମହାରୋଳେ
ଶୋକେ ଆକୁଳ ନରନାରୀ
ନୟନୁଁ ତାଳ ଅଶ୍ରୁବାରି ।"

'ଶିଶୁ-ଗୀତିକା'ରେ କବି ଯେଉଁ ସବୁ ପ୍ରକୃତି ବର୍ଣ୍ଣନା ଓ ଉପମାଦି ପ୍ରୟୋଗ କରିଛନ୍ତି, ତାହା ଅତ୍ୟନ୍ତ ପ୍ରାଞ୍ଜଳ ଓ ସୁସ୍ପଷ୍ଟ । ତାହା ହିଁ ଓଡ଼ିଆ ଶିଶୁ ସାହିତ୍ୟର କ୍ଲାସିକ୍ । ଶରତ୍ କାଳରେ କୁମାରୀମାନଙ୍କର ଅନାବିଳ ସୁଷମା ବର୍ଣ୍ଣନାରେ କବି ସ୍ୱୀୟ ସୌନ୍ଦର୍ଯ୍ୟ-ଗ୍ରାହିତାର ପରିଚୟ ପ୍ରଦାନ କରିଛନ୍ତି ଓ ସେଥି ସଙ୍ଗରେ ସ୍ୱୀୟ ଅକଳୁଷ ହୃଦୟର ସ୍ୱଚ୍ଛତା ପରିସ୍ଫୁଟ କରିପାରିଛନ୍ତି—

"ରଜନୀରେ କୁମାରୀଏ ମହା ଆନନ୍ଦରେ
ମଣ୍ଡିଣ ସୁନୀଳ କେଶ ଶୁଭ୍ର କୁସୁମରେ
ତାରା ବିମଣ୍ଡିତ ନୀଳ ଗଗନକୁ ଚାହିଁ
ହରନ୍ତି ମାନସ ନାନା ରଙ୍ଗେ ଗୀତ ଗାଇ ।"

ଜଗତର ପ୍ରତି ପରିବାରକୁ ସ୍ୱର୍ଗ ଭୁବନରେ ପରିଣତ କରିବାକୁ, ସ୍ନେହ ଓ ଭକ୍ତିର ବୀଜ ପ୍ରତ୍ୟେକଙ୍କ ଅନ୍ତରରେ ବୁଣି ଦେବାପାଇଁ କବି ମଧୁସୂଦନ ଆଶା ପ୍ରକାଶ କରିଛନ୍ତି । ପରିବାର ଭିତରେ ସ୍ନେହ ଓ ପ୍ରେମର ଯେଉଁ ପାରିଜାତ ଫୁଟେ; ତାହା ପ୍ରତି ପରିବାର ଭିତରେ ଅବଲୋକନ କରିବାପାଇଁ ଆଶାୟୀ ହୋଇ ସେ ଶିଶୁମାନଙ୍କୁ ଅନୁରୋଧ କରିଥିଲେ—

"ପାଳିବ ଆନନ୍ଦେ ସଦା ଗୁରୁଜନ କଥା
କଦାପି କାହାର ମନେ ଦେବ ନାହିଁ ବ୍ୟଥା ।"

କାରଣ—"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।"

ଏହା ହିଁ ଯେପରି ପିତାମାତାଙ୍କର ପୁତ୍ରକନ୍ୟାଙ୍କୁ ହିତୋପଦେଶ ଓ ସ୍ନେହାଶିଷ । ଯେଉଁ ପରିବାର ଭିତରେ ଏପ୍ରକାର ଭାବଧାରା ପ୍ରକାଶ ପାଏନା; ସେ ପରିବାରର ଶିଶୁ ଅନୁଭବ କରେ ଏକ ବିରାଟ ଅଭାବ । ସେ ଅଭାବ କୌଣସି ଜଡ଼ବସ୍ତୁର ଅଭାବ ନୁହେଁ—ଅର୍ଥନୀତିର ଅଭାବ ନୁହେଁ—ସେ ଅଭାବ ସ୍ନେହ ଓ ପ୍ରୀତିର ଅଭାବ । ଏ ସ୍ନେହ, ଏ ପ୍ରୀତି, ଏ ପ୍ରେମ—ପରିବାରର ପିତାମାତାଙ୍କର ପବିତ୍ର ଉପହାର ।

'ପ୍ରବନ୍ଧମାଳା' ମଧୁସୂଦନଙ୍କର ଏକ ଅମ୍ଳାନ ସୃଷ୍ଟି । ଏହି ସୃଷ୍ଟି ସଂପଦ ଦ୍ୱାରା ଓଡ଼ିଆ ଗଦ୍ୟ ସାହିତ୍ୟର ଦିଗନ୍ତ ସୁରଭିତ ହୋଇଉଠିଛି । ଏଥିରେ ଇତିହାସ, ନବନ୍ୟାସ, ଜୀବନୀ, ରାଜନୀତି, ମନୋବିଜ୍ଞାନ, ଜଡ଼ବିଜ୍ଞାନ, ପ୍ରାକୃତିକ ଭୂଗୋଳ, ଅଳଙ୍କାର ଓ ଅନ୍ୟାନ୍ୟ ବିଷୟ ସମ୍ବଳିତ ପ୍ରବନ୍ଧମାନ ସନ୍ନିବିଷ୍ଟ ହୋଇଛି ଏବଂ ସର୍ବତୋମୁଖୀ ଶିଶୁର ଶିକ୍ଷାପ୍ରତି ଦୃଷ୍ଟି ଦିଆଯାଇଛି । 'ପ୍ରବନ୍ଧମାଳା' ରାଧାନାଥଙ୍କ ଶିଳ୍ପିମାନସକୁ ପ୍ରଲୁବ୍ଧ କରିଥିଲା । ତେଣୁ ସେ 'ପ୍ରବନ୍ଧମାଳା'କୁ ଶୀର୍ଷସ୍ଥାନ ଦେଇ କହିଥିଲେ—"ପ୍ରାୟ ପ୍ରତ୍ୟେକ ପ୍ରବନ୍ଧ

ଚ୍ଛନ୍ଦମାନଙ୍କର ଅନୁସନ୍ଧିତ୍ସା ଉଦ୍ଦୀପକ ଏବଂ ଦୃଷ୍ଟି ପ୍ରସାରଣୋପଯୋଗୀ ହୋଇଅଛି ଏବଂ ଆମ୍ଭମାନଙ୍କ ମାତୃଭାଷାରେ ଏ ପର୍ଯ୍ୟନ୍ତ ଯେତେଖଣ୍ଡ ଗଦ୍ୟମୟ ପାଠ୍ୟପୁସ୍ତକ ପ୍ରକାଶିତ ହୋଇଅଛି, ପ୍ରବନ୍ଧମାଳା ସେଥି ମଧ୍ୟରେ ଉଚ୍ଚସ୍ଥାନ ପାଇବାକୁ ଯୋଗ୍ୟ । ସୁଶିକ୍ଷକ ହସ୍ତରେ ଏହି ପୁସ୍ତକଦ୍ୱାରା ପାଠାର୍ଥୀମାନଙ୍କର ପ୍ରକୃତ ସାରବାନ ଶିକ୍ଷା ଲାଭ ହୋଇପାରିବ ।''

'ସାହିତ୍ୟ କୁସୁମ'ର ଅତି ଚିତ୍ତାକର୍ଷକ ଓ ନୀତିଉପଦେଶଗର୍ଭକ ସେହି ପ୍ରଥମ ଗଳ୍ପଟି 'ଉଦର ଓ ଅବୟବମାନେ' ଏବେ ବି ସମସ୍ତଙ୍କ ସ୍ମୃତିର ପରିଧିରେ ସ୍ପଷ୍ଟରେଖା ହୋଇ ରହିଯାଇଛି । ସେ ରେଖା କେବେ ହୁଏତ ଲିଭିପାରିବନି । କେଉଟମାନଙ୍କୁ ମାଛ ଧରିବାର ଦେଖିଲେ ଏବେ ବି 'ସାହିତ୍ୟ କୁସୁମ'ର ତିନୋଟି ମାଛର କଥା ବାରମ୍ବାର ମନେପଡ଼େ । ଯେଉଁ 'ଦୀର୍ଘଦୃଷ୍ଟି' ମାଛ ଅନ୍ୟ ମାଛମାନଙ୍କ ସହିତ ଗୁନ୍ଥା ହୋଇ ଶେଷରେ ମଲା—ତା' ପ୍ରତି ଏବେ ବି କରୁଣାରେ ହୃଦୟ ସିକ୍ତ ହୋଇଉଠେ—ଆଖି କୋଣରେ ଲୁହ ଜମିଯାଏ—ଏବେସୁଦ୍ଧା ଅନ୍ତରକୁ ବିମଥିତ କରେ ସେ ସ୍ମୃତି । ପୁଷ୍କରିଣୀରେ ପଦ୍ମଫୁଲର ନୟନମନୋଲୋଭା ରୂପ ଦେଖିଲେ, 'ପଦ୍ମ' କବିତାର ଶେଷ ପଦଟି ମନଗହନରେ ଆନ୍ଦୋଳିତ ହୁଏ—

''ଅନନ୍ତ ମହେଶ୍ୱର ମୋ ପ୍ରାଣ ସାଇଁ
ବୋଲି ରଜୀବ, ସଦା ଥିବ ଅନାଇଁ
ଶିଖାଅ ମୋତେ ଏ ପୁଣ୍ୟ ବ୍ରତ
ତୋର ଆଶିଷେ ପୂରୁ ମୋ ମନୋରଥ ।''

ତେଣୁ ମନେହୁଏ କିଶୋର ବାଳକ ବାଳିକାମାନଙ୍କର ନମନୀୟ ମନକୁ ମଧୁସୂଦନଙ୍କ ସୃଷ୍ଟ ପ୍ରତ୍ୟେକ ବହି ସ୍ୱଦେଶ ପ୍ରେମ, ପିତୃମାତୃଭକ୍ତି, ସୌନ୍ଦର୍ଯ୍ୟ-ବୋଧ ଓ ବିଭୁପରାୟଣତାରେ ଉଦ୍‌ବୁଦ୍ଧ କରୁଥିଲା । 'ପୃଥିବୀ ପ୍ରତି', 'ଜନ୍ମଭୂମି' ଓ 'ମୋ ଜନନୀ' କବିତାରେ ଯଥାକ୍ରମେ ପୃଥିବୀ, ଜନ୍ମଭୂମି ଓ ମାତୃପ୍ରୀତିର ନିଦର୍ଶନ ଦେଖିବାକୁ ମିଳେ । ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ 'ଛନ୍ଦମାଳା ଦ୍ୱିତୀୟ ଖଣ୍ଡ' ଓ 'କବିତାବଳୀ' ଦ୍ୱୟରେ ସନ୍ନିବିଷ୍ଟ କବିତାଗୁଡ଼ିକ ପଢ଼ିବା-

ଦ୍ୱାରା ସେ ଉନ୍ନତ ଚିନ୍ତାରାଜ୍ୟରେ ବିଚରଣ କରିବାକୁ ସମର୍ଥ ହୋଇଯାଏ ।
ତାଙ୍କ ଲେଖନୀରୁ ତେଣୁ ଶିକ୍ଷାଦାନ ପରି ନିଃସରିତ ହୁଏ—

"ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ
ଏ ମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।"

କେବଳ ନିଜ ପାଇଁ ନୁହେଁ; ଏ ଦେଶର ପ୍ରତିଟି ଅର୍ଦ୍ଧବିକଶିତ ଶିଶୁ କଳିମାନଙ୍କ ପାଇଁ ମଧ୍ୟ ସେ ଏହି ଭିକ୍ଷା ପରମେଶ୍ୱରଙ୍କ ନିକଟରେ କରୁଥିଲେ । 'ବାଳବୋଧ', 'ସାହିତ୍ୟ କୁସୁମ', 'ସାହିତ୍ୟ ପ୍ରସଙ୍ଗ' ପରି ପାଠ୍ୟପୁସ୍ତକରେ ମଧ୍ୟ ମଧୁସୂଦନ ନିମ୍ନ ପ୍ରାଥମିକ, ଉଚ୍ଚ ପ୍ରାଥମିକ ଓ ମାଧ୍ୟମିକ ଶ୍ରେଣୀର ବିଭିନ୍ନ ବୟଃଗୋଷ୍ଠୀର ଛାତ୍ରଙ୍କ ଉଦ୍ଦେଶ୍ୟରେ ରଚନା କରିଥିଲେ । ସେ ଶିଶୁକୁ ଭାଷା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଜ୍ଞାନବିଜ୍ଞାନ ରାଜ୍ୟର ଅନନ୍ତ ଦିଗନ୍ତ ସଂପର୍କରେ ସଚେତନ କରାଇ ଦେଇଛନ୍ତି । ତାଙ୍କର ପ୍ରଜ୍ଞାଦୀପ୍ତ ମନ ହିଁ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ସାହିତ୍ୟର ଆବଶ୍ୟକତା ସଂପର୍କରେ ପ୍ରଥମେ ଅବବୋଧ କରିପାରିଥିଲା । ତେଣୁ ମଧୁସୂଦନ ହିଁ ଓଡ଼ିଆ ଶିଶୁ ସାହିତ୍ୟର ପ୍ରଥମ ସାର୍ଥକ ସ୍ରଷ୍ଟା ।

ଶିଶୁ ସାହିତ୍ୟର ସ୍ରଷ୍ଟା ହେଲେହେଁ, ସେ ସାହିତ୍ୟ କେବଳ ଶିଶୁ ବା ଛାତ୍ରମାନଙ୍କ ପାଇଁ ନୁହେଁ, ଶିକ୍ଷକମାନଙ୍କ ପାଇଁ ମଧ୍ୟ ଅଭିପ୍ରେତ ଥିଲା । ଶିକ୍ଷକମାନେ ଛାତ୍ରମାନଙ୍କୁ ଏପରି ଶିକ୍ଷାଦେବେ, ଏପରି ଉନ୍ନତ ଭାବରାଶିରେ ସେମାନଙ୍କୁ ବାଲ୍ୟକାଳରୁ ଉଦ୍‌ବୁଦ୍ଧ କରିବେ ଏବଂ ଏପରି ଚରିତ୍ର ବୀଜ ସେମାନଙ୍କ ହୃଦୟରେ ଉଦ୍ଦୀପ୍ତ କରିବେ, ଯାହାଫଳରେ ସେମାନଙ୍କର ନୈତିକ, ସାମାଜିକ ଓ ଆର୍ଥିକ ଉତ୍କର୍ଷ କ୍ରମେ କ୍ରମେ ସାଧିତ ହୋଇପାରିବ । ତେଣୁ 'ଛନ୍ଦମାଳା'ର 'ବିଦ୍ୟା'ରେ ଅଛି—

"ବିଦ୍ୟା ଅଟଇ ମହାଧନ । ବାଳକେ କର ଉପାର୍ଜନ ।"

ଏବଂ 'ସୁଶୀଳତ' କବିତାରେ—

''ବନପୁଷ୍ପବ ବନ୍ଧୁ ମନେ । ହଂସାରେ ଚଲ ସଯତନେ
ସୁଶୀଳ ଶାନ୍ତ ଯା'ର ପ୍ରାଣ । ଲଭଇ ନିତ୍ୟ ସେ କଲ୍ୟାଣ ।''

× × ×

''ଭଣିବ ସତ୍ୟ ପ୍ରିୟବାଣୀ । ତୋଷିବ ନିତ୍ୟ ସର୍ବପ୍ରାଣୀ ।''

ଏ ନୀତି ଉପଦେଶ କେବଳ ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ନ ଥିଲା; ସର୍ବାଗ୍ରେ ଉଦ୍ଦିଷ୍ଟ ଥିଲା ଶିକ୍ଷକମାନଙ୍କ ପ୍ରତି—ଯେଉଁମାନେ ଗଢିବେ ଏ ଦେଶର ଭାବୀ ନାଗରିକ । ତେଣୁ ମଧୁସୂଦନ ଶିକ୍ଷକମାନଙ୍କୁ ଆଦର୍ଶ ଶିକ୍ଷାପ୍ରଣାଳୀ ସହିତ ପରିଚିତ କରାଇବା ନିମନ୍ତେ 'ଅବଧାନ-ବନ୍ଧୁ' ନାମକ ପୁସ୍ତକ ରଚନା କରିଥିଲେ ।

''ବିହଙ୍ଗେ ଗାଇଲେ ସଙ୍ଗୀତ
ଆହା କି ମନୋହର
ସେ ଗୀତ ଶ୍ରବଣେ ହୃଦୟ
ନାଚଇତେ ମୋହର
ବିହଙ୍ଗ ସଙ୍ଗତେ ବାଳକେ
ଗାଅ ଆନନ୍ଦ ମନେ
ହୃଦୟେ ସ୍ମର ଜଗତ ପିତା
ସୃଷ୍ଟି କାରଣେ''—

ଏହି ପକ୍ଷିସଙ୍ଗୀତ ଶୁଣି ପ୍ରଥମେ କବି ତାଙ୍କ ହୃଦୟ ନାଚଉଠିଛି ଏବଂ ସେ ଆନନ୍ଦବିହ୍ୱଳ ହୋଇ ବାଳକମାନଙ୍କୁ ସେହି ଆନନ୍ଦରେ ଭାଗୀ କରିବା ପାଇଁ ଡାକିଛନ୍ତି । ତାଙ୍କର ରସପୂର୍ଣ୍ଣ ହୃଦୟ ଚିରଦିନ ଶିଶୁର ସରଳତାରେ ପରିପୂର୍ଣ୍ଣ ଥିଲା । ଶିଶୁ-ଗୀତିକାଗୁଡ଼ିକ ସେହିପରି ଶିଶୁସୁଲଭ ସ୍ନେହ, ସାରଲ୍ୟ, ଆନନ୍ଦ, ମାଧୁର୍ଯ୍ୟରେ ଋଦ୍ଧ ଦେଦୀପ୍ୟମାନ । ସେ ଶିଶୁମାନଙ୍କ ପାଇଁ 'ବର୍ଣ୍ଣବୋଧ', 'ଶିଶୁବୋଧ', 'ବିଜ୍ଞାନପାଠ', 'ଅଙ୍କ ପୁସ୍ତକ', 'ସାହିତ୍ୟ ମଞ୍ଜରୀ', 'ସାହିତ୍ୟ କୁସୁମ', 'ସାହିତ୍ୟ ପ୍ରସଙ୍ଗ' ପ୍ରଭୃତି ପାଠ୍ୟପୁସ୍ତକ ରଚନା କରିଥିଲେ ।

ପ୍ରାଚୀନ ଓଡ଼ିଆ ତଥା ସଂସ୍କୃତରେ ଶିଶୁ-ସାହିତ୍ୟ ପଦବାଚ୍ୟ କୌଣସି ବିଷୟ ନ ଥିଲା । ସେତେବେଳେ ଓଡ଼ିଆରେ ବର୍ଣ୍ଣମାଳା ଶିକ୍ଷା ଦେବାଲାଗି

'ଚଉତିଶା' ଖଣ୍ଡରେ ଗୀତି-କବିତା ପରିକଳ୍ପିତ ତଥା ନିୟୋଜିତ ହୋଇଥିଲା । ବର୍ଣ୍ଣ ପରିଚୟ ପରେ ଶିଶୁମାନେ ବଳରାମ ଦାସଙ୍କ 'କମଳ ଲୋଚନ', ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି', ଭକ୍ତଚରଣଙ୍କ 'ମନବୋଧ ଚଉତିଶା', 'କଳାକଳେବର ଚଉତିଶା' ପ୍ରଭୃତି ପାଠ କରୁଥିଲେ । ଏହାର ପରବର୍ତ୍ତୀ ସ୍ତରରେ ଦିନାଇ ଦାସଙ୍କ 'ଗୋପୀଭାଷା', ଜଗନ୍ନାଥ ଦାସଙ୍କ 'ଭାଗବତ', ଦୀନକୃଷ୍ଣଙ୍କ 'ପ୍ରସ୍ତାବସିନ୍ଧୁ' ଓ ତା'ପରେ 'ଛାନ୍ଦଗୀତ', 'ମଥୁରା ମଙ୍ଗଳ', 'ବିଦଗ୍ଧ ଚିନ୍ତାମଣି' ପ୍ରଭୃତି ପ୍ରାଚୀନ କାବ୍ୟ, କିଶୋରସାହିତ୍ୟ ଭାବେ ଆଦୃତ ହେଉଥିଲା । ଏତଦ୍‌ବ୍ୟତୀତ କେତେକ ପ୍ରାଚୀନ କବିଙ୍କ ବିରଚିତ 'ବୋଲି' (ଯାହା 'ଲିଗୃଢ଼ ବୋଲି' ନାମରେ ପରିଚିତ) ମଧ୍ୟ ସେ ଯୁଗରେ ଶିଶୁ-ଉପଯୋଗୀ ସାହିତ୍ୟ ନାମରେ ପରିଗଣିତ ହେଉଥିଲା । ମାତ୍ର ଊନବିଂଶ ଶତାବ୍ଦୀର ଶେଷଭାଗରେ ଯେତେବେଳେ ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗୋବିନ୍ଦ ରଥ ପ୍ରଭୃତି ଶିଶୁ ଉପଯୋଗୀ ପାଠ୍ୟପୁସ୍ତକ ରଚନାରେ ପ୍ରବୃତ୍ତ ହେଲେ, ସେହି ସମୟରୁ ହିଁ ଯଥାର୍ଥତଃ ଆଧୁନିକ ଓଡ଼ିଆ ସାହିତ୍ୟ ତଥା ଶିଶୁ ସାହିତ୍ୟ ରଚନାର ସୂତ୍ରପାତ ହେଲା । ମାତ୍ର ମଧୁସୂଦନଙ୍କ 'ପ୍ରଭାତ', 'ସନ୍ଧ୍ୟା', 'ସୁନ୍ଦର ସଂସାର', 'ସ୍ତବ', 'ଗ୍ରୀଷ୍ମ', 'ବର୍ଷା'ଦି ଋତୁଗୀତ ଓ 'ପରିଶ୍ରମ' ପ୍ରଭୃତି କବିତାଗୁଡ଼ିକ ଶିଶୁ-ଗୀତିକା ଭାବେ ବହୁଳ ପ୍ରସିଦ୍ଧି ଅର୍ଜନ କଲା । ତାଙ୍କ ଶିଶୁ-ପାଠ୍ୟ 'ବର୍ଣ୍ଣବୋଧ' ରଚିତ ହେବା ପୂର୍ବରୁ ଗୋବିନ୍ଦ ରଥଙ୍କ 'ବର୍ଣ୍ଣବୋଧକ' ଓଡ଼ିଶାରେ ସର୍ବତ୍ର ପଠିତ ହେଉଥିଲା ସତ; କିନ୍ତୁ ତାହା ଶିଶୁର ତରଳ ଅନ୍ତରରେ ଉଚ୍ଚ ମନୀଷା ଶକ୍ତି ଭରି ଦେଇ ପାରୁନଥିଲା । ତେଣୁ ମନେହୁଏ ମଧୁସୂଦନ ହିଁ ଜଣେ ସଫଳ ତଥା ଶ୍ରେଷ୍ଠ ଶିଶୁ-ସାହିତ୍ୟିକ ।

ବିଂଶ ଶତାବ୍ଦୀରେ ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ପଦ୍ମଚରଣ ପଟ୍ଟନାୟକ ଓ ମୃତ୍ୟୁଞ୍ଜୟ ରଥ ଶିଶୁ-ସାହିତ୍ୟ ସୃଷ୍ଟି କଲେ । ଗୋପାଳଚନ୍ଦ୍ର ପ୍ରହରାଜ 'ଉତ୍କଳକାହାଣୀ' ଓ 'ଅମ୍ଭ ଜେଜେବାପାଙ୍କ କାହାଣୀ' ସଂକଳିତ କରିବା ସଙ୍ଗେ ସଙ୍ଗେ ଅନେକ ଗୁଡ଼ିଏ ଶିଶୁ-କବିତା ମଧ୍ୟ ରଚନା କରିଥିଲେ । ନନ୍ଦକିଶୋର ଶିଶୁ ଉପଯୋଗୀ କୌତୁହଳ

ଉଦ୍ଦୀପକ ଅଥଚ ଅର୍ଥହୀନ କବିତା ରଚନା କରିଥିଲେ । ତାଙ୍କର 'ସୁନା ପଇତା' କବିତାଟି ଏ ସଂପର୍କରେ ସ୍ମରଣ କରାଯାଇପାରେ । ଏହାଛଡ଼ା ୧୯୨୫ ମଧ୍ୟରେ ରଚିତ ତଥା ପ୍ରକାଶିତ ବିବିଧ ଶିଶୁ-ପାଠ୍ୟପୁସ୍ତକମାନଙ୍କ ମଧ୍ୟରୁ ମୃତ୍ୟୁଞ୍ଜୟ ରଥଙ୍କର 'ରତ୍ନାବଳୀ', ମଧୁସୂଦନ ଦାସଙ୍କ 'ସଚିତ୍ର ବାଳ ମହାଭାରତ', ପଦ୍ମଚରଣ ପଟ୍ଟନାୟକଙ୍କ 'ସୁନାର ଦେଶ', ନୀଳକଣ୍ଠ ଦାସଙ୍କ 'ମହାଭାରତ', 'ପିଲଙ୍କ ରାମାୟଣ', ବାଳକୃଷ୍ଣ କରଙ୍କ 'ଫୁଲଝୁଙ୍କୁଡ଼ି', ବଳରାମ ଦାସଙ୍କ 'ଶିଶୁବୋଧ ରାମାୟଣ' ପ୍ରଭୃତି ପୁସ୍ତକ ଗୁଡ଼ିକର ନାମ ଉଲ୍ଲେଖ-ଯୋଗ୍ୟ ।

ମଧୁସୂଦନଙ୍କ ପ୍ରଥମ ଲେଖା 'ଉତ୍କଳ ଦର୍ପଣ' (୧୮୭୩)ରେ ପ୍ରକାଶିତ ହୋଇଥିଲା ଏବଂ ତାଙ୍କର ଦେହାନ୍ତ ହେଲା ୨୮ । ୧୨ । ୧୯୧୨ରେ । ଏହି ଦୀର୍ଘ ଚାଳିଶଟି ବର୍ଷର ସାରସ୍ୱତ ବିଭବରେ ମଧୁସୂଦନଙ୍କ ସାହିତ୍ୟିକ ଜୀବନ ବର୍ଣ୍ଣାଢ୍ୟ । ମନୁଷ୍ୟ ହୃଦୟ ସିଂହାସନରେ ପ୍ରତିଭାଶାଳୀ ସ୍ରଷ୍ଟା ବା ଶିଳ୍ପୀ କରିବ ଜଡ଼ତା ଓ ଯାନ୍ତ୍ରିକତାର ନୁହେଁ; ଜୀବନର ଅଭିଷେକ—ଜୀବନର ମହନୀୟ ଗୁଣରାଶିର ପ୍ରତିଷ୍ଠା । କବି ମଧୁସୂଦନ ଜୀବନ ସାଗରର ଅତଳ ଗମ୍ଭୀରତାରେ ଅବଗାହନ କରି ଶିଳ୍ପ-ମୁକ୍ତା ଉତ୍ତୋଳନ କରିଥିଲେ । ମୃତ୍ୟୁ ଯନ୍ତ୍ରଣାର ଭିତର ଦେଇ ଜୀବନଗାୟତ୍ରୀ ଜପ କରିଥିଲେ । ତେଣୁ ଶିଶୁ-ଉପଯୋଗୀ କବିତା ଗୁଡ଼ିକରେ ପାଠକ, ଶିକ୍ଷକ-ମଧୁସୂଦନ ଓ ନୀତିବାଦୀ କବିଙ୍କୁ ହିଁ ଦେଖିଥାଏ । ସେ ବହିର୍ଜଗତ ଅପେକ୍ଷା ଓ ମନୁଷ୍ୟର ବ୍ୟାବହାରିକ ଜୀବନର ଚମତ୍କାର ଅପେକ୍ଷା ଅଧିକତର ମାନବ ଆତ୍ମାର କବି । ଜୀବନର ଚିରନ୍ତନ ସତ୍ୟ ଉଦ୍‌ଘାଟନ ଲାଗି ଓ ମାନବ ପ୍ରାଣରେ ଦେବତ୍ୱର ସନ୍ଧାନ ଉଦ୍ଦେଶ୍ୟରେ ତାଙ୍କ ଲେଖନୀ ଅବିରଳ ଭାବରେ ସୃଷ୍ଟିମୁଖର ଥିଲା ।

ମଧୁସୂଦନଙ୍କ ସାରସ୍ୱତ ଉଦ୍ୟାନରୁ ବହୁବିଧ ଫୁଲର ସୁଗନ୍ଧ ଭାସି ଆସୁଥିଲେ ମଧ୍ୟ ଶିଶୁ-ଉପଯୋଗୀ ସାହିତ୍ୟ କୁସୁମ ଅଧିକ ମନଲୋଭା ତଥା ରମଣୀୟ ମନେ ହେଉଥିଲା । ଯେଉଁ ସବୁ ସାହିତ୍ୟ ଶିଶୁର ଜୀବନ ବିକାଶରେ ପ୍ରଥମ ବେଦଧ୍ୱନି ସୃଷ୍ଟି କରୁଥିଲା; ତାହା ଶିଶୁ-ସାହିତ୍ୟ ବ୍ୟତୀତ ଅନ୍ୟ କ'ଣ ହୋଇପାରେ ? ତା'ର ସ୍ରଷ୍ଟା ଶିଶୁ-ସାହିତ୍ୟିକ ନୁହନ୍ତି ତ ଆଉ କ'ଣ

ହୋଇପାରନ୍ତି ? ତେଣୁ ସୌନ୍ଦର୍ଯ୍ୟ ଓ ଜୀବନର କବି ମଧୁସୂଦନ ହିଁ ହୋଇଛନ୍ତି ଶିଶୁ ସାହିତ୍ୟର ପ୍ରଥମ ବୈତାଳିକ । ସୌନ୍ଦର୍ଯ୍ୟ ଓ ଜୀବନ ସହିତ ଶିଶୁକୁ ସାମିଲ କରି ତାକୁ ନୂଆ ଦିଗନ୍ତର ସଂଧାନ ଦିଏ ତାଙ୍କର ଶିଶୁ, ଉପଯୋଗୀ ପ୍ରଥମ ଅର୍ଘ୍ୟ—'ବର୍ଣ୍ଣବୋଧ' । ତେଣୁ ସାମୁଦ୍ରିକ ଝଡ଼ ଓ ବାତ୍ୟା ବିକ୍ଷୋଭ ସତ୍ତ୍ୱେ ଅନିର୍ବାଣ ଓ ଅନଶ୍ୱର ଦୀପସ୍ତମ୍ଭ ଭଳି ଆମର ସାରସ୍ୱତ-ବାତାବରଣରେ ଅସଂଖ୍ୟ ବିଦଗ୍ଧ ପାଠକଙ୍କ ପାଇଁ ମଧୁସୂଦନ ରାଓଙ୍କ ପ୍ରତିଭାର ଜ୍ୟୋତି-ଶିଖା ଆଜି ଦିଗ୍‌ଦର୍ଶକ । ସେ ଶିଖା କିଛି ଅନୁଭବ କରିବାର ଶିକ୍ଷା—ସେ ଦୃଷ୍ଟି କିଛି ପ୍ରେରଣା ଦେବାର, ସୌନ୍ଦର୍ଯ୍ୟ ଓ ଜୀବନର ଦର୍ଶନ । □□□

# ମଧୁସୂଦନଙ୍କ ଅନୁବାଦ-ସାହିତ୍ୟ

ସରସ୍ୱତୀ ସ୍ୱାଇଁ

ପଞ୍ଚମ ବାର୍ଷିକ ଛାତ୍ରୀ, ବାଣୀବିହାର

ଅନୁବାଦ ଏକ ସୃଜନ କଳା । ମୌଳିକ ରଚନା ପରି ଅନୁବାଦ ମଧ୍ୟ ପ୍ରତିଭାର ଅପେକ୍ଷା ରଖେ । ଅନୁବାଦର କଳାକୁଶଳତା ସୂକ୍ଷ୍ମ ଅବବୋଧ ଓ ପ୍ରଜ୍ଞାଦୀପ୍ତ ଅଧ୍ୟବସାୟ ଉପରେ ଅନୁବାଦର ସୌକର୍ଯ୍ୟ ନିର୍ଭର କରେ । ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟର ପ୍ରାରମ୍ଭରେ ଅନୁବାଦ ସାହିତ୍ୟର ପରିପ୍ରକାଶ ଲକ୍ଷ୍ୟ କରାଯାଇପାରେ । ଅନୁବାଦ ମୁଖ୍ୟତଃ ତିନି ଭାଗରେ ବିଭକ୍ତ—(୧) ପୂର୍ଣ୍ଣାନୁବାଦ (୨) ଅଂଶାନୁବାଦ (୩) ଅନୁଗମନ ବା ଅନୁସରଣ । ଓଡ଼ିଶାରେ ଅନୁବାଦରୁ ହିଁ ସାହିତ୍ୟ ସୃଷ୍ଟିର ଜୀବନ ପ୍ରଭାତ ସମ୍ଭବ ହୋଇପାରିଛି । ଏହି ଅନୁବାଦର ପ୍ରଥମ ସେନାପତି ହେଉଛନ୍ତି ଶୂଦ୍ରମୁନି ସାରଳାଦାସ । ସାରଳାଦାସଙ୍କ ମହାଭାରତ ଓ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ ଯଥାକ୍ରମେ ବ୍ୟାସଦେବଙ୍କ ମହାଭାରତ ଓ ବାଲ୍ମୀକିଙ୍କ ରାମାୟଣର ଅମୃତମୟ ପରିଣତି । ଯଦିଓ ଏହି ଅନୁଗମନ ପଦ୍ଧତିରେ ମଧ୍ୟ ଏହି ମାଟିର କବିପୁଙ୍ଗବ ସାରଳାଙ୍କ ସ୍ୱକୀୟତା ଅନନ୍ୟ ଓ ଅପୂର୍ବ । ଅନୁସରଣ କାଳରେ ସ୍ରଷ୍ଟାମାନସ ମୂଳ ବିଷୟସହିତ ସ୍ୱକୀୟ ଚିନ୍ତାଧାରା ଗୁମ୍ଫନ କରିବାର ସ୍ୱାଧୀନତା ରହିଥାଏ । ଏ ପରିପ୍ରେକ୍ଷୀରେ ଜଗନ୍ନାଥଙ୍କ ଓଡ଼ିଆ ଭାଗବତ ସଂସ୍କୃତ ଭାଗବତର ଏକ ସାର୍ଥକ ଅନୁବାଦ । ରୀତି ଯୁଗର କବି ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ କାବ୍ୟ କବିତାରେ ମାଘ, ଭାରବୀ ଓ ଶ୍ରୀହର୍ଷ ପ୍ରମୁଖ କବିଙ୍କ ବିଭିନ୍ନ କାବ୍ୟର ଶ୍ଳୋକର ଭାବାନୁବାଦ ଦେଖିବାକୁ ମିଳେ । ଏଣୁ ପ୍ରାଚୀନ ସାହିତ୍ୟରେ ଅନୁବାଦର ବିଭିନ୍ନ ସ୍ୱରୂପ ଦୃଷ୍ଟିଗୋଚର ହୋଇଥାଏ ।

ଆଧୁନିକ ଯୁଗରେ ବିଶେଷତଃ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଫଳରେ ଏ ଦେଶରେ ଯେଉଁ ନୂତନ-ଯୁଗ-ସାହିତ୍ୟର ଅଭ୍ୟୁଦୟ ହେଲା, ତାର ଆଦିରୂପ ସେହି ଅନୁବାଦର ସରହଦ ଭିତରେ ଲକ୍ଷ୍ୟ କରାଯାଇପାରେ । ୧୮୬୬ ସାଲରେ ଓଡ଼ିଆ ଜାତୀୟଜୀବନର ସ୍ପନ୍ଦିକ ନିଦ୍ରା ଭାଙ୍ଗିଯାଇଛି । ଓଡ଼ିଆ ଭାଷା ଆନ୍ଦୋଳନର ଅପପ୍ରଭାବରେ ଓଡ଼ିଆର ପ୍ରାଣପୁରୁଷ ଜାଗି ଉଠିଛି । ଏହି ଘଟଣାର ପରେ ପରେ ଓଡ଼ିଆ ସାହିତ୍ୟରେ ଦେଖାଦେଇଛନ୍ତି ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରମୁଖ ଯୋଗଜନ୍ମା ବାଣୀ ସାଧକଗଣ ।

ମଧୁସୂଦନ ଅନୁବାଦ ଯୁଗର ଲେଖକମାନଙ୍କ ପରି ବଙ୍ଗଳାରୁ ଅନୁବାଦ କରିନାହାନ୍ତି, ସେ ଅନୁବାଦ ପାଇଁ ଇଂରେଜୀ ଓ ସଂସ୍କୃତ ସାହିତ୍ୟରୁ ବିଷୟବସ୍ତୁ ନିର୍ବାଚନ କରିଛନ୍ତି । ତାଙ୍କର 'ନିର୍ବାସିତର ବିଳାପ' ଓ 'ଆତ୍ମ ସମର୍ପଣ' ଇଂରାଜୀରୁ ଅନୂଦିତ । ତାଙ୍କର 'ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ', 'ସୀତା ବନବାସ', 'ଶ୍ରୀରାମ ବନବାସ', 'ବାଳରାମାୟଣ', 'ଉତ୍ତର-ରାମଚରିତ' ସଂସ୍କୃତ ସାହିତ୍ୟରୁ ଅନୁସୃତ ବା ଅନୁବାଦିତ । ଭକ୍ତକବିଙ୍କ ଅନୁବାଦର ବିଶେଷତ୍ୱ ହେଉଛି ସେ କେତେକ କ୍ଷେତ୍ରରେ ଆକ୍ଷରିକ ଅନୁବାଦ କରିଛନ୍ତି । ତାଙ୍କର ଉତ୍ତର-ରାମଚରିତ ଏହାର ଏକ ଦୃଷ୍ଟାନ୍ତ । ଏପରି କଲେ ବହୁ ସମୟରେ ମୂଳରଚନାର ସୌନ୍ଦର୍ଯ୍ୟ ବ୍ୟାହତ ହୁଏ । ଏଣୁ ଅନୁକରଣମୂଳକ ଅନୁବାଦକୁ ମଧୁସୂଦନ ଏକ ସୃଷ୍ଟିଧର୍ମୀ ବ୍ୟାପାର ଭାବେ ଗ୍ରହଣ କରିଥିଲେ ।

ସେ ଶୁଦ୍ଧ ମାର୍ଜିତ ଛନ୍ଦ ଓ ଗୁରୁଗମ୍ଭୀର ଭାଷା ପ୍ରୟୋଗରେ ଅନୁବାଦ ମଧ୍ୟରେ ମଧ୍ୟ ଏକ ଅପୂର୍ବ ରସଜଗତ ସୃଷ୍ଟି କରିପାରିଛନ୍ତି । ମଧୁସୂଦନଙ୍କ ସୃଜନଧର୍ମୀ ଅନୁବାଦକୁ ଏକ ଚକ୍ରକଳ୍ପ ସହିତ ତୁଳନା କରାଯାଇପାରେ । ସୂର୍ଯ୍ୟ ଯେପରି ସ୍ୱୀୟ କିରଣ ସଂପାତରେ ସମୁଦ୍ର, ହ୍ରଦ, ନଦୀ, ନାଳ ପ୍ରଭୃତି ଜଳାଶୟରୁ ଜଳ ଶୋଷିନିଏ, ତାହା ଜଳୀୟବାଷ୍ପ ଆକାରରେ ଆକାଶମାର୍ଗରେ ଅବିରତ ଘୂରି ବୁଲୁଥାଏ; କିନ୍ତୁ ଯେତେବେଳେ ତାହା ଶୈତ୍ୟର ସଂସ୍ପର୍ଶରେ ଆସେ, ତାହା ବୃଷ୍ଟିଆକାରରେ ନିପତିତ ହୁଏ, ଏହି ବୃଷ୍ଟିଜଳ ଓ ପୂର୍ବୋକ୍ତ

ଜଳାଶୟମାନଙ୍କର ଜଳ ଏକ ନୁହେଁ, ଯଦିଓ ଉଭୟଙ୍କର ଗୁଣଧର୍ମ ଏକ; ପୁଣି ଉଭୟ ଜଳଚକ୍ରର ବିଭିନ୍ନ ପର୍ଯ୍ୟାୟ ମାତ୍ର; ଠିକ୍ ସେହିପରି ମଧୁସୂଦନଙ୍କ ଅନୂଦିତ ରଚନା ଓ ମୂଳ ରଚନା ଯଦିଓ ଏକ, ତଥାପି ଭାଷାନ୍ତରିତ ରଚନା ସ୍ଥାନୀୟ ରଙ୍ଗ, ସ୍ଥାନୀୟ ଚିନ୍ତାକଳ୍ପ ଓ ସ୍ଥାନୀୟ ଅଭିବ୍ୟକ୍ତିରେ ସିକ୍ତ ହେତୁ ଏକ ହୋଇ ପାରେନା ।

'ନିର୍ବାସିତର ବିଳାପ' ୧୮୭୩ ମସିହାରେ ଉଇଲିୟମ କାଉପରଙ୍କ 'ଆଲେକଜାଣ୍ଡର ସେଲକାର୍କ' କବିତାର ଅନୁସରଣରେ ରଚିତ । ଇଂରାଜୀ କବିତାର ଅନୁକରଣରେ ରଚିତ ହେଲେ ମଧ୍ୟ ଏହାର ମୌଳିକତା ଅଛି । ଏ କବିତାର ଭାବସଂପଦ କବିମାନସର ଏକାନ୍ତ ଅନୁକୂଳ ଥିଲା । ପ୍ରଥମେ କବିତାରେ ନିଃସଂଗତାବୋଧର ଚିତ୍ର ପ୍ରଦତ୍ତ ହୋଇଛି । କବିଙ୍କ ଭାଷାରେ—

"ମୋ କର୍ଣ୍ଣ ଶବ୍ଦ ଯେବେ ହୁଏ କାହାର
ତମକ ପଡ଼େ ଯେହ୍ନେ ଆଉ କାହାର"

ତତ୍ପରେ ନିର୍ବାସିତର ମନରେ ଆତ୍ମୀୟସ୍ୱଜନ, ସାମାଜିକ ପରିବେଶ, ପରିବେଷ୍ଟିତ ସମାଜର କଲ୍ୟାଣକାମୀ ରୂପ, ଧର୍ମାଶ୍ରୟୀ ଜୀବନଧାରାର ପ୍ରଶସ୍ତି ଓ ସ୍ୱଦେଶ ଚିନ୍ତା ପ୍ରଦତ୍ତ ହୋଇଛି । ପରିଶେଷରେ ମଙ୍ଗଳମୟ ଈଶ୍ୱରଙ୍କ ସ୍ଥିତି ଓ ବିଭୂଦୟାର ଉଦାର ରୂପର ଅବତାରଣା କରାଯାଇଛି । ଯଥା—

"ଅଛନ୍ତି ସର୍ବସ୍ଥଳେ ଜଗଦୀଶ୍ୱର
ଦୟାମୟ ଫେଡ଼ିବେ ଦୁଃଖ ମୋହର ।
ଈଶ୍ୱର ଦୟା ଆହା କିବା ଉଦାର
ଲଘୁ କରଇ ଦୁଃଖୀ ହୃଦୟଭାର ।"

କବିଙ୍କ ଉପସ୍ଥିତ ଭଗବତ୍‌ବୋଧ ଏ କବିତାର ଲକ୍ଷଣୀୟ ବିଷୟ । ଅନୁବାଦ କବିତା ମଧ୍ୟରେ ଏହା ଅଗ୍ରଜ ଅଟେ ।

କବି ମଧୁସୂଦନଙ୍କ ପ୍ରଥମ ସଂସ୍କୃତ ଅନୂଦିତ କବିତା 'ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ' । ଏହା ୧୮୭୩ ମସିହାରେ କାଳିଦାସଙ୍କ ବିରଚିତ 'ରଘୁବଂଶ'ର ତ୍ରୟୋଦଶ ସର୍ଗର ଏକ ମନୋଜ୍ଞ ଅନୁବାଦ । ଏଥିରୁ କେତେକ

ଶ୍ଳୋକ କବି ଇଚ୍ଛା ସହକାରେ ଅନୁବାଦ କରିନାହାନ୍ତି । ନବମ ଶ୍ଳୋକରେ କାଳିଦାସ ସମୁଦ୍ରକୁ ଏକ କାନ୍ତା ସମ୍ଭୋଗ ବ୍ୟାପାରରେ ନିପୁଣ ନାୟକ ଓ ନଦୀମାନଙ୍କୁ ପ୍ରଗଲ୍‌ଭ ଅଧର-ସୁଧା-ଦାନ-କାରିଣୀ ନାୟିକାରୂପରେ କଳ୍ପନା କରିଛନ୍ତି । ସେମାନଙ୍କ ଅଧର ବିନିମୟର ଚିତ୍ର ଅଙ୍କନ କରିଛନ୍ତି, ଏହା ମଧୁସୂଦନଙ୍କ ବ୍ୟକ୍ତିମାନସରେ ଗ୍ରହଣୀୟ ହୋଇ ନପାରେ । ଅଠଷଠି ପଦରେ ପୁଷ୍ପକବିମାନର ଅବତରଣ ପର୍ଯ୍ୟାୟରେ କାଳିଦାସ ଅଧିଷ୍ଠାତ୍ରୀ ଦେବତାଙ୍କ ଅଭିଳାଷକୁ ଅବଗତ ହୋଇଥିବା ପୁଷ୍ପକବିମାନ ଆକାଶରୁ ଅବତରଣ କଲାବୋଲି କହିଛନ୍ତି; କିନ୍ତୁ ମଧୁସୂଦନ କହିଛନ୍ତି—

"ନିର୍ଦ୍ଦେଶନ୍ତେ ରାମ ଦେବ ବିମାନ
ଇଚ୍ଛା ଜାଣି ବେଗେ ଉଲ୍‌କା ସମାନ
ତାରା ପଥୁଁ ଖସେ ଅବନୀତଳ
ଅନନ୍ତର ଦେଶ ଦିଶେ ଉଜ୍ଜ୍ୱଳ ।"

୭୪ ତମ ପଦରେ କପିସେନାମାନଙ୍କର ହସ୍ତୀ ପୃଷ୍ଠରେ ଆରୋହଣ କଥା ମଧୁସୂଦନ ଯାହା ବର୍ଣ୍ଣନା କରିଛନ୍ତି, ତାହାକୁ ମୂଳକବିତା ସହିତ ତୁଳନା କଲେ ମଧୁସୂଦନଙ୍କ ଅନୁବାଦଗତ ବୈଶିଷ୍ଟ୍ୟ ଉପଲବ୍‌ଧି ହୁଏ ।

କାଳିଦାସ—"ତେଷ୍ୱ କ୍ଷରତ୍ସୁ ବହୁଧା ମଦ ବାରିଧାରାଃ
ଶୈଳାଧିରୋହଣ ସୁଖାନ୍ୟପଲେଭିରେତେ"

ମଧୁସୂଦନ— "ମଦ ବାରି ଧାରା ଯେ ଗଣ୍ଡୁ କ୍ଷରେ
ଗଇନ୍ଦ୍ରେ ଯେହ୍ନେ ନିର୍ଝର
ପରିଚିତ ଗିରି ଆରୋହଣ ସୁଖ
ଲଭିଲେ ତହିଁ ବାନର ।"

କାଳିଦାସଙ୍କ କବିତାରେ ଯାହା ସୂଚନା ଆକାରରେ ଦିଆଯାଇଥିଲା, ତାକୁ ମଧୁସୂଦନ ଅଧିକ ମୁକୁଳା କରିଦେଲେ । କାରଣ ସେ ଏହାକୁ ଏକ ପାଠ୍ୟପୁସ୍ତକ ରୂପେ ରଚନା କରିଥିଲେ । ତେଣୁ ଛାତ୍ରମାନଙ୍କର ବୋଧଗମ୍ୟ ହେବା ଥିଲା ତାଙ୍କର କାମ୍ୟ ।

'ଜନ୍ମମରଣ' କବିତା ସାର୍ ଉଇଲିୟମ୍ ଜୋନ୍ସଙ୍କ ଏକ ଇଂରେଜୀ କବିତାର ଅନୁବାଦ । 'To an infant' କବିତାର ଦୁଇଧାଡ଼ିକୁ ମଧୁସୂଦନ 'ଜନ୍ମମରଣ'ର ପ୍ରଥମ ଛଅ ଧାଡ଼ିରେ ପ୍ରକାଶ କରିଅଛନ୍ତି । ଶିଶୁ ଭୂମିଷ୍ଠ ହେଲା ମାତ୍ରେ କ୍ରନ୍ଦନ କରେ; କିନ୍ତୁ ପିତାମାତା ଓ ଅନ୍ୟାନ୍ୟ ପରିଜନ ଆନନ୍ଦିତ ହୁଅନ୍ତି । ଏଣୁ ଶିଶୁ ଉତ୍ତର ଜୀବନରେ ଏପରି କାର୍ଯ୍ୟ କରିବା ଉଚିତ ଯେ ଦେହର ଅନ୍ତିମ ଶଯ୍ୟାରେ ଆଖି ବୁଜିବାବେଳେ ତାର ଚତୁର୍ଦ୍ଦିଗରେ ଥିବା ଜନସାଧାରଣ ଅଶ୍ରୁପାତ କରିବେ ।

'ସୀତା ବନବାସ' ମଧ୍ୟ ମଧୁସୂଦନଙ୍କର ଏକ ଅନୁବାଦମୂଳକ ରଚନା । ରାମାୟଣ 'ଉତ୍ତରକାଣ୍ଡ'ର ଷଷ୍ଠଦଶ ସର୍ଗର ଉପଜୀବ୍ୟ । କବିତାର ଆରମ୍ଭ ହୋଇଛି ସୌମିତ୍ରିଙ୍କର ଭାଗୀରଥୀ-ତୀରରେ ବୈଦେହୀଙ୍କୁ ପରିତ୍ୟାଗ କରିବା ପର୍ଯ୍ୟାୟରୁ । ଲକ୍ଷ୍ମଣଙ୍କ ରଥ ଲମ୍ବଚଳରୁ ସୀତା ହୋଇଛନ୍ତି ଭୂପତିତା । ଏଠାରେ ରଘୁବଂଶର ପ୍ରଭାବ ସ୍ପଷ୍ଟ । ଲକ୍ଷ୍ମଣଙ୍କଠାରୁ ସେହି ଅପମାନ ସୂଚକ କଥା ଶୁଣିବା ସଙ୍ଗେ ସଙ୍ଗେ ପ୍ରବଳ ତୋଫାନରେ ଲତାଟି ଯେପରି ଭୂମିରେ ଲୋଟିଯାଏ ଏବଂ ତହିଁରୁ ଫୁଲମାନ ଝଡ଼ିପଡ଼େ । ସେହିପରି ସୀତା ଭୂମିରେ ଲୋଟିଗଲେ, ତାଙ୍କ ଦେହରୁ ଭୂଷଣମାନ ଖସି ଭୂଇଁରେ ପଡ଼ିଗଲା ।

ମଧୁସୂଦନଙ୍କ ଭାଷାରେ—

"ହେଲା ସେ ରଥ ସନ୍ଧ୍ୟା ଦୃଷ୍ଟି ଅଗୋଚର
ପତିପ୍ରାଣା ଜାନକୀ ହେଲେ ମୂର୍ଚ୍ଛିତ
ବାତାହତ କନକ ପ୍ରତିମା ପରି
ପଡ଼ିଲେ ମହୀତଳେ ରଘୁ ସୁନ୍ଦରୀ ।"

ରଘୁବଂଶର ପ୍ରଭାବ ଏଥିରେ ଅଧିକାଂଶ ସ୍ଥାନରେ ପଡ଼ିଛି । ୧୮୮୫ ସାଲ ବେଳକୁ ମଧୁସୂଦନ 'ଉତ୍ତର ରାମଚରିତ' ଅନୁବାଦ ଆରମ୍ଭ କରିଥିଲେ । 'ଋଷିକୁମାର ଦ୍ୱୟଙ୍କର ଆଳାପ' ଶିରୋନାମାରେ ଏହାର କିୟଦ୍ ଅଂଶ ପ୍ରକାଶିତ ହୋଇଥିଲା । ତତ୍ପରେ ସେ ପଞ୍ଚମ ଅଙ୍କରେ 'ହଦର୍ପ ପଦ ବିକ୍ଷେପରେ ଲବର ସଭାର ପ୍ରବେଶ' ପର୍ଯ୍ୟନ୍ତ ଅନୁବାଦ କରିଥିଲେ ।

ଏ ଅନୁବାଦ ମଧ୍ୟରେ ମଧୁସୂଦନଙ୍କ ଗୁରୁଗମ୍ଭୀର ଭାଷାକୁ ଲକ୍ଷ୍ୟ କରିଯାଇପାରେ । ସେ ଭବଭୂତିଙ୍କ "ଉତ୍ତର ରାମଚରିତମ୍"ର ଆକ୍ଷରିକ ଅନୁବାଦ କରିଛନ୍ତି ।

ଭବଭୂତି—ଇଦଂ ଗୁରୁଭ୍ୟଃ ପୂର୍ବେଭ୍ୟୋ ନମୋବାକଂ ପ୍ରଶାସ୍ମହେ
ବିନ୍ଦେମ ଦେବତାଂ ବାଚମମୃତାମାତ୍ମନଃ କଳାମ ।"

ମଧୁସୂଦନ—"ବାଲ୍ମୀକି ଆଦି ପୂର୍ବ କବି । ତାହାଙ୍କୁ ଗୁରୁ ଅନୁଭବି ।।
ପ୍ରଣମି ତାଙ୍କୁ ଭକ୍ତିଭରେ । ମାଗଇ ଏହି ମହାବରେ ।।
ଅମୃତ ଭାବ ରସେ ଢଳା । ବାଗଦେବୀ ବାଣୀ ବ୍ରହ୍ମକଳା ।।
କରୁଣାକର ମୋର ହୃଦେ । ସନ୍ତତ ବିରାଜନ୍ତୁ ମୁଦେ ।।"

ଉଭୟଙ୍କୁ ମିଶାଇ ପାଠକଲେ ମଧୁସୂଦନ, ଭବଭୂତିଙ୍କ ବଡ଼ ନିଷ୍ଠାର ସହିତ ଅନୁକରଣ କରିଥିଲେ ପରି ମନେହୁଏ । ଏ ଅନୁବାଦର ଭାଷାସୌକର୍ଯ୍ୟ ପ୍ରତି ସେ ସର୍ବଦା ଦୃଷ୍ଟି ଦେଇଛନ୍ତି । ମଧୁସୂଦନଙ୍କ "ଉତ୍ତର ରାମଚରିତ" ଭବଭୂତିଙ୍କ ଲେଖାର ଆକ୍ଷରିକ ଅନୁବାଦ ହୋଇପାରେ, ହେଲେ ଏଥିରେ ସେ ନିଜର ମୌଳିକତା ପ୍ରଦର୍ଶନ କରିପାରିନାହାନ୍ତି ।

ମଧୁସୂଦନ ରାଓ ମୁଖ୍ୟତଃ ଗୀତି କବି । ସେ କୌଣସି କାବ୍ୟ ରଚନା କରିନାହାଁନ୍ତି । ଅଥଚ କେତୋଟି ଦୀର୍ଘ ପୌରାଣିକ କବିତା ରଚନା କରିଥିବାର ଦେଖାଯାଏ । ମାତ୍ର ତାଙ୍କର ଶିଳ୍ପୀମାନସ ତାହା ଗ୍ରହଣ କରିଥିଲା ପରି ମନେହୁଏ ନାହିଁ । ଫଳରେ "ବାଳ ରାମାୟଣ" ମଧ୍ୟ ଅସଂପୂର୍ଣ୍ଣ ରହିଛି । ଏହାର ଶିରୋନାମାରୁ ଏହା ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ସୂଚିତ । ମଧୁସୂଦନ ବାଳରାମାୟଣର ବିଷୟ ବିନ୍ୟାସ ଓ ପରିକଳ୍ପନାରେ ବାଲ୍ମୀକି ରାମାୟଣ ଅନୁସରଣ କରିଛନ୍ତି । ବିଶେଷକରି ଶ୍ରୀ ରାମଚନ୍ଦ୍ରଙ୍କ ବାଳସୁଲଭ ଘଟଣାବଳୀ ଏହାର ମୁଖ୍ୟ ବିଷୟ । ପ୍ରଥମ ଅଧ୍ୟାୟରେ କବି ଅଯୋଧ୍ୟା ନଗରୀର ମନୋହରକାରୀ ଦୃଶ୍ୟାବଳୀ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଦଶରଥ ରାଜାଙ୍କର ପୁତ୍ରଲାଭ ବିଷୟରେ ଉତ୍ଥାପନ କରିଛନ୍ତି । ଏଠାରୁ ଆରମ୍ଭକରି କବି ଅଷ୍ଟମଅଧ୍ୟାୟରେ ବିବାହ କାର୍ଯ୍ୟ ସମ୍ପନ୍ନ କରି କାବ୍ୟଟି ସମାପ୍ତ କରିଛନ୍ତି ।

ମଧ୍ୟରେ ଶ୍ରୀରାମଚନ୍ଦ୍ର, ଆଉ ଲକ୍ଷ୍ମଣଙ୍କର ଧନୁର୍ଗୁଣ ସମ୍ପର୍କରେ ମଧ୍ୟ ବହୁତ ଆଖ୍ୟା ପ୍ରଦାନ କରିଛନ୍ତି । ଶେଷରେ ଜନକ ନନ୍ଦିନୀ ସୀତାଙ୍କୁ ବିବାହକରି ଫେରିବା ସମୟରେ ଅଯୋଧ୍ୟାର ଶୋଭା ବର୍ଣ୍ଣନ ହୋଇଛି । ଅଯୋଧ୍ୟା ହୋଇଛି ପତାକାମାଳିନୀ । ଏହିପରି ବିଭିନ୍ନ ବିଷୟରେ ଉପସ୍ଥାପନ କରି କବି ମଧୁସୂଦନ ଏହାର ସମାପନ କରିଛନ୍ତି ।

"ପ୍ରଣୟର ଅଦ୍ଭୁତ ପରିଣାମ" ଏକ ବିଦେଶୀ ଗଳ୍ପର ଅବଲମ୍ବନରେ ରଚିତ । ପ୍ରିୟରଞ୍ଜନ ସେନ ଏହାକୁ ଏକ ସିସିଲୀୟ କାହାଣୀର ଅବଲମ୍ବନରେ ରଚିତ ବୋଲି କହିଛନ୍ତି । ଏ ଗଳ୍ପର କଥାବସ୍ତୁ ଏକ ରୋମାଞ୍ଚକର ପରିବେଶ ମଧ୍ୟ ଦେଇ ଗତି କରିଅଛି । ଏ ଗଳ୍ପରେ ପ୍ରଣୟର ପରିଣାମ ଅଦ୍ଭୁତ ହେଲେହେଁ ପ୍ରେମ କେଉଁଠାରେ କଳଙ୍କିତ ହୋଇନାହିଁ । ହେନରୀଙ୍କର ରାଣୀର ଆନ୍ତରିକତା ସାଙ୍ଗକୁ ମାର୍ଟିଲ୍ ତାଙ୍କର ପାତିବ୍ରତ୍ୟର ବିଶ୍ୱାସ ଓ ନିଷ୍ଠା ହେତୁ ଶୁଦ୍ଧ ସୁବର୍ଣ୍ଣ ପରି ପ୍ରେମ ଦୀପ୍ତିମନ୍ତ ହୋଇଅଛି । ଏଥିରେ ଆବିଳତା ପରିଲକ୍ଷିତ ହୁଏ ନାହିଁ । ବରଂ ପରିସ୍ଥିତିର ଦୁର୍ଲଙ୍ଘନୀୟ ଘୃପରେ ବିଡ଼ମ୍ବିତ ହେଲେହେଁ ସ୍ୱାର୍ଥ ତ୍ୟାଗଦ୍ୱାରା ମହିମାମଣ୍ଡିତ ହୋଇପାରିଛି । ଏଣୁ ମଧୁସୂଦନ ଆବିଳତାଶୂନ୍ୟ ନିର୍ମଳ ପ୍ରେମର ପରାକାଷ୍ଠା ଏ ଗଳ୍ପରେ ଦେଖାଇବାକୁ ଚେଷ୍ଟା କରିଛନ୍ତି । ଏ ପ୍ରେମରେ ଅଶ୍ଳୀଳତା ନାହିଁ, ଏଥିରେ ସୁରୁଚି ଓ ସୁନୀତିର ଅବତାରଣା କରାଯାଇଛି ।

ଏହା ବ୍ୟତୀତ ମଧୁସୂଦନ ଇଂରାଜୀରୁ ନଅଟି ପ୍ରବନ୍ଧ ଓଡ଼ିଆକୁ ଅନୁବାଦ କରିଛନ୍ତି । ସେଗୁଡ଼ିକ ହେଲା (କ) ରାଣୀ ଦୁର୍ଗାବତୀ, (ଖ) ଲିସ୍‌ବନ ଭୂମିକମ୍ପ, (ଗ) ବୁଦ୍ଧଦେବ, (ଘ) ସାର୍ ଆଇଜାକ୍ ନିଉଟନ୍, (ଙ) ଉଲ୍‌କାପିଣ୍ଡ, (ଚ) ବାୟୁରାଶି, (ଛ) ସୂର୍ଯ୍ୟ, (ଜ) ଚନ୍ଦ୍ର ଓ ତାରା, (ଝ) ନେପୋଲିୟନ, ଯଥାକ୍ରମେ Eliot's History of India Vol. Vi, Penny Magazine, Marx muller's Chipp from German workshop, Chamber's Biography, Londner's museum of Sciences, British Quarterly Review,

Hershel's Popular treates on Science, M.Culloch's Course of Reading, The Nepoleon Dynastyରୁ ଅନୁବାଦିତ ହୋଇଛି । ଚନ୍ଦ୍ର ଓ ତାରା ଓ ସୂର୍ଯ୍ୟ ଆଖ୍ୟାୟିକା ଦୁଇଟି ବିଭିନ୍ନ ବୈଜ୍ଞାନିକ ମତ ନେଇ ରଚିତ । କିନ୍ତୁ ଭାଷା ଓ ବିଷୟ ବିନ୍ୟାସ ପରିପାଟୀରୁ ମୌଳିକତା ଧର୍ମୀ ଚଳୁରୂପେ ମନେହୁଏ । ଏହି କପୋଳକଳ୍ପିତ ଆଖ୍ୟାୟିକାର ଅନ୍ତରାଳରେ ଚନ୍ଦ୍ର, ସୂର୍ଯ୍ୟ ଓ ତାରାଙ୍କ ମଧ୍ୟରେ ସୁନ୍ଦର ସୁନ୍ଦର ବୈଜ୍ଞାନିକ ତତ୍ତ୍ୱ ନିହିତ ।

ଭଗବତ୍ ଭକ୍ତି ଥିଲା ମଧୁସୂଦନଙ୍କର ସହଜାତ ସୂକ୍ଷ୍ମ ପ୍ରବୃତ୍ତି । ମଧୁ-ମାନସ ଏହି ଭୂମାର ଉପଲବ୍ଧିରେ ଉନ୍ମତ୍ତ ଓ ଆନନ୍ଦମୟ । ମଧୁସୂଦନଙ୍କ ଅନୁବାଦ ଗୁଡ଼ିକ ଭିତରେ ଏକ ସୃଷ୍ଟିଧର୍ମୀକଳାର ମହିମାମୟ ପରିପ୍ରକାଶ ଲକ୍ଷ୍ୟ କରାଯାଇପାରେ । ଆଧୁନିକ କାଳରେ ଓଡ଼ିଆରେ ଅନୁବାଦକୁ ମଧୁସୂଦନହିଁ ପ୍ରଥମେ ସାରସ୍ୱତ ମହିମାରେ ବିମଣ୍ଡିତ କରିଯାଇଛନ୍ତି । ଏଣୁ ଓଡ଼ିଆ ସାହିତ୍ୟରେ ଅନୁବାଦ ଇତିହାସରେ ମଧୁସୂଦନଙ୍କ ନାମ ଏକାନ୍ତ ସ୍ମରଣୀୟ । □□□

# ‘ଶିବ’ର ଉପାସକ : ମଧୁସୂଦନ

ଶ୍ରୀ ବଭ୍ରୁଦତ୍ତ ଦାସ

ଚତୁର୍ଥ ବର୍ଷ ଓଡ଼ିଆ ପ୍ରଜ୍ଞାନ ଗ୍ରନ୍ଥ

"ପ୍ରାଜ୍ଞୋ ବା ଯଦି ବା ମୂର୍ଖଃ
ସାଧନୋ ନିର୍ଦ୍ଧନୋଽପିବା
ସର୍ବକାଳ ବଶଂ ଯାତି
ଶୁଭାଶୁଭ ସମନ୍ୱିତଃ ।" (ଶାନ୍ତି ପର୍ବ ୧୬୭-୪୭)

ସଂସାରରେ ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ, ପଣ୍ଡିତ-ମୂର୍ଖ, ଧନୀ-ନିର୍ଦ୍ଧନ ସମସ୍ତେ ମହାକାଳ ବକ୍ଷରେ ଦିନେ ନା ଦିନେ ଲୀନ ହୋଇଯିବେ; ମାତ୍ର ଯେଉଁ ବ୍ୟକ୍ତି ସଂସାରର ସକଳ ବାଧାଠାରୁ ଊର୍ଦ୍ଧ୍ୱରେ, ଯିଏ ସତ୍ୟଦ୍ୱାରା ମିଥ୍ୟାକୁ ଜୟ କରେ, ସୌନ୍ଦର୍ଯ୍ୟର ମାୟା ବିସ୍ତାର କରି ଅସୁନ୍ଦରତାର ଧ୍ୱଂସ ସାଧନ କରେ, ତଥା କଙ୍କାଳପିଷ୍ଟ ଜୀବନ ମଧ୍ୟରେ ଯେ ଆନୟନ କରେ, ଶିବର ଚିନ୍ତା, ସେ ଇତିହାସରେ ଆଖ୍ୟାତ ହୁଏ ମହାପୁରୁଷ ଭାବରେ । ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର ଉପୋଦ୍‌ଘାତରେ ଏହିପରି ଏକ ବ୍ୟକ୍ତିତ୍ୱର ସନ୍ଧାନ ମିଳିଥିଲା । ସେ ଥିଲେ ଭକ୍ତକବି ମଧୁସୂଦନ । ନିର୍ମଳ ଭଗବତ ବିଶ୍ୱାସ ଓ ବୌଦ୍ଧିକ ସମ୍ବେଦନଶୀଳତା ଲାଗି ସେ ଓଡ଼ିଆ ସାହିତ୍ୟରେ ଋଷିକବି ଭାବରେ ସୁପରିଚିତ । ଈଶ୍ୱର ଚିନ୍ତାରେ ତାଙ୍କର ଚିତ୍ତଚକୋର କିପରି ବିଳପୁଥିଲା, ତାହା ତାଙ୍କ ରଚନା ମଧ୍ୟରୁ ଜଣାପଡ଼େ—

"ଯାହା ମୁଁ କରଇ, ଯାହା ମୁଁ କହଇ,
ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା ପରମ ଈଶ୍ୱର
ଜାଣୁଛନ୍ତି ପ୍ରତି କ୍ଷଣେ"

ବିଶ୍ୱପ୍ରାଣ ମଧୁସୂଦନଙ୍କର ଉନ୍ମେଷ ଘଟିଥିଲା ୧୮୪୭ ଖ୍ରୀଷ୍ଟାବ୍ଦ, ଜାନୁୟାରୀ ମାସ ୨୯ ତାରିଖ, ପବିତ୍ର ଶ୍ରୀ ପଞ୍ଚମୀ ତିଥିରେ ବିଶ୍ୱପ୍ରେମର ଲୀଳାଧାମ ଶ୍ରୀକ୍ଷେତ୍ରରେ । ପବିତ୍ର ଜନ୍ମପୀଠର ପ୍ରଭାବ ମଧୁବାବୁଙ୍କ ଜୀବନରେ ସଚ୍ଚରିତ୍ର, ସ୍ନେହ, ଶ୍ରଦ୍ଧା, ସହାନୁଭୂତି, ସୌହାର୍ଦ୍ଦ୍ୟ, ଭକ୍ତି ଆଦି ଦେବୋପମ ସ୍ୱଭାବ ଦ୍ୱାରା ପ୍ରକାଶ ପାଇଥିଲା । ବିଭିନ୍ନ ଶିକ୍ଷାଳୟରେ ଶିକ୍ଷା ସମାପ୍ତ କରି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନକାଳରେ କବିବର ରାଧାନାଥ ତାଙ୍କର ଶିକ୍ଷକ ଭାବେ ନିଯୁକ୍ତ ହୋଇଥିଲେ । ମଧୁସୂଦନଙ୍କ ପ୍ରତିଭା, ଶୀଳତା ଓ ବିନୟ ଗୁଣରେ ମୁଗ୍‌ଧହୋଇ ରାଧାନାଥ ତାଙ୍କୁ ଅତି' ଆପଣାର ବୋଲି ଭାବି ନେଇଥିଲେ ।

ବାଲ୍ୟକାଳରୁ ମଧୁସୂଦନଙ୍କ ହୃଦୟରେ ଦୟା ଓ ଧର୍ମର ଅଙ୍କୁର ସୁସ୍ପଷ୍ଟ ହୋଇଥିଲା । ସମୁଦ୍ର କୂଳରେ ଭ୍ରମଣ କାଳରେ ସେ ତାହାର ଓ ଊର୍ଦ୍ଧ୍ୱରେ ଗଗନର ଅନନ୍ତ ନୀଳିମା ଦର୍ଶନ କରି ମୁଗଧ ତଥା ଭାବ-ବିଭୋର ହୋଇ ପଡ଼ୁଥିଲେ । ଏଥିପାଇଁ ବୋଧହୁଏ ଜୀବନର ପରବର୍ତ୍ତୀ ସମୟରେ ସେ 'ସ୍ତବ' ଶୀର୍ଷକ କବିତାରେ ରଚନା କଲେ—

"କି ସୁନ୍ଦର ଆହା କି ଆନନ୍ଦମୟ ଏହି ବିଶାଳ ସଂସାର
ଧନ୍ୟ ମହାପ୍ରଭୁ ମହିମା ତୁମ୍ଭର ଅଟେ ଅନନ୍ତ ଅପାର
ସୂର୍ଯ୍ୟ, ଚନ୍ଦ୍ର, ତାରା, ତୁମ୍ଭର ଆଜ୍ଞାରେ ବରଷନ୍ତି ଜ୍ୟୋତିରାଶି
ତୁମ୍ଭର କୁସୁମ ପ୍ରତି ପ୍ରଭାତରେ ହସଇ ଆନନ୍ଦେ ଭାସି ।"

କୌଣସି ବସ୍ତୁକୁ ଅଖଣ୍ଡ ରସର ଲୀଳାଭୂମି ରୂପେ କଳ୍ପନା କରିବାର ଶକ୍ତି ସମସ୍ତଙ୍କର ନାହିଁ, ସବୁ କବିଙ୍କର ମଧ୍ୟ ନ ଥାଏ । ବଳରାମ, ଜଗନ୍ନାଥ ଆଦି କେତେକ ଉତ୍କଳୀୟ ସନ୍ଥ କବିଙ୍କୁ ଛାଡ଼ିଦେଲେ ଅନ୍ୟ କୌଣସି ସଂସାରୀ କବିଙ୍କର ଏହି ଭାବନା ଥିବା ପରି ମନେ ହୁଏନାହିଁ । ମାତ୍ର ଭକ୍ତ କବିଙ୍କଠାରେ ଯେ ଏହି ଭାବନା ବଳବତ୍ତର ରହିଥିଲା, ଏହା ତାଙ୍କର ରଚିତ କେତୋଟି କବିତାର ପଂକ୍ତି ଉଦ୍ଧାରକଲେ ଜଣାଯିବ—

ଧ୍ୱନି କବିତାରେ—"ଏହିମତେ କୋଟି କୋଟି ଶବ୍ଦେ ପୂର୍ଣ୍ଣ
ଅନୁକ୍ଷଣ ଏ ଅବନୀ

କନ୍ତୁ ଶୁଣିଛ କ ସେହ୍ଵ ଆଦ୍ୟମୂଳ
ଅନାଦ୍ଧର ପ୍ରଣଧ୍ୱନ
ରୋମାଞ୍ଚ ପୂରତ ପୁଲକତ ଦେହେ
ଶୁଣ ଶୁଣ ବଶ୍ୱ ଜନେ
ବଶ୍ୱ ରନ୍ଧ୍ରେ ରନ୍ଧ୍ରେ ଯେ ପରମ ଧ୍ୱନ
ଉଚ୍ଛ୍ୱସିତ ସଂଗୋପନେ
ବଶ୍ୱ ଭୁବନର ସୃଷ୍ଟି, ସ୍ଥିତ, ଲୟ
ନତ୍ୟ ଉଚ୍ଚାରତ ବାଣୀ
ଅନାଦ୍ଧ ଅନନ୍ତ ପକ୍ଷୀର ଅମୃତ
ଦ୍ୟୁଲୋକ ଭୂଲୋକ ରାଣୀ
ସେ ଅମୃତମୟ ବାଣୀର ଶ୍ରବଣେ
ନାଚଇ ଗଗନେ ତାରା
ଭୁବନେ ଭୁବନେ ବହଇ ଆନନ୍ଦେ
ଜୀବନ-ଜାହ୍ନବୀ ଧାରା ।"

କୌଣସି ଏକ ପଙ୍କପୂର୍ଣ୍ଣ ସରୋବରରେ ପ୍ରସ୍ଫୁଟିତ ପଦ୍ମକୁ ଦେଖି କବଙ୍କର ଭାବନା ଅତୀନ୍ଦ୍ରିୟ ରାଜ୍ୟର ସୀମା ସ୍ପର୍ଶ କରଛ୍ର । ସଂସାରର ଆବଳତା ମଧ୍ୟରେ କବଙ୍କର ଜୀବନ ଦୁର୍ବିସହ ହୋଇଥିବାବେଳେ ସେ ପଦ୍ମକୁ ଦର୍ଶନ କର ସାନ୍ତ୍ୱନା ଲଭ କରଛନ୍ତ—

"ସତ୍ୟ ଶିବ ସୁନ୍ଦର ପରମେଶ୍ୱର
ନାମ ସଙ୍ଗତେ ଲଗ୍ନ ନାମ ତୋହର
ତେଣୁରେ ଅରବନ୍ଦ ଭକ୍ତଜନରଁ
ବଭୁ ପଦାରବନ୍ଦ ସୁମନୋହର ।"

× × ×

କଳୁଷ ପଙ୍କେ ମୁହିଁ କେଡ଼େ ମଳନ
କେମନ୍ତେ ସର ତୋର ହେବ—ନଳୀନ

ପଙ୍କଜ ଅଟ୍ଟ ରୁନ୍ଧ ତେଣୁ ଭରସା
ତୋପଣ ଶୁଭ୍ର ହେବ ଲଭ ସୁଦଶା ।"

ଇଂରେଜ ଶାସନ କାଳରେ ଭାରତୀୟ ହିନ୍ଦୁ-ସମାଜରୁ ଅନେକ ବ୍ୟକ୍ତି ପାଶ୍ଚାତ୍ୟ-ଶିକ୍ଷା ଓ ପରମ୍ପରାର ଅନୁଗାମୀ ହୋଇ ସ୍ୱଧର୍ମ ପରିତ୍ୟାଗ-ପୂର୍ବକ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେଉଥିଲେ । ଅନ୍ୟ ପକ୍ଷରେ ଖ୍ରୀଷ୍ଟିଆନ ପାଦ୍ରିଗଣ ଅଖଣ୍ଡ କ୍ଷମତା ବିସ୍ତାର କରି ଜନ ସାଧାରଣଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଉଥିଲେ । କବିପ୍ରାଣ ଏହାର ବିରୋଧ କରିଛି । ଏଥିପାଇଁ ସେ ବ୍ରାହ୍ମଧର୍ମର ଆଶ୍ରୟ ନେଇଥିଲେ କେବଳ ନିଜର ବାଣୀକୁ କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମ ବା ସଂପ୍ରଦାୟର ଗଣ୍ଡି ମଧ୍ୟରେ ଆବଦ୍ଧ ନ ରଖି ତାକୁ ବିଶ୍ୱତୋମୁଖୀ କରାଇବା ଉଦ୍ଦେଶ୍ୟରେ ।

ଶୈଶବରେ ପାଞ୍ଚବର୍ଷ ବୟସ କାଳରେ କବି ମାତାଙ୍କୁ ହରାଇ ଥିଲେ । ଏହି ଦାରୁଣ ଆଘାତ କବିଙ୍କର ଶିଶୁ ଚିତ୍ତକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା; କିନ୍ତୁ ପରେ ଭକ୍ତକବି—"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ଭାବକୁ ଗ୍ରହଣ କରି ନେଇଥିଲେ । ମାତାଙ୍କ ମୃତ୍ୟୁ ଉତ୍ତାରେ ଦେଶ ମାତୃକାର କୋଳରେ ନିଜକୁ ସମର୍ପଣ କରିଦେଇଥିଲେ, ତା ସହିତ ଅନୁଭବ କରିଥିଲେ ଗଭୀର ପ୍ରଶାନ୍ତି—ଏହା ତାଙ୍କର ଛନ୍ଦମାଳା । ପ୍ରଥମ ଖଣ୍ଡରେ ସନ୍ନିବେଶିତ କବିତାର କେତୋଟି ପଂକ୍ତି ପାଠକଲେ ଜଣାପଡ଼େ—ପ୍ରଥମେ 'ମୋ ଜନନୀ' କବିତାଟି ବାତ୍ସଲ୍ୟ ରସର ଉତ୍ସ ସ୍ୱରୂପ—

'ପଡ଼ୁଅଛି ମନେ ମୋର ଶୈଶବର କଥା ହେ, ଶୁଣ ଶିଶୁଗଣ
ଆଜି କେତେ ସୁଖ ଦୁଃଖ କେତେ ପ୍ରିୟଜନ ମୁଖ
ଆକୁଳ ହୃଦୟେ ଆହା କରଇ ସ୍ମରଣ ହେ କରଇ ସ୍ମରଣ
ନୟନେ ନାଚଇ ଆଜି ସେ ସୁନ୍ଦର ମୁଖ ହେ ପରମସୁନ୍ଦର ।

ମାତାଙ୍କର ଜୀବଦ୍ଦଶାରେ ଏ ସ୍ନେହର ଉତ୍ସ ବନ୍ଦ ହୋଇଯାଇନାହିଁ, ତାଙ୍କ ମୃତ୍ୟୁପରେ କବି ଭାବନା ରାଜ୍ୟରେ କଳ୍ପନା ଚକ୍ଷୁରେ ସମଗ୍ର ବିଶ୍ୱରେ ସ୍ୱମାତୃଛବି ଦର୍ଶନ କରିଛନ୍ତି । ସମସ୍ତ ବିଶ୍ୱକୁ ସେ ଜନନୀ ଭାବରେ

କଳ୍ପନା କରିଥିଲେ । ଅବୋଧ ଚଞ୍ଚଳ ଶିଶୁତୁଲ୍ୟ ଧରଣୀ ବକ୍ଷରେ ନିଜର ସତ୍ତା କଳ୍ପନା କରିଛନ୍ତି—

"ତୁହି ମା' ଧରଣୀ ଜନମି ମୋହର
ଧରିଛୁ ମା' ମୋତେ କୋଳେ
ଲୋଟୁଅଛୁ ସିନ୍ଧୁ ଚରଣେ ତୋହର
ଆହା କି ଉଲ୍ଲାସ ଭୋଳେ ।

× × × ×

ଏହି କବିତ୍ୱର ଅଂଶରୁ ଭକ୍ତକବିଙ୍କର ଦେଶପ୍ରାଣତା ତଥା ଜନ୍ମଭୂମି ପ୍ରତି ମମତା ସହଜରେ ଅନୁମେୟ । ଏହାଛଡ଼ା ତାଙ୍କର 'ଜନ୍ମଭୂମି' କବିତାଟି ଦେଶ ପ୍ରେମର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ମଧୁସୂଦନଙ୍କର ଭାବନା ଥିଲା ବିଶ୍ୱତୋମୁଖୀ । କୌଣସି ଜାତିର ସଙ୍କୀର୍ଣ୍ଣତା ମଧ୍ୟରେ ତାହା ଆବଦ୍ଧ ନ ଥିଲା । ପୃଥିବୀର ପ୍ରତ୍ୟେକ ଅଣୁ ପରମାଣୁ ମଧ୍ୟରେ ସେ ବିଶ୍ୱଭୂମାଙ୍କର ଅବସ୍ଥିତି କଳ୍ପନା କରିଛନ୍ତି । ଉଦ୍ୟାନର ପୁଷ୍ପରାଜି ମଧ୍ୟରେ, ମନ୍ଦିରର ବିଗ୍ରହ ମଧ୍ୟରେ, ଧରଣୀର ଧୂଳିକଣା ମଧ୍ୟରେ ସେ ବିଦ୍ୟମାନ । ଯେପରି Willi am Blake ଙ୍କ ଭାଷାରେ—

To see a world in a grain of sand
And a heaven in a wild flower
Hold infinity in your hand
And eternity in an hour" କିନ୍ତୁ ଏ

ସଂସାର ପରିବର୍ତ୍ତନଶୀଳ । କୌଣସି ବସ୍ତୁର ସ୍ଥାୟିତ୍ୱ ଏଠାରେ ଚିରକାଳ ନିମନ୍ତେ ନୁହେଁ—ଏହି ନିର୍ଦ୍ଦିଷ୍ଟ ସତ୍ୟକୁ କବି ଉଦ୍‌ଘାଟନ କରିଛନ୍ତି 'ଜୀବନ ଚିନ୍ତା' କବିତାରେ—ଜୀବନକୁ ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀରେ ଦେଖି ଗାଇ ଉଠିଛନ୍ତି—

ରେ ଆତ୍ମନ୍ ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ

ନାଶଙ୍କେ ଜୀବନ ସ୍ରୋତ ଧାଉଁଛୁ ଜପରେ
ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।

ତେବେ ଜଗତର ଅଣୁ ପରମାଣୁ ରେ ସେଇ ଐଶ୍ୱରିକ ତତ୍ତ୍ୱ ଉପଲବ୍ଧି କରି, ଜୀବନରୁ ପାପ ପ୍ରଲୋଭନ ତ୍ୟାଗ କରି ଅମୃତର ଅଧିକାରୀ ହେବା ନିମିତ୍ତ ସମଗ୍ର ମାନବ ସମାଜକୁ ସେ ଆହ୍ୱାନ ଦେଇଛନ୍ତି—

ପରିହରି ପାପ ପ୍ରଲୋଭନ
ଉଚ୍ଛୃଙ୍ଖଳ କର ବିଶ୍ୱାସ ସ୍ୱାର୍ଥ ଅହଂକାର ନାଶ
କରରେ ହୃଦୟାକାଶ ନିର୍ମଳ ବହନ
ତେବେରେ ଲଭିବୁ ଧର୍ମରସ ଆସ୍ୱାଦନ"—

ପୁଣି ନଦୀ ପ୍ରତି, ଆକାଶ ପ୍ରତି ଇତ୍ୟାଦି କବିତାରେ କବି ପ୍ରାଣ ବିଶ୍ୱର ଅଣୁ ପରମାଣୁ ମଧ୍ୟରେ ଈଶ୍ୱରଙ୍କ ଅନୁଭବ କରିପାରିଛି ।

ଭକ୍ତକବିଙ୍କ ସାହିତ୍ୟ ସାଧନା ମୂଳରେ ଜାତୀୟ ପ୍ରେରଣା ବିଦ୍ୟମାନ । ଯେତେବେଳେ "ଓଡ଼ିଆ ଭାଷା ପଡ଼ୋଶୀ ଭାଷାଭାଷୀଙ୍କ କବଳରେ କବଳିତ, ଯେତେବେଳେ 'ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ' ଧ୍ୱନିରେ ଗଗନ ପବନ ମୁଖରିତ, ଯେତେବେଳେ ଓଡ଼ିଆ ତାର ଜାତୀୟତା ରକ୍ଷା କରିବା ନିମିତ୍ତ ବ୍ୟାକୁଳ, ସେତେବେଳେ ଆରମ୍ଭ ହୁଏ ପ୍ରେରଣା ପରିବର୍ତ୍ତେ ସାହିତ୍ୟ ସୃଷ୍ଟି । ଓଡ଼ିଆ ଭାଷାରେ ବର୍ଣ୍ଣବୋଧ, ବାଳ ବୋଧ ଆଦି ଶିଶୁ ଶ୍ରେଣୀ ପାଠ୍ୟ ପୁସ୍ତକଠାରୁ ଆରମ୍ଭ କରି ତତ୍ତ୍ୱ ସନ୍ଧାନୀଙ୍କ ନିମିତ୍ତ 'ଜୀବନ ଚିନ୍ତା' ରଚନା କଲେ । ଶିଶୁ ମନ ତରଳ, ସରଳ ଓ ଭାବ ସଂଗ୍ରାହକ । ତେଣୁ ନୀତିଶିକ୍ଷା, ଧର୍ମ ଶିକ୍ଷା ଆଦି ମାଧ୍ୟମରେ ତାର ଜୀବନ-କୁସୁମ ପୂର୍ଣ୍ଣ ବିକଶିତ ହେବାକୁ ସକ୍ଷମ ହୁଏ । କବିଙ୍କ ଭାଷାରେ—

"ହେ ଆନନ୍ଦ ମୟ କୋଟି ବ୍ରହ୍ମାଣ୍ଡପାଳକ
ଅଧମ ଅକ୍ଷମ ମୁହିଁ ଅବୋଧ ବାଳକ
ଜ୍ଞାନଦାତା ଭଗବାନ
ଦିଅ ମୋତେ ଶୁଭବୁଦ୍ଧି ଦିଅ ଦିବ୍ୟଜ୍ଞାନ

ସତ୍ୟପଥେ ଧର୍ମପଥେ ଯେଉଁ ଯାଅ ମୋତେ
ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ
ତୁମ୍ଭେ ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

ଆଜି ମଧ୍ୟ ଏହି ସଂଗୀତ ଭକ୍ତମାନଙ୍କର ପ୍ରଦୋଷ କାଳୀନ ସଂଗୀତର ରୂପନେଇ ଗଗନ ପବନ ମୁଖରିତ କରି ଉଠେ ।

ମୌଳିକ କବିତା ଭିନ୍ନ ଅନୂଦିତ ବା ଆଶ୍ରିତ କବିତା ଓ ପ୍ରବନ୍ଧମାନ ରଚନା କରିବାରେ ଭକ୍ତକବି ଥିଲେ ଅପୂର୍ବ ବିନ୍ଧାଣି । ନିର୍ଜନଦ୍ୱୀପରେ ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାଗମନ କବିତା, ଉତ୍ତର ରାମ ଚରିତ ନାଟକ ଓ ପ୍ରଣୟର ଅଦ୍ଭୁତ ପରିଣାମ ପ୍ରଭୃତି ଗଦ୍ୟ ପ୍ରବନ୍ଧ ପାଠକଲେ ମଧ୍ୟ ପାଠ ମୂଳକ କବିତା ଓ ମୂଳ ଗ୍ରନ୍ଥର ରସ ଆସ୍ୱାଦନ କରିବାକୁ ସକ୍ଷମ ହୁଏ । ଅନୁବାଦ ଦ୍ୱାରା ସେଗୁଡ଼ିକ ଆବିଳ ନହୋଇ ସ୍ୱଚ୍ଛ ନିର୍ଝର ଜଳର ଗୁଣ ସମ୍ୟକ୍ ଭାବରେ ରକ୍ଷା କରିଅଛି ଏବଂ ଅନୁବାଦ— ଓଡ଼ିଆ ଭାଷା ଓ ସାହିତ୍ୟରେ କିପରି ନବ ପ୍ରାଣ ସଞ୍ଚାର କରିପାରେ, ତାହାର ସୂଚନା କରିବାଦ୍ୱାରା ମଧ୍ୟ ଗୋଟିଏ ନୂତନ ଆଦର୍ଶ ଉନ୍ମୋଚିତ ହୋଇଛି । ଉଦାହରଣ ସ୍ୱରୂପ ମୂଳ "The Solitude of Alexgander Selknik"ରେ

I am the monarch of all I survey
My right there is no man to dispute.

ଭକ୍ତକବିଙ୍କ ଅନୂଦିତ ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ'ରେ
ଦେଖଇ ନେତ୍ର ଯାହା ଚଉଦିଗର
ସେ ସର୍ବର ଅଟଇ ମୁଁ ଅଧୀଶ୍ୱର
ମହୀମଣ୍ଡଳେ ନାହିଁ ଏମନ୍ତ ଜନ
ମୋ ଅଧିକାର ଲୋଭେ କରିବ ରଣ ।"

ପୁଣି—"Society friendship and love
Divinely bestowed upon man"
କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର
ଯାର ପ୍ରାପତି ଯୋଗୁ ଦେବତା ନର ।"

କବିଙ୍କର ଏହି କୃତିତ୍ୱ ଅନୁବାଦ କ୍ଷେତ୍ରରେ ଏକ ଅପୂର୍ବ ଭାରସାମ୍ୟ ରକ୍ଷା କରିପାରିଛି । ମହାକବି ଭବଭୂତିଙ୍କର 'ଉତ୍ତର ରାମ-ଚରିତ, ନାଟକ ଅନୁବାଦ କରିବାରେ ମଧୁସୂଦନଙ୍କର ପାଣ୍ଡିତ୍ୟର ସୂକ୍ଷ୍ମ ନିଦର୍ଶନ ଏହାର ଭାଷା ଓ ଭାବଶୈଳୀର ସ୍ୱାତନ୍ତ୍ର୍ୟ ସର୍ବବାଦୀସମ୍ମତ । ଏଥିରେ ଥିବା କବିତା ଜନମନ ହରଣ କରି ଭାବରାଜ୍ୟରେ ନିମଜ୍ଜିତ କରାଏ; ଯଥା—

ମିତ୍ରର ବିଚ୍ଛେଦୁଁ ଯେଉଁ ଶୋକ ଉପୁଜଇ
ଧାରା ରୂପେ ହୃଦୟରେ ସନ୍ତତ ହୁଅଇ
ସହସ୍ର ଧାରାରେ ଯେହ୍ନେ ତାହା ଅସମ୍ଭାଳେ
ଉଛୁଳି ପଡ଼ଇ ମିତ୍ର ଦରଶନ କାଳେ ।"

କାଳିଦାସଙ୍କ ରଘୁବଂଶର କଳେବର ମଧ୍ୟରୁ ଅଯୋଧ୍ୟା ପ୍ରତ୍ୟାଗମନ ଅନୁବାଦ କ୍ଷେତ୍ରରେ କବିଙ୍କର କାନ୍ତ କୋମଳ ଭାଷାବିନ୍ୟାସ ପରିଦୃଷ୍ଟ ହୁଏ—

ରଘୁବଂଶର ତ୍ରୟୋଦଶ ସର୍ଗରେ—ଅଥାତ୍ମନଃ ଶବ୍ଦଗୁଣଂ ଗୁଣଜ୍ଞଃ
ପଦଂ ବିମାନେନ ବିଗାହମାନଃ
ରତ୍ନାକରଂ ବୀକ୍ଷ୍ୟ ମିଥଃ ସଜାୟାଂ
ରାମାଭିଧାନୋ ହରିରିତ୍ୟୁବାଚ
ବୈଦେହି ପଶ୍ୟାମଲୟାଦ ବିଭକ୍ତଂ
ମତ୍ ସେତୁନା ଫେନିଲମମ୍ବୁରାଶିମ୍
ଛାୟାପଥେ ନେବ ଶରତ ପ୍ରସନ୍ନାମାକାଶ ମା ବିସ୍କୃତ ଚାରୁତାମ୍"

ମଧୁସୂଦନଙ୍କ ଭାଷାରେ—ଏଥୁ ଅନ୍ତେ ଶବ୍ଦବହ ସୁନୀଳ ଅମ୍ବର
ପୁଷ୍ପକ ବିମାନେ ହେଲେ ଭେଦ ବୀରବର

ନୟନେ ପଡ଼ନ୍ତେ ରତ୍ନ ଆକର ଅର୍ଣ୍ଣବ
ସୀତାଙ୍କୁ କହିଲେ ବାଣୀ ରହସ୍ୟେ ରାଘବ
ବିଦେହ ନନ୍ଦନୀ ଦେଖ ମଳୟ ପର୍ଯ୍ୟନ୍ତ
ବିଭକ୍ତ ସେତୁରେ ମୋର ସିନ୍ଧୁ ଫେନବନ୍ତ
ଯେସନେ ଶରଦେ ଗୃରୁ ତାରା ବିମଣ୍ଡିତ
ଗହଳ ଦିଶଇ ଛାୟାପଥେ ବିଖଣ୍ଡିତ ।"

ଶେଷରେ ଭକ୍ତକବି ଯେଉଁ ସମସ୍ତ ଦୁର୍ଲ୍ଲଭ ଗୁଣଗୁଡ଼ିକ ଗଦ୍ୟରଚନାରେ ଫୁଟାଇଛନ୍ତି, ସେଗୁଡ଼ିକ ମଧ୍ୟରେ ହେମମାଳା (କ୍ଷୁଦ୍ର ଗଳ୍ପ), ପ୍ରସ୍ୟେର ଅଦ୍ଭୁତ ପରିଣାମ, ସାହିତ୍ୟ କୁସୁମ, ସାହିତ୍ୟ ପ୍ରସଙ୍ଗ ଇତ୍ୟାଦି ଗଳ୍ପ ଓ ପ୍ରବନ୍ଧଗୁଡ଼ିକ ଏକ ଉଚ୍ଚକୋଟୀର ମର୍ଯ୍ୟାଦା ଦାବୀକରେ ।

କବିଙ୍କ କବିତ୍ୱରେ ଭାଷାର କ୍ଲିଷ୍ଟତା ଉପଲବ୍ଧ ହୁଏନାହିଁ; କିନ୍ତୁ କେତେକ ସ୍ତରରେ ସେ ଭଞ୍ଜଙ୍କର ଶୈଳୀ ଆହରଣ କରିଥିବା ଭଳି ମନେହୁଏ । ପ୍ରାଚୀନ କବି ଥିଲି ପଦ୍ମପ୍ରିୟ—ଯାହାକି ଭକ୍ତକବିଙ୍କ ଦୃଷ୍ଟିରେ ଥିଲି ପବିତ୍ର ଓ ନିଷ୍କଳଙ୍କ ଏବଂ କବି ମାନସରେ ତାହା ଏକ ବିଶେଷ ସ୍ଥାନ ଅଧିକାର କରିଥିଲି । କବିଙ୍କ ଭାଷାରେ—"ଛଳ ଛଳ ସୁନିଳ ସରସୀ ଜଳ
ଛଳ ଛଳ ଶ୍ୟାମଳ ନଳିନୀ ଦଳ
ଛଳ ଛଳ ଭାସ୍କର ରଶ୍ମି ଉଜ୍ଜ୍ୱଳ
ତା ମଧ୍ୟେ ଛଳ ଛଳ ଶୁଦ୍ଧ କମଳ ।

ଏଠାରେ କବି ସମ୍ରାଟଙ୍କ 'ଶ୍ରବଣେ ଘନ ଘନ' 'ଗର୍ଜନେ ଘନଘନ' ଇତ୍ୟାଦି ଭାଷାଶିଳ୍ପ ମନେପଡ଼ିଥାଏ । ପୁଣି ଏହା ଶଙ୍କରାଚାର୍ଯ୍ୟଙ୍କ 'ନଳିନୀ-ଦଳଗତ ଜଳ ମତିତରଳଂ' ଓ ଓଡ଼ିଶାର ଭୌମରାଜାଙ୍କ ତାମ୍ର ଶାସନର 'ଇତି କମଳାଜଳାମ୍ବୁ ବିନ୍ଦୁ ଲୋଳାଶ୍ରିୟଂ ମନୁଷ୍ୟ ଜୀବିତଞ୍ଚ' ଉକ୍ତି ସଙ୍ଗରେ ତୁଳନୀୟ ।

ସମାଜରେ ଉଚ୍ଚନୀଚ ଧନୀ-ଦରିଦ୍ର ଶ୍ରେଣୀ ନିର୍ବିଶେଷରେ ପ୍ରତ୍ୟେକଙ୍କ-ଠାରେ କବି ଏକ ନିର୍ଦ୍ଦିଷ୍ଟ ଭାବ ଆରୋପ କରିଥିଲେ ମଧ୍ୟ ସମାଜରେ

ଗଣିକା ଯେଉଁ ଶରୀର ବିକ୍ରୟମାଧ୍ୟମରେ ନିଜର ଜୀବିକା ତଥା ଅର୍ଥ ଉପାର୍ଜନ କରିଥାଏ, ତାଠାରେ ଏକ ଅନ୍ୟ ଭାବ ଆରୋପ କରିଛନ୍ତି । ସମାଜର ସମସ୍ତ ଅଧିକାରରୁ ସେ ବଞ୍ଚିତ ହୋଇ ଏକ ଘୃଣ୍ୟ ପଶୁଭାବେ ବିବେଚିତ ହୋଇଥାଏ । ଭକ୍ତକବି 'ପତିତା-ରମଣୀ' କବିତାରେ ପ୍ରଥମେ ତାହାକୁ ପ୍ରଶ୍ନ କରିଛନ୍ତି —

"ଦେବୀ ହୋଇ କେମନ୍ତ ତୁ ହୋଇଲୁ ରାକ୍ଷସୀ
ଘୋଟିଲା ତୋ ଶୁଭ୍ରପ୍ରାଣେ ଘୋର ପାପମସୀ

ତାପରେ—"କ୍ଷଣେ ହସାଇ ଆହା ପୁଣ୍ୟ ପ୍ରେମରାଶି
ବସିଛୁ ପଣ୍ୟ-ସ୍ତ୍ରୀ ରୂପେ ପାପର ବଜାରେ ।"

କବିଙ୍କ ଭାବନାରେ ବାରାଙ୍ଗନା ନିଜର ଦୁର୍ଦ୍ଦଶା ନିମିତ୍ତ ନିଜେ ଦାୟୀ । ଏହା ଇଂରେଜ କବିଙ୍କ "The man is author of his own disgrace" ଉକ୍ତି ଅନୁସାରେ ହେଉ ବା ଜଗନ୍ନାଥ ଦାସଙ୍କ "ଆପଣା ହସ୍ତେ କିହ୍ନାଛେଦ, କେ ଅଛି ତାର ପ୍ରତିବାଦୀ' ସୂତ୍ରରେ ସେ ଏହା ଲେଖିଥିଲେ ମଧ୍ୟ କବିଙ୍କର ଅନ୍ତରାତ୍ମା ତାର ଦୁର୍ଦ୍ଦଶା ଦର୍ଶନରେ ବିଳାପ କରିଉଠିଛି—

"କିନ୍ତୁ ଲୋ ଭଗିନୀ ମୁହିଁ ତୋ ଦୁଃଖେ କାତର
ଆହତ ମୋ ପ୍ରାଣ ତୋର ମର୍ମ ହାହାକାରେ"

ଏହାହିଁ କବିଙ୍କର ବିଶାଳ ହୃଦୟତାର ପରିପ୍ରକାଶ । ପତିତାରମଣୀ ଯଦି ଅନୁତାପ କରୁଥିବାର ଭକ୍ତକବି ଉପଲବ୍ଧି କଲେ, ସାରା ସମାଜ ଯଦି ଏହା ଉପଲବ୍ଧି କରନ୍ତା, ତେବେ ସମାଜରେ କୌଣସି ନାରୀର ଗୋଡ଼ ଥରେ ଖସିଗଲେ ସମାଜ ତାକୁ ଆଉ ପତିତା କରି ରଖନ୍ତା ନାହିଁ; ଏହାହିଁ ଥିଲା କବିଙ୍କର ଅଭିପ୍ରାୟ ।

୧୯୧୨ ମସିହା ଡିସେମ୍ବର ମାସ ୨୮ ତାରିଖ ଦିନ ଏହି ଉତ୍କଳ ଜ୍ୟୋତିଷ୍କଙ୍କର ଭାରତୀୟ ସଂସ୍କୃତିକ୍ଷେତ୍ରରୁ ତିରୋଧାନ ଘଟିଲା; କିନ୍ତୁ ସମାଜର ସୁସ୍ଥ ପରମ୍ପରା ଓ ସଂସ୍କୃତିର ଚିରନ୍ତନ ଭାବଧାରା ସମନ୍ୱୟରେ

ଯେଉଁ ଅକ୍ଷୟ କୀର୍ତ୍ତି ସେ ସୃଷ୍ଟି କରିଗଲେ, ତାହା ଚିରଦିନ ଝଙ୍କୃତ ହୋଇ ଉଠୁଥିବ—ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଭାଷାରେ—

ଉତ୍କଳର ଗ୍ରାମେ ଗ୍ରାମେ ତବ ନାମ
ଘୋଷିତ ହୁଅଇ ହେ କବି
ପ୍ରତି ବିଦ୍ୟାଳୟେ କୋମଳ ହୃଦୟେ
ବିମ୍ବିତ ତବ ଜ୍ଞାନରବି
ଗୁରୁ ହେ ! ସାହିତ୍ୟକ୍ଷେତ୍ରେ ମହାରଥୀ
ତବ ସମ ସୁତ ଅଙ୍କେ ଧରି ପିନା
ମାତୃଭୂମି ସେ ସୁତବତୀ" □□□

# ଓଡ଼ିଆ ସାହିତ୍ୟରେ ମଧୁସୂଦନ

ଶ୍ରୀ ମନୋରଞ୍ଜନ ପ୍ରଧାନ

ପ୍ରାକ୍ତନ ଓଡ଼ିଆ ପ୍ରତ୍ନାନ ଛାତ୍ର

ମଧୁସୂଦନ ରାଧାନାଥଙ୍କ ଭଳି କଳ୍ପନାପ୍ରବଣ ଅଥବା ଫକୀର ମୋହନଙ୍କ ସଦୃଶ ବାସ୍ତବନିଷ୍ଠ କଳାକାର ନ ଥିଲେ । ବ୍ରାହ୍ମଉପାସନା, କଠୋର ନୀତିମୟ ଜୀବନହିଁ ତାଙ୍କୁ ଗମ୍ଭୀର ଆତ୍ମସଚେତନ କରିଥିଲା । ଏଣୁ ତାହାଙ୍କ ଲେଖନୀରୁ ଆତ୍ମଭାବ ସଙ୍କଳିତ ବିଦ୍ୟାନୁଭୂତିମୂଳକ, ନୀତିନିଷ୍ଠ ଗୀତି-କବିତା ନିଃସୃତ ହେବା ଏକାନ୍ତ ସ୍ୱାଭାବିକ । ଇଂରାଜୀ ଶିକ୍ଷା ଓ ବ୍ରାହ୍ମଧର୍ମ ଗ୍ରହଣ ମଧୁସୂଦନଙ୍କ ସାହିତ୍ୟ ସୃଷ୍ଟିର ମୂଳ ଉତ୍ସ । ନୈତିକ ଆଦର୍ଶ ପ୍ରତି ସ୍ୱୀୟ ବ୍ୟକ୍ତିତ୍ୱର ଗଭୀର ଅନୁରାଗ ତାହାଙ୍କୁ ଆଦର୍ଶମୂଳକ ସାହିତ୍ୟ ରଚନାଲାଗି ଅନୁପ୍ରାଣିତ କରିଥିଲା । ମୁଖ୍ୟତଃ ମଧୁସୂଦନଙ୍କ ସାହିତ୍ୟିକ ପ୍ରତିଭା ଥିଲା ବହୁମୁଖୀ । ସେ ହିଁ ଥିଲେ ଓଡ଼ିଆ ଗଦ୍ୟ ସାହିତ୍ୟର ସ୍ରଷ୍ଟା । ତାଙ୍କ ଗଦ୍ୟ ରଚନାବଳୀ ଗିରିଗହ୍ୱରରୁ ନିଃସୃତ ସ୍ୱଚ୍ଛ ଜଳଧାରା ପରି । ତହିଁରେ କୌଣସି କୃତ୍ରିମ ଶବ୍ଦ ବିନ୍ୟାସ ନାହିଁ । ଏ ଭଳି ଭାବୋଦ୍ଦୀପକ ଶବ୍ଦ ବିନ୍ୟାସ ତାଙ୍କର ଗଭୀର ପାଣ୍ଡିତ୍ୟର ସୂଚନା ଦିଏ । ତାଙ୍କ ଭାଷାର ଅନ୍ୟ ଏକ ବିଶେଷତ୍ୱ ହେଉଛି ତାହା ସଂଗୀତମୟ । ଅତି ପ୍ରଣାଳୀବଦ୍ଧ ଓ ରୁଚିସମ୍ପନ୍ନ ଭାବେ ତାଙ୍କର ଲେଖନୀର ଧାରା ପରିପୁଷ୍ଟ । ସ୍ଥୂଳରେ ଦେଖିବାକୁ ଗଲେ ଶବ୍ଦ ବିନ୍ୟାସରେ ରୁଚି ଓ କଳାପାଟବ ମଧୁସୂଦନଙ୍କ କବିତାରେ ଯାହା ଦେଖାଯାଏ ତାହା ଏ ପର୍ଯ୍ୟନ୍ତ ଉତ୍କଳର ଅନନ୍ୟ ସାଧାରଣ ।

ସର୍ବୋପରି ମଧୁସୂଦନଙ୍କର କାବ୍ୟକଳା ଓ ଲେଖନପଟୁତାର ମୌଳିକତା ପ୍ରତି ଲକ୍ଷ୍ୟ କରାଯାଇ କୁହାଯାଇ ପାରେ ଯେ—ପ୍ରୟୋଗର ଅନୁପାତ, ବିନ୍ୟାସର ପରିସରତା, ଗଠନର ରୁଚିସମ୍ପନ୍ନତା ସ୍ଥୂଳତଃ ମାର୍ଜିତ

ଭାଷାର ଶୁଦ୍ଧ ଯଥାନୁଯମ, ଶବ୍ଦ ବିନ୍ୟାସରେ ମହାୟାନ ସଙ୍ଗୀତର ଦ୍ୟୋତନ ପ୍ରଭୃତି ତାଙ୍କର ଏହି ମୌଳିକ ବିଷୟର ବିଶେଷତ୍ୱ । ଯେଉଁ ଅନୁଭୂତି ନିମନ୍ତେ ସେ ବାସନା ଚିର ଜାଗ୍ରତ କରି ରଖିଥିଲେ, ଯେଉଁ ଆବେଗ ପ୍ରାଣକୁ ଅଧିକାର କଲେ ସେ ଜୀବନରେ ପରମପଦ ଲାଭ କରିବେ ବୋଲି ବିଶ୍ୱାସୁଥିଲେ, ଯେଉଁ ଉପଲବ୍ଧିର ମହାୟସୀ ଆଦର୍ଶରେ ସେ ସଂସାର ବାରଧିରେ ଜୀବନତରୀ ଭସାଉଥିଲେ, ସେଇ ଆଦର୍ଶ ଅନୁଭୂତିର ଚୟନ ହିଁ ତାଙ୍କ କବିତାର ଜୀବନ ।

ଧର୍ମ ଧାରଣା ଓ ଈଶ୍ୱର-ବିଶ୍ୱାସ ବିଷୟରେ ଜ୍ଞାନ-ଭକ୍ତି ସୂତ୍ରରେ ଗ୍ରଥିତ ଯେଉଁ ଅମ୍ଳାନ ପଙ୍କଜମାଳା କବିତା ଆକାରରେ ଉତ୍କଳ ଭାରତୀଙ୍କ କଣ୍ଠ-ଦେଶରେ ସେ ଲମ୍ବାଇଦେଇ ଯାଇଚନ୍ତି, ସେ ସବୁର ପୂର୍ଣ୍ଣ ସୌରଭ ଆମ ସାହିତ୍ୟ ଭଣ୍ଡାରକୁ ଚିରକାଳ ସୌରଭମୟ କରିବ ।

ବାସ୍ତବିକ୍ ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟକୁ ଏକ ନିର୍ଦ୍ଦିଷ୍ଟ ରୂପଦେଇ ତାର ବିଭିନ୍ନ ବିଭବରେ ସହାୟତା କରି ପ୍ରଗତିଗାମୀ କରାଇବା ଥିଲା ମଧୁସୂଦନଙ୍କ ଏକ ଅନନ୍ୟ ସାଧାରଣ ପ୍ରତିଭା । ସାଧାରଣତଃ ମଧୁସୂଦନ ଯେଉଁ ଭାବ ଓ ଭାଷାର ଅଧିକାରୀ ଥିଲେ, ସେଥିରେ ଶିଶୁ ଉପଯୋଗୀ ସାହିତ୍ୟ ସୃଷ୍ଟି କରିବା ସହଜ ନ ଥିଲା; କିନ୍ତୁ ଆଜି ଯଦି ଓଡ଼ିଆ ସାହିତ୍ୟରେ ଶିଶୁ ସାହିତ୍ୟର ଅତୀତ ଆଲୋଚନା କରାଯାଏ, ତା'ହେଲେ ଯଥାର୍ଥତଃ ମଧୁସୂଦନ ହିଁ ଆଜି ଶିଶୁ ସାହିତ୍ୟ ରଚୟିତା ଭାବରେ ସମ୍ମାନିତ ହେବାର କଥା । ମୁଖ୍ୟତଃ ସେ ଶିଶୁମାନଙ୍କ ଉଦ୍ଦେଶ୍ୟରେ ସାହିତ୍ୟ ସୃଷ୍ଟି କରି ନ ଥିଲେ; ମାତ୍ର ସେ ଶିକ୍ଷାବିଭାଗ ସହିତ ଆଜୀବନ ଜଡ଼ିତ ଥିଲେ । ଫଳରେ ସେ ତତ୍କାଳୀନ ପ୍ରଚଳିତ ଶିକ୍ଷାପଦ୍ଧତିରେ ପାଠ୍ୟପୁସ୍ତକର ଯେଉଁ ଅଭାବ ଅନୁଭବ କରିଥିଲେ, ତାହା ହିଁ ତାଙ୍କୁ ପାଠ୍ୟପୁସ୍ତକ ରଚନା କରିବାରେ ବ୍ରତୀ କରାଇଥିଲା । ତେଣୁ ସେ ଶିଶୁ ସାହିତ୍ୟ ସୃଷ୍ଟି କରିବାର ଲକ୍ଷ୍ୟ ନ ରଖି ମଧ୍ୟ ପାଠ୍ୟପୁସ୍ତକ ମାଧ୍ୟମରେ ତଥା ଶିଶୁମାନଙ୍କ ପ୍ରତି ଉପଦେଶ ଛଳରେ ନିଜ ଅଲକ୍ଷ୍ୟରେ ସେ ଉତ୍କୃଷ୍ଟ ଶିଶୁସାହିତ୍ୟ ସୃଷ୍ଟି କରିପାରି ଥିଲେ । ଶିଶୁ ଉପଯୋଗୀ ପାଠ୍ୟପୁସ୍ତକ ହିସାବରେ 'ବର୍ଣ୍ଣବୋଧ' ତାଙ୍କର ଏକ ଅନବଦ୍ୟ ସୃଷ୍ଟି । ଏହାର ପ୍ରତ୍ୟେକଟି

କବିତା ଶିଶୁ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ରତ୍ନ ସଦୃଶ । ତାଙ୍କର ରଚିତ 'ଚ୍ଛନ୍ଦମାଳା' ମଧ୍ୟ ଶିଶୁ ସାହିତ୍ୟର ଅନ୍ୟତମ ସ୍ପଷ୍ଟ ପ୍ରତୀକ । ଆମେ ଯାହା ଆଖି ଆଗରେ ଦେଖିଅଛୁ, ସେ ସମସ୍ତ ଯେ ଈଶ୍ୱରଙ୍କଦ୍ୱାରା ସୃଷ୍ଟି, ଏହି ଗମ୍ଭୀର ତତ୍ତ୍ୱକୁ ଅତି କୋମଳ ଶିଶୁସୁଲଭ ଅନ୍ତର ନେଇ ଶିଶୁମାନେ ବୁଝିବା ଭଳି ଅତି ସରଳ ଭାବରେ ପ୍ରକାଶ କରିଛନ୍ତି—

"ଆକାଶ ଦିଶେ କି ସୁନ୍ଦର
ତାହାକୁ ରଚିଲେ ଈଶ୍ୱର ।"

ଏତଦବ୍ୟତୀତ ସମାଜରେ ନୈତିକତାର ପ୍ରଚାର ତଥା ଶିଶୁ ପ୍ରାଣକୁ ଅନୁପ୍ରାଣିତ କରିବାର ଯଥେଷ୍ଟ ଯୋଗ୍ୟତା ତାଙ୍କ ଶିଶୁସାହିତ୍ୟ କବିତା-ଗୁଡ଼ିକରେ ଦେଖିବାକୁ ମିଳିଥାଏ—

"ରାତି ପାହିଲାଣି ରାବଇ କାଉ
ଉଠ ଉଠ ମଠ ନକର ଆଉ ।"

× × ×

"ବିଲୁଆ ବଡ଼ ଚତୁର, ପଇଡ଼ ବଡ଼ ମଧୁର ।"
"ମଧୁର ବିନୟ ବଚନ
କହି ତୋଷିବ ଜନମନ ।"
"ମିଥ୍ୟାକୁ ପାପ ବୋଲି ଜାଣି
କହିବ ସଦା ସତ୍ୟ ବାଣୀ ।"

ଶିଶୁ ଭିତରେ ହିଁ ଭବିଷ୍ୟତ ମନୁଷ୍ୟର ସତ୍ତା ବିଦ୍ୟମାନ । ତରଳ ପଦାର୍ଥକୁ ଯେଉଁ ପାତ୍ର ମଧ୍ୟରେ ରଖାଯିବ, ସେ ସେହି ଆକାର ଧାରଣ କରିବ । ସେହିପରି ତରଳମତି ଶିଶୁମାନଙ୍କ ଆଗରେ ଯେଉଁ ଆଦର୍ଶ ରଖାଯିବ, ତାହାହିଁ ସେମାନଙ୍କର ଭବିଷ୍ୟତ ଜୀବନର ନିୟାମକ ହେବ ।

ସ୍ପଷ୍ଟତଃ ତାଙ୍କ କବିତାଗୁଡ଼ିକ ଆଲୋଚନା କଲେ କବି ମଧୁସୂଦନଙ୍କ ଅପେକ୍ଷା ଗୁରୁ ମଧୁସୂଦନ ଆଖିରେ ପଡ଼ନ୍ତି । 'ସତ୍ୟବ୍ରତ', 'ପରିଶ୍ରମ', 'ବିଦ୍ୟା', 'ସୁଶୀଳତା' ପ୍ରଭୃତି କବିତାରେ ସେ ସମ୍ପୂର୍ଣ୍ଣ ଭାବରେ ନୀତିର ପ୍ରଚାରକ ହୋଇ ପଡ଼ିଛନ୍ତି ।

"ବାଳକେ ମୋର ବୋଲ କର
ସତ୍ୟ ପାଳିବ ନିରନ୍ତର ।
ଆଳସପଣ ପରିହରି
ଆନନ୍ଦେ ପରିଶ୍ରମ କରି ।"

'ବିଦ୍ୟା' କବିତାରେ—

"ବିଦ୍ୟା ଅଟଇ ମହାଧନ
ବାଳକେ କର ଉପାର୍ଜନ ।"

ଆଦର୍ଶ ଶିକ୍ଷକର ପରିଚୟ ଦେଇ, ସେ ପିଲାମାନଙ୍କୁ ଉପଦେଶ ଛଳରେ କହିଛନ୍ତି—

"ହସ୍ତାକ୍ଷର ପ୍ରତି ଯତ୍ନ ଅଧିକ
ନ କଲେ ନ ହେବ ଭଲ ଲେଖକ ।"

ତାଙ୍କର ଏହି ପ୍ରକାର କବିତା ଗୁଡ଼ିକର ପ୍ରକାଶନ ଏତେ ସ୍ୱାଭାବିକ ଯେ ତାହା କେବଳ ପଠ୍ୟପୁସ୍ତକର ରଚନା ପରିସର ମଧ୍ୟରେ ଆବଦ୍ଧ କରାଯାଇ ପାରେନା ।

ତେଣୁ ବାସ୍ତବରେ ମଧୁସୂଦନଙ୍କଠାରୁ ହିଁ ଆଜି ପର୍ଯ୍ୟନ୍ତ ଶିଶୁ ସାହିତ୍ୟ ସୃଷ୍ଟିରେ ଅନେକ ଅଗ୍ରଗତି ହୋଇଛି । ଆହୁରି ମଧ୍ୟ ମଧୁସୂଦନ ଶିଶୁମାନଙ୍କ କୋମଳ ହୃଦୟରେ ପବିତ୍ର ଉଦାର ଭାବର ଭିତ୍ତି ସ୍ଥାପନ ପାଇଁ ରଚନା କରିଥିଲେ "ବାଲ ରାମାୟଣ ।"

ମଧୁସୂଦନ ସାହିତ୍ୟିକ ଜୀବନକୁ ପର୍ଯ୍ୟାଲୋଚନା କରିଗଲେ ଜଣାଯାଏ ଯେ, ତାଙ୍କର ସାହିତ୍ୟ କବିତ୍ୱଦ୍ୱାରା ପ୍ରଭାବିତ ଓ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ମଧ୍ୟ ପରିପୁଷ୍ଟ । ପ୍ରଥମତଃ ସେ ଥିଲେ ସଂସ୍କୃତ ସାହିତ୍ୟର ଅନୁବାଦକ । ଦ୍ୱିତୀୟତଃ ଇଂରାଜୀଭାଷା ଅଧ୍ୟୟନରତ ଛାତ୍ର ଏବଂ ତୃତୀୟତଃ ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମ ଅବଲମ୍ବନ କରିବା । ତେଣୁ ମଧୁସୂଦନଙ୍କ ଗୀତି କବିତାରେ ସଂସ୍କୃତର ପରଂପରା, ପାଶ୍ଚାତ୍ୟ ସାହିତ୍ୟର ନୂତନତା ଓ ବ୍ରାହ୍ମଧର୍ମର ସ୍ଥାନ ଶୁଣାଯାଏ । ତାହା ବ୍ୟକ୍ତିଧର୍ମୀ, କେତେକ ଅନୁଷ୍ଠାନ ଧର୍ମୀ ଓ

ସାମଗ୍ରିକ ଭାବରେ ଦେଖିଲେ ମାନବ-ସମାଜର ଗମ୍ଭୀର ଅନୁଭୂତି ଉପରେ ପ୍ରତିଷ୍ଠିତ ।

ଗୀତି କବିତାରେ ସାଧାରଣ ଅର୍ଥ ହେଉଛି ଗାନଯୋଗ୍ୟ କବିତା । ଇଂରାଜୀରେ ଏହାକୁ ଲିରିକ୍ ଓ ହିନ୍ଦୀ ସାହିତ୍ୟରେ ଏହା ବୈଣିକ କବିତା ବୋଲି ଆଖ୍ୟା ଦିଆଯାଇଛି । ଏହି କବିତା ଏକ ନିଦିଷ୍ଟ ଅନୁଭୂତିର ପ୍ରକାଶ ବୋଲି ସାଧାରଣତଃ ଦୀର୍ଘ ହୁଏନାହିଁ; କିନ୍ତୁ କୌଣସି କବି ଯଦି ତାର ବ୍ୟକ୍ତିଗତ ଅନୁଭୂତିକୁ ଆନ୍ତରିକତାର ସହିତ ଅନାୟାସରେ ଦୀର୍ଘ ବର୍ଣ୍ଣନା କରିପାରେ, ତାହାହେଲେ ଗୀତିଧର୍ମ ଓ ତାର ମୂଳରସ ପୂର୍ଣ୍ଣ ହୁଏନାହିଁ । ତେଣୁ କବିର ବ୍ୟକ୍ତିନିଷ୍ଠ ଆନ୍ତରିକ ଭାବୋଚ୍ଛ୍ୱାସ ହିଁ ଗୀତି କବିତାର ମନ୍ଦ୍ରସ୍ୱ ପତ୍ରପ୍ରକାଶ । ପାଶ୍ଚାତ୍ୟ ସମାଲୋଚକ ମତ ଦିଅନ୍ତି—"Lyric which may be defined in general as a metrical pleasing or (musical poem) that is short, unified, personal subejective emotional, a poem that springs from the heart rather than from the mind." ଏହି ଦୃଷ୍ଟିରୁ ପୁଙ୍ଖାନୁପୁଙ୍ଖ ବିଚାର କଲେ, ମଧୁସୂଦନଙ୍କ କୌଣସିଟି ଗୀତିକବିତା ଏହାର ବହିର୍ଭୂତ ନୁହେଁ ।

ମଧୁସୂଦନଙ୍କ ଗୀତି କବିତାଗୁଡ଼ିକୁ ମୁଖ୍ୟତଃ ୩ଟି ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରଥମ ପର୍ଯ୍ୟାୟ ହେଉଛି, ଦାର୍ଶନିକ ଚିନ୍ତାପ୍ରସୂତ ଭକ୍ତିଧର୍ମୀ କବିତା । ଦ୍ୱିତୀୟ ହେଉଛି ବର୍ଣ୍ଣନାତ୍ମକ, ମାନବ ସମାଜର ଉତ୍ଥାନ ପତନ ଦୃଷ୍ଟିରେ, ବ୍ୟକ୍ତିର ବୟସ ଭେଦରେ ତାହା ଶିଶୁ ଗୀତିକା, ଗ୍ରାମ୍ୟବିଦ୍ୟାଳୟ ଉପଯୋଗୀ ରଚନା ଓ ପରବର୍ତ୍ତୀ ଅବସ୍ଥାରେ ଦେଶ ଓ ସମ୍ପୂର୍ଣ୍ଣ ବିକାଶପ୍ରାପ୍ତ ମାନବ ଉପଯୋଗୀ ରଚନା । ଦର୍ଶନଧର୍ମୀ କବିତା ମଧ୍ୟରେ 'ଜୀବନଚିନ୍ତା' ଏକ ସାର୍ଥକ ସୃଷ୍ଟି । 'ଏ ସୃଷ୍ଟି ଅମୃତମୟ ହେ', 'ନବଯୁଗର ଆଶା', 'ଆତ୍ମସମର୍ପଣ' ପ୍ରଭୃତି ମୁଖ୍ୟସ୍ଥାନ ଗ୍ରହଣ କରନ୍ତି । ଶିଶୁଗୀତିକା ଦୃଷ୍ଟିରେ ତାଙ୍କ ଗୀତିଧର୍ମୀ କବିତାଗୁଡ଼ିକ ଅଧିକ ପ୍ରଭାବଶାଳୀ ଭାବସମ୍ପଦଭରା ଅନୁଭୂତିର ଚମତ୍କାର ପ୍ରକାଶଭଙ୍ଗୀ ଆଧୁନିକ ମଧୁସୂଦନଙ୍କ ସାହିତ୍ୟର ଏକ

ଅନବଦ୍ୟ ସୃଜ୍ୟକୁ ଆକର୍ଷି ନଏ । 'ପରମେଶ୍ୱର ସ୍ତବ', 'ନୀତି ରତ୍ନମାଳା' ପ୍ରଭୃତି ଶିଶୁକୁ ଯଥାର୍ଥ ମାନବରୂପେ ଗଢ଼ିବା ଉଦ୍ଦେଶ୍ୟରେ ଅଭିପ୍ରେତ; କିନ୍ତୁ ବହିଃପ୍ରକୃତି ଓ ଶିଶୁ ମନ ମଧ୍ୟରେ ସଂଯୋଗସ୍ଥାପନକାରୀ ଗୀତିକବିତା ହିସାବରେ 'ସୁନ୍ଦର ସଂସାର', 'ନଦୀପ୍ରତି' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଶିଶୁ ମନସ୍ତତ୍ତ୍ୱମୂଳକ ଓ ପ୍ରକୃତି ବର୍ଣ୍ଣନାମୂଳକ ଏହି ଦୁଇଟି ବିଭାଗରେ ମଧୁସୂଦନଙ୍କ ଗୀତିକବିତା ଯେପରି ବିକାଶ ଲାଭ କରିଛି, ତାହା ତାଙ୍କର ସ୍ୱତଃସ୍ଫୂର୍ତ୍ତି ଉଚ୍ଚ ଦର୍ଶନ ସଂବଳିତ କବିତା ମଧ୍ୟରେ ନାହିଁ । ଦେଶ ଓ ଜାତି ମାନବସମାଜର ମଙ୍ଗଳ କାମନାରେ 'ଉତ୍କଳ ସଙ୍ଗୀତ', 'ଉତ୍କଳ ବନ୍ଦନା', 'ଜନ୍ମଭୂମି', 'ପୃଥିବୀ ପ୍ରତି', 'ମୋ ଜନନୀ' ଆଦି କବିତା ଯେପରି ଆଦର୍ଶବାଦର ପ୍ରଚାର କରିଛି, ସେଭଳି ଜାତୀୟତାର ଅନୁଶୀଳନ ସୁସ୍ପଷ୍ଟ ହୋଇଛି । ମଧୁସୂଦନଙ୍କ ଗୀତିକବିତା ସତ୍ୟ ଅନୁସନ୍ଧାନକାରୀ ଓ ଉଚ୍ଚ ଦର୍ଶନ ଚିନ୍ତାସଂବଳିତ ନୀତି ଶାସ୍ତ୍ର ମଧ୍ୟ । ବହିଃଦୃଷ୍ଟି ଅପେକ୍ଷା ତୀବ୍ର ଅନ୍ତର୍ଦୃଷ୍ଟି ତାଙ୍କ କବିତ୍ୱର ପ୍ରଧାନ ଯୋଗ୍ୟତା ।

ଆଧୁନିକ ଗୀତିସାହିତ୍ୟର ଆଙ୍ଗିକ ଓ ଆତ୍ମିକ ପରିପରିବର୍ତ୍ତନ ଦୃଷ୍ଟିରୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଗୀତିକାବ୍ୟଗୁଡ଼ିକ ଯଥା—କୋଇଲି, ଚଉପଦୀ, ଚଉତିଶା ଗୁଡ଼ିକୁ ବିଚାରକଲେ ସେ ଗୁଡ଼ିକୁ ଆମେ ସମ୍ପୂର୍ଣ୍ଣ ରୂପେ ଲିରିକ୍ କବିତା ରୂପେ ଗ୍ରହଣ କରିବାକୁ କୁଣ୍ଠାବୋଧ କରୁ । କାରଣ ଆଧୁନିକ କବିତାର ଆଙ୍ଗିକ ଗଠନ ପରିପାଟୀ ଓ ଆତ୍ମିକରସ ବିକାଶ ଏ ଦେଶର ଅତୀତ ସାହିତ୍ୟ ସହିତ କୌଣସି ଦିଗରେ ସାମଞ୍ଜସ୍ୟ ରକ୍ଷା କରିପାରି ନାହାନ୍ତି । ପରଂପରାରୁ ବିଚ୍ୟୁତ ଏହି ଆଧୁନିକ ସାହିତ୍ୟିକ ବିଭାଗ ପାଶ୍ଚାତ୍ୟ ସାହିତ୍ୟ ଦ୍ୱାରା ସର୍ବାଙ୍ଗରେ ପ୍ରଭାବିତ । ଇଂରାଜୀ ସାହିତ୍ୟରୁ ଆନୀତ 'ସିନେଟ୍' (ଚତୁର୍ଦ୍ଦଶପଦୀ କବିତା)କୁ ଏକାନ୍ତର ମେଳ ପ୍ରଭୃତି ଛନ୍ଦରୀତି ମାଧ୍ୟମରେ ରାଧାନାଥ ପ୍ରଥମେ ବଙ୍ଗଳା ସାହିତ୍ୟରେ ପରୀକ୍ଷା କରାଇଥିଲେ; କିନ୍ତୁ ମଧୁସୂଦନ ଓଡ଼ିଆ ସାହିତ୍ୟର ଗୀତିକବିତାରେ ସଫଳ ପ୍ରବର୍ତ୍ତକ ଭାବରେ ପରୀକ୍ଷୋତ୍ତୀର୍ଣ୍ଣ ହେଲେ । ଛନ୍ଦ ବୈଚିତ୍ର୍ୟ ଗୀତିକବିତାର ଏକ ପ୍ରଧାନ ବୈଶିଷ୍ଟ୍ୟ । ଏଥିପାଇଁ ମଧୁସୂଦନ ଇଂରାଜୀ ସାହିତ୍ୟ ଗଭୀର ଅଧ୍ୟୟନ କରି

ଖିତ ଆହରଣ କରିବାକୁ ବାଧ୍ୟ ହୋଇଛନ୍ତି । ଏହାର ପ୍ରମାଣ ସ୍ୱରୂପ 'ବସନ୍ତଗାଥା'ର ପ୍ରତ୍ୟେକ କବିତା ବିଶେଷ । ଏହାର ପ୍ରତ୍ୟେକ କବିତା ଓଡ଼ିଆ ସାହିତ୍ୟରେ ଆଧୁନିକତାର ଆଦ୍ୟ ବାର୍ତ୍ତାବହର ସଙ୍କେତ ନେଇ ସମୁଜ୍ଜ୍ୱଳ । ସନେଟ୍ ପରି 'ନିଶୀଥ ଚିନ୍ତା' ଓ 'ଭାରତ ଭାବନା' କବିତାରେ ସେ ଇଉରୋପୀୟ 'ସ୍ପେନସରିଆନ ଷ୍ଟାଂଜା' ପଦ୍ଧତିର ଅନୁସରଣ କରିଅଛନ୍ତି । ଛନ୍ଦର ପ୍ରବହମାନ ଗତି ବୈଚିତ୍ର୍ୟ ଯୋଗୁଁ ଇଂରାଜୀ କବିତାର ରୂପ ସୌନ୍ଦର୍ଯ୍ୟ ଅଭିବୃଦ୍ଧି ଲାଭ କରିଥାଏ । ତାର ଏକ ସାର୍ଥକ ଉଦାହରଣ 'ଭାରତ ଭାବନା' କବିତା । ଗୋଟିଏ ନିର୍ଦ୍ଦିଷ୍ଟଭାବ, ଗୋଟିଏ ପାଦରେ ପରିପୂର୍ଣ୍ଣତା ଲାଭ ନକରି ପ୍ରବହମାନ ଗତିରେ ଗୋଟିଏ ପାଦରୁ ଅନ୍ୟପାଦକୁ ଯାଇ କିପରି ଭାବ କଲ୍ଲୋଳ ମୁଖର ହୋଇ ଉଠେ, ତାହା ଏହି କବିତାରୁ ସ୍ପଷ୍ଟତଃ ଅନୁମିତ ହେବ । ଇଂରାଜୀର ଚତୁଷ୍କ ବା ଏକାନ୍ତରମେଳ ଓ ଟେରଜାଇଜମ୍ ମେଳ ପଦ୍ଧତିର 'ଆକାଶ ପ୍ରତି' ଓ 'ଏ ସୃଷ୍ଟି ଅମୃତ-ମୟହେ' କବିତା ଦ୍ୱୟରେ ପରୀକ୍ଷା କରାଇଅଛନ୍ତି । ତାହାଙ୍କ ଶୋକ ଲହରୀ, ମହାଦେବୀ ଭିକ୍ଟୋରିଆ, ରାଧାନାଥ ବିୟୋଗେ ଲିଖିତ ଶୋକ-ଶ୍ଲୋକ ପ୍ରଭୃତି କବିତା ଗୁଡ଼ିକ ଇଂରାଜୀ ଏଲିଜି ବା ଶୋକଗୀତ ପର୍ଯ୍ୟାୟଭୁକ୍ତ ଏବଂ ନଦୀ ପ୍ରତି, ଆକାଶ ପ୍ରତି, ପୃଥିବୀ ପ୍ରତି, ମାନବୀୟ ବନ୍ଧୁ ପ୍ରତି, କୌଣସି ପରଲୋକ ବାସିନୀ ପ୍ରତି, ଉତ୍କଳ ଜନନୀ ପ୍ରତି ପ୍ରଭୃତି 'ପ୍ରତି' ଚିହ୍ନିତ କବିତା ଗୁଡ଼ିକ ହିଁ ଇଂରାଜୀ 'ଓଡ଼' ଜାତୀୟ ।

ଭାବର ସଂହତି ରକ୍ଷାପାଇଁ ଶୈଳୀ ଓ ଭାଷାର କ୍ଲିଷ୍ଟତାକୁ ଆଧୁନିକ କବିତା ସର୍ବଦା ପରିହାର କରି ଆସିଛି । ଲିରିକାଲବାଲାଡ଼ସରେ ଇଂରାଜୀ କବି ଓ୍ୱାର୍ଡ଼ସଓ୍ୱାର୍ଥ ଲେଖିଛନ୍ତି—"Poetry is the image of man and nature" × × Poetry is the spontanious overflow of powerful feelings". ଅର୍ଥାତ୍ କବିତା ମନୁଷ୍ୟ ଓ ପ୍ରକୃତିର ପ୍ରତିମୂର୍ତ୍ତି ଏବଂ ଏହା ଶକ୍ତିଶାଳୀ ଆବେଗର ସ୍ୱତଃସ୍ଫୂର୍ତ୍ତି ଅଭିବ୍ୟକ୍ତି । ତେଣୁ ଭାବମୟ ରସୋତ୍ତୀର୍ଣ୍ଣ କବିତା ପାଇଁ ଜମକରାଜ ଚଉତିଶା ପରି ଶବ୍ଦାଡ଼ମ୍ବରପୂର୍ଣ୍ଣ ବର୍ଣ୍ଣାଢ୍ୟଶୈଳୀ ଓ ଛନ୍ଦୋବଦ୍ଧ ଧରାବନ୍ଧାଗତି ବୈଚିତ୍ର୍ୟ ଅପେକ୍ଷା ଗଭୀର ଅନୁଭୂତି ଲବ୍ଧ ସୁତୀବ୍ର ଭାବାବେଗ ଓ ତାହାର ସରଳ,

ଆଡ଼ମ୍ବରଶୂନ୍ୟ ବ୍ୟକ୍ତିଗତ ଆନ୍ତରିକ ରଚନା ଅଧିକ ପ୍ରଭାବଶାଳୀ ବୋଲି ପାଶ୍ଚାତ୍ୟ କବିଙ୍କର ମତ । ଏହି ମତବାଦର ପ୍ରଚଳନ ଆଧୁନିକ କବିତାର ଅନ୍ୟ ଏକ ଆଭିମୁଖ୍ୟ । ମଧୁସୂଦନ ଏହି ସତ୍ୟର ଅନୁସରଣ କରିବାପାଇଁ ବାଧ୍ୟ ହୋଇଛନ୍ତି । ଗାନ ଯୋଗ୍ୟତାକୁ ଛାଡ଼ିଦେଲେ ଭଞ୍ଜଙ୍କର—

"ସାରଙ୍ଗ ରଦ ପଲଙ୍କେ ସାରଙ୍ଗ ପଙ୍କିଲ ପଙ୍କେ
ସାରଙ୍ଗ ମୁଖୀ ସାରଙ୍ଗ ସାରଙ୍ଗରେ ମାତିଲେ ।
ଶ୍ରୀମତି ଶ୍ରୀପତି ବୃନ୍ଦାବନେ କେଳି ରଚିଲେ ।"

ଯେତିକି ମନରେ ପ୍ରଭାବ ପକାଇ ନଥାଏ ତାହା ଅପେକ୍ଷା ମଧୁସୂଦନଙ୍କ—

"ମୁକୁଟ ମଣ୍ଡିତ ରାଜଶିର
ନୁହଁଇ ଶାନ୍ତି ଆସ୍ପଦ ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର
ଆଜି ସେ ରାଜେନ୍ଦ୍ର ହିନେ କାଲି ସେ ଫକୀର ।"

ଅଧିକ ଭାବରେ ଚିତ୍ତକୁ ଆଲୋଡ଼ିତ କରିଥାଏ । ତେଣୁ ମଧୁସୂଦନ ଯେଉଁଠି ନୀତିବାଦୀ ହୋଇ ପଡ଼ିଛନ୍ତି, ସେଠାରେ ଅତି ସନ୍ତର୍ପଣରେ ପାଠକ ମନରେ ଗଭୀର ରେଖାପାତ କରାଇବାକୁ ଭାଷା, ଶୈଳୀ ଓ ଛନ୍ଦକୁ ଅଧିକରୁ ଅଧିକ ସରଳ ଓ ପ୍ରାଞ୍ଜଳ କରିଦେବାକୁ ଯଥାସମ୍ଭବ ଚେଷ୍ଟା କରିଅଛନ୍ତି ।

ପ୍ରକୃତି ଚିତ୍ରଣରେ ରାଧାନାଥଙ୍କ ପରେ ଅନ୍ୟତମ ଅଦ୍ୱିତୀୟ ଚିତ୍ରକାର ମଧୁସୂଦନ । ପ୍ରକୃତି ସାରା ବିଶ୍ୱରେ ପରିବ୍ୟାପ୍ତ । ତାହାର ମଧ୍ୟରେ ପରମ ପୁରୁଷଙ୍କର ଅନିର୍ବଚନୀୟ ନିର୍ଦ୍ଦେଶ ଅଭିବ୍ୟକ୍ତି ଲାଭକରେ । ମାର୍କସ ଅରେଲିୟସଙ୍କ ଭାଷାରେ—'O Nature ! From thee are all things, in the are all things and to thee all things return.' ସୃଷ୍ଟିର ଆଧାର ଏହି ପ୍ରକୃତିକୁ ଯୁଗେ ଯୁଗେ କବି, ଦାର୍ଶନିକ, ବୈଜ୍ଞାନିକ ପ୍ରଭୃତି ଭିନ୍ନ ଭିନ୍ନ ରୂପରେ ଚିତ୍ରଣ କରି ଆସିଛନ୍ତି । କେହି କେହି ତାହାର ବାହ୍ୟଚିତ୍ର ବର୍ଣ୍ଣନା କରିଅଛନ୍ତି ତ ଆଉ କେହି କେହି ତା'ର ଅନ୍ତର୍ଦୃଶ୍ୟ ବର୍ଣ୍ଣନାରେ ବ୍ୟସ୍ତ । ସ୍ୱର୍ଗୀୟ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ—"ପରଂବ୍ରହ୍ମଙ୍କ ମହିମା ଆବ୍ରହ୍ମ ସ୍ତମ୍ଭ ପରିପୂରିତ । ତାହାର ସ୍ଥୂଳତଃ

ବା ସୂକ୍ଷ୍ମତଃ ବାହ୍ୟତଃ ବା ଅନ୍ତରସ୍ଥ ବର୍ଣ୍ଣନା ହିଁ କବିତ୍ୱ ।" ଦୃଷ୍ଟିକୋଣରେ ଭିନ୍ନତାରେ ପ୍ରକୃତିର ଆଲେଖ୍ୟ ବିଭିନ୍ନ ରୂପ ଧାରଣ କରେ । ସେହି କାରଣରୁ ଇଂରେଜ କବି WordsWorthଙ୍କ 'ଡାଫୋଡିଲ୍' ଓ Robert Herik ଙ୍କ 'ଡାଫୋଡିଲ୍' ସମାନ ନୁହେଁ, କିମ୍ବା ମଧୁସୂଦନଙ୍କ 'ପଦ୍ମ' ଓ ଗଂଗାଧରଙ୍କ 'ପଦ୍ମ' ସମାନ ନୁହେଁ ।

ଇଂରାଜୀ ସାହିତ୍ୟରେ ପ୍ରସିଦ୍ଧ ଆଶାବାଦୀ କବି Robert Browning କବିତାର ସଂଜ୍ଞା ଦେବାକୁ ଯାଇ କହିଛନ୍ତି "All poetry is the problem of putting the in-finite into the finite." William WordsWorth ମଧ୍ୟ ତାଙ୍କର Tinetern Abbey କବିତାରେ ଏହାର ବାସ୍ତବତା ପ୍ରକୃତିର ପ୍ରତିଟି ଅଣୁରେ ଅନୁଭବ କରିଛନ୍ତି । ପ୍ରକୃତିର ଜଡ଼, ଚେତନା ବସ୍ତୁ ମଧ୍ୟରେ ଏକ ଭଗବତ୍ ସତ୍ତାର ଉପଲବ୍ଧି ଭାରତୀୟ ଦର୍ଶନ ଏବଂ ସଂସ୍କୃତିର ନିଜସ୍ୱ । ମନେହୁଏ କବି WordsWorth ଏହା ଅନୁଭବ କରିଛନ୍ତି ଓ ଗାଇଛନ୍ତି—

"A motion and a spirit
That impels all thinking things,
All objects of all thoughts
And rolls through all things'"

ଓଡ଼ିଆ ସାହିତ୍ୟରେ ମଧୁସୂଦନ 'ଭକ୍ତକବି' ରୂପେ ପରିଚିତ । ସାଧାରଣତଃ ସମାଲୋଚକମାନଙ୍କ ମତରେ, ସେ ଥିଲେ ଶିବର ଉପାସକ, ବ୍ରହ୍ମଜ୍ଞ । ତେଣୁ ପ୍ରକୃତିର ଛନ୍ଦେ ଛନ୍ଦେ ସେ ପରଂବ୍ରହ୍ମଙ୍କ ସତ୍ତା ଉପଲବ୍ଧି କରି ତାହାର ସନ୍ଧାନ ଦେବାରେ ବ୍ରତୀ ଥିଲେ । 'ପଦ୍ମ' କବିତାରେ—

"କୋଟୀ ଲବଣ୍ୟନିଧି ରେ ପଦ୍ମ ତୁହି
କି ଅମୃତେ ତୋ ତନୁ ଗଢ଼ିଲା ବିହି
ତୋ ରୂପ ଦରଶନେ ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ ଅମୃତମୟ ।"

ମଧୁସୂଦନଙ୍କ କବିତାରେ ପ୍ରକୃତିର ପ୍ରତ୍ୟେକ ବିଭବର ଚିତ୍ର ଦେଖିବାକୁ ମିଳେ । ପ୍ରଭାତ, ସଂଧ୍ୟା, ରଜନୀଠାରୁ ଆରମ୍ଭ କରି ଗ୍ରୀଷ୍ମ, ବର୍ଷା, ଶିଶିର, ବସନ୍ତ ପ୍ରଭୃତିର ଚିତ୍ର ଅତି ସୂକ୍ଷ୍ମାତି-ସୂକ୍ଷ୍ମ ଭାବରେ କବି ପ୍ରଦାନ କରିଅଛନ୍ତି । ଗ୍ରାମ୍ୟ ଦୃଶ୍ୟ ବର୍ଣ୍ଣନାରେ କବି ଯେଉଁ ଅପୂର୍ବ ସିଦ୍ଧହସ୍ତତାର ପରିଚୟ ଦେଇ-ଅଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ଅନବଦ୍ୟ । ନନ୍ଦକିଶୋର 'ପଲ୍ଲୀକବି' ରୂପେ ପରିଚିତ ଥିଲେ ମଧ୍ୟ, ମଧୁସୂଦନଙ୍କ ବର୍ଣ୍ଣନା ସ୍ଥାନେ ସ୍ଥାନେ ତାହାକୁ ବଳିଯାଇଛି । ସରଳ ଓ ସାବଲୀଳ ଭାଷାଦ୍ୱାରା ସ୍ୱଭାବ ସୁନ୍ଦର ଚିତ୍ର ପ୍ରଦାନ କବିଙ୍କ ଲେଖନୀର ଗୋଟିଏ ଶ୍ରେଷ୍ଠ ବୈଶିଷ୍ଟ୍ୟ । 'ହେମନ୍ତ ଋତୁ'ର ବର୍ଣ୍ଣନା ପର୍ଯ୍ୟାୟରେ କବି ଲେଖିଅଛନ୍ତି---

"ପକ୍ୱଶାଳିପୂର୍ଣ୍ଣ କେଦାର ଦେଖି କୃଷକଗଣେ
ଗୀତ ଗାଇ ଶସ୍ୟ କାଟନ୍ତି ଅତି ପ୍ରଫୁଲ୍ଲ ମନେ ।
ଖଳା କରି ଗ୍ରାମ ସୀମାରେ ଧାନ ଅମଳ କରି
ଗୃହକୁ ନିଅନ୍ତି ଆନନ୍ଦେ ବିଭୁ ଦୟା ସୁମରି ।"

ସେହିପରି 'ବର୍ଷା' ଆସିଲେ ପଲ୍ଲୀର ଶୋଭା ଲୋଭନୀୟ ହୋଇଉଠେ । କବିଙ୍କ ଭାଷାରେ—

"ଶ୍ୟାମଳ ଦୁର୍ବାଦଳେ ଶୋଭିତ ମହୀ
ସାଧବବୋହୂ ତହିଁ ପରେ ଶୋଭଇ ।"

ଘନ ତୋଟାଘେରା ଅଖ୍ୟାତ, ଅଶ୍ରୁତ ପଲ୍ଲୀରେ ଯେ ଏପରି ପ୍ରାକୃତିକ ସୌନ୍ଦର୍ଯ୍ୟ ଥାଇପାରେ, ତାହା ଜାଣିହେବ କେବଳ ମଧୁସୂଦନ, ନନ୍ଦକିଶୋରଙ୍କ ପଦ୍ୟରୁ ଓ ସେନାପତିଙ୍କ ଗଦ୍ୟରୁ । ବର୍ଣ୍ଣନାନୁରୂପ ଭାଷା ପ୍ରୟୋଗ କବିଙ୍କର ରଚନାକୁ ଆହୁରି ସ୍ୱାଭାବିକ କରିପାରିଅଛି । 'ପ୍ରଭାତ' ବର୍ଣ୍ଣନାରେ କବି ଲେଖିଅଛନ୍ତି—

"କାଆ କାଆ ରାବେ ଘରେ ଘରେ ରାଇ
କୁଆଏ ବୁଲନ୍ତି ଜଗତ ଜଗାଇ ।"

ଏହାଛଡ଼ା ଉପମା ଉପମେୟ ପ୍ରୟୋଗରେ କବିଙ୍କର ଶ୍ରେଷ୍ଠ ପ୍ରତିଭାର ପରିଚୟ ମିଳେ । ଗ୍ରୀଷ୍ମ ବର୍ଣ୍ଣନାରେ 'ମୃଗତୃଷ୍ଣା'ର ଦୃଶ୍ୟ ଏହାର ପ୍ରକୃଷ୍ଟ ଉଦାହରଣ । କବିଙ୍କ ଭାଷାରେ—

"କଳା ଭ୍ରମରକୁ ଜିଣି ନୀଳିମାରେ
ଦିଶେ ମୃଗତୃଷ୍ଣା ଜଳ ।
ଧାଆଁନ୍ତେ ପଥିକ ଅଦୃଶ୍ୟ ହୁଅଇ
ପଥିକ ଆଶା ବିଫଳ ।"

ସ୍ୱାଭାବିକ ବର୍ଣ୍ଣନା ମାଧ୍ୟମରେ ସୂକ୍ଷ୍ମାତିସୂକ୍ଷ୍ମ ଚିତ୍ର ପ୍ରଦାନ ମଧୁସୂଦନଙ୍କ ପ୍ରକୃତିର ଅନ୍ୟତମ ବୈଶିଷ୍ଟ୍ୟ । ସଂଧ୍ୟାର ବର୍ଣ୍ଣନା ଉତ୍କଳ ସାହିତ୍ୟରେ ନୂତନ ନୁହେଁ । ପ୍ରାଚୀନ ସାହିତ୍ୟରୁ ଆରମ୍ଭ କରି ଅତ୍ୟାଧୁନିକ ସାହିତ୍ୟ ପର୍ଯ୍ୟନ୍ତ ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ କବିଙ୍କଦ୍ୱାରା ଏହା ଚର୍ଚ୍ଚିତ ହେବାର ଅନେକ ଉଦାହରଣମାନ ରହିଛି । ତେଣୁ ବର୍ଣ୍ଣନାର ତାରତମ୍ୟରେ ଦୃଷ୍ଟିକୋଣରେ ଭିନ୍ନତା ପ୍ରଦର୍ଶିତ ହୋଇଅଛି । ଏହି ସଂଧ୍ୟାର ବର୍ଣ୍ଣନା କରି କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ ଗାଇଥିଲେ—

"ଏଥିଅନ୍ତେ ଶୁଣ ରସ ଗ୍ରୀଷମ ହିଣି ପ୍ରବେଶ
ଉଦୟ ତାରାଜାଳବେଶ ହେଲେ ଆକାଶେ ।
ଚନ୍ଦ ସୁଖ ଚନ୍ଦନନ୍ଦ ଛେଦନେ ହାରକ ଚନ୍ଦ
ଫିଙ୍ଗିଛି ତାତ ସିଙ୍ଗିରେ କାମ କି ରୋଷେ ।"

(ଲାବଣ୍ୟବତୀ)

ଆଧୁନିକ ସାହିତ୍ୟର ସ୍ରଷ୍ଟା କବିବର ରାଧାନାଥ ମଧ୍ୟ ସଂଧ୍ୟା ବର୍ଣ୍ଣନା ପର୍ଯ୍ୟାୟରେ କହିଛନ୍ତି—

"ପାରିଲେଣି ଏବେ ଦେବ ବିକର୍ତ୍ତନ
ଶୈଳର ଶିଖରେ ସ୍ୱର୍ଣ୍ଣ ସିଂହାସନ ।" (ଚିଲିକା)

କବି ମଧୁସୂଦନ କହିଛନ୍ତି—

"ପଶ୍ଚିମ ଦିଗରେ ବୁଡ଼ଇ ରବି
ଆହା କି ସୁନ୍ଦର ଲୋହିତ ଛବି ।" ( ଶିଶୁଗୀତ )

ପୂନଶ୍ଚ ସଂଧ୍ୟା ବର୍ଣ୍ଣନାରେ—

"ଦିନ ଅନ୍ତେ ରାତି ଆସେ ତାହାଙ୍କ ବିଧାନେ

× × ×

କରଯୋଡ଼ି କର ଏବେ ସଂଧ୍ୟାର ବନ୍ଦନ ।"

ମୂଳତଃ ଦେଖିବାକୁ ଗଲେ, ପ୍ରକୃତିର ସେଉଁ ବାହ୍ୟବସ୍ତୁଗୁଡ଼ିକ ମାନବ ସଂସାରପ୍ରତି ହିତକର, ମଙ୍ଗଳପ୍ରଦ କବି ସେହି ବିଷୟର ଚିତ୍ର ପ୍ରଦାନ କରିଅଛନ୍ତି । କବିଙ୍କ ଦୃଷ୍ଟିରେ ପ୍ରକୃତି ହେଉଛି ପରମ ପୁରୁଷଙ୍କର କ୍ରୀଡ଼ାସ୍ଥଳୀ । ଏହି ପ୍ରକୃତି ମଧ୍ୟରୁ ମାନବ ସୃଷ୍ଟି ଓ ଏହି ପ୍ରକୃତିରେ ହିଁ ତା'ର ବିଲୟ । ତେଣୁ ପ୍ରକୃତି ହିଁ ଆମର ମହା ଶିକ୍ଷାପୀଠ । ମାନବର କର୍ତ୍ତବ୍ୟଜ୍ଞାନ, କର୍ମ-ପ୍ରେରଣା, ଆନନ୍ଦାନୁଭୂତି ଓ ଶାଶ୍ୱତ କଳା କୁଶଳତାର ସଙ୍କେତ କେବଳ ପ୍ରକୃତି ହିଁ ବହନ କରିଅଛି । ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ମଧୁସୂଦନଙ୍କ ଦାନ ଅତୁଳନୀୟ । କବି ଯୁଗେ ଯୁଗେ ଅମର ପୂଜ୍ୟ ଓ ନମସ୍ୟ ।

ମଧୁସୂଦନ ଯେ କେବଳ ଭକ୍ତ ଥିଲେ ତାହା ନୁହେଁ, ତାଙ୍କ ପ୍ରାଣରେ ଦେଶ ଆଉ ଭକ୍ତ ଥିଲି । ସେ ଦେଶସେବୀ ଭାବରେ ଦେଶର ତଥା ଜନ୍ମଭୂମି ଉତ୍କଳର ଉନ୍ନତି ନିମିତ୍ତ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଉଥିଲେ । 'ଉତ୍କଳ ଗାଥା' ତାହାଙ୍କ ଜାତୀୟତା ମୂଳକ କବିତାର ଏକ ସଂକଳନ । ମଧୁସୂଦନଙ୍କୁ ପ୍ରଥମ ନ ହେଲେ ହେଁ ବିଶିଷ୍ଟ ଜାତୀୟତାବାଦୀ କବି ଭାବରେ ଗ୍ରହଣ କରାଯାଇ ପାରେ । ମାତୃଭୂମି ଓ ମାତୃଭାଷାକୁ ସେ ଜନନୀ ରୂପରେ କଳ୍ପନା କରି ଉଭୟଙ୍କ ସେବାରେ ଆତ୍ମନିୟୋଗ କରିବା ହିଁ ଆପଣାର ଧର୍ମବୋଲି ବର୍ଣ୍ଣନା କରି ଲେଖିଛନ୍ତି—

"ମାତୃଭାଷା ମାତୃଭୂମି ଉଭୟେ ଜନନୀ,
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।
ଏ ମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।"

ଠିକ୍ ଏହାର ପ୍ରତିଧ୍ୱନି 'ଉତ୍କଳ-ବନ୍ଦନା' କବିତାରେ ଧ୍ୱନିତ—

"ଜୟ ମା ଜନମଭୂମି ଉଦାର ଉତ୍କଳଭୂମି
ତୋର ସ୍ନେହ କୋଳେ ମାଗୋ ଜନ୍ମ ଆମ୍ଭର
କୋଟୀ ସୁତ ଘେନି କୋଳେ ପାଳୁଅଛୁ ସ୍ନେହ ଭୋଳେ
ତୁହି ମା' କରୁଣାମୟୀ କରି ଆଦର ।"

ଉତ୍କଳଗାଥା ସଂକଳନର କବିତାଗୁଡ଼ିକ ଉତ୍କଳର ଗୌରବ ସଂବଳିତ, ଜାତୀୟତା ମୂଳକ ଅଥବା ଉଦ୍‌ବୋଧନାତ୍ମକ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଅବ୍ୟବହିତ ପରେ ଏହା ପ୍ରକାଶିତ ଓ ଉତ୍କଳ ସମ୍ମିଳନୀର ପ୍ରବର୍ତ୍ତକ ମଧୁବାବୁଙ୍କ ଉତ୍ସର୍ଗୀକୃତ । ପ୍ରତ୍ୟେକ କବିତା ଗୁଡ଼ିକରେ କବି ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଓଡ଼ିଶାର ସବୁ ଅଞ୍ଚଳର ଜନସାଧାରଣଙ୍କୁ ସମୁନ୍ନତ, କର୍ମତତ୍ପର ଓ ମାତୃଭୂମିର ଉନ୍ନତିକାମୀ ହେବା ଲାଗି ଆହ୍ୱାନ କରିଅଛନ୍ତି । କେବଳ ସେତିକି ନୁହେଁ, ସର୍ବଭାରତୀୟ ଭାବରେ ମଧ୍ୟ ଉଦ୍‌ବୁଧ ହେବାକୁ ସେ ଉତ୍କଳୀୟମାନଙ୍କୁ ଉପଦେଶ ଦେଇଅଛନ୍ତି । 'ନୂତନ ଶିକ୍ଷା' ଓ 'ନୂତନ ଧର୍ମ'ରେ ଅନୁପ୍ରାଣିତ ହେଲେ ଭାରତ ଜନନୀ ଗୌରବମୟୀ ହେବ ବୋଲି କବି ଆଶାନ୍ୱିତ ହୋଇ କହିଅଛନ୍ତି—

"ହିରଣ୍ମୟ ପ୍ରେମ କିରଣ
ଦେଖ ଭାରତ ଶିରେ
ବିଚ୍ଛିନ୍ନ ବିଭିନ୍ନ ଭାରତ
ଏକ ହୋଇଛୁ ଧୀରେ ।
ବର୍ଣ୍ଣଭେଦ ଧର୍ମଭେଦର
ଦିନ ହେଉଛୁ ଶେଷ
ମହା ଯୋଗେ ହେବ ଭାରତ
ମହାଭାରତ ବର୍ଷ ।" ( ନବଯୁଗ )

ଉତ୍କଳ ମାତାର ଜୟ ଜୟ ଗାନ କରି ପ୍ରତ୍ୟେକ ଉତ୍କଳୀୟ ଏ ଦେଶର ବୁକୁ ଉପରେ ପୁନାର୍ବାର ହିଉଧ ତୋଳନ୍ତୁ ବୋଲି ମଧୁସୂଦନ ଚନ୍ତା କରୁଥିଲେ । ସେ ଲେଖିଛନ୍ତି—

"ଚଲ ଉତ୍କଳ ସନ୍ତାନ
ସମ୍ମୁଖେ ଅମୃତ ଧାମ
ମାଜି ନେତ୍ର ଜ୍ଞାନ ଅଞ୍ଜନରେ
ହୁଅ ସର୍ବେ ଅଗ୍ରସର
ଧର ପରସ୍ପର କର
ଜୀବନର ବ୍ରତ ସାଧନରେ ହେ ନରନାରୀ ।"

ଅନୁବାଦରେ ମଧୁସୂଦନଙ୍କ ହସ୍ତ କୌଶଳ ସୁପ୍ରସିଦ୍ଧ । ଗଦ୍ୟରେ ପଦ୍ୟରେ ତାଙ୍କର ଅନୁବାଦ ଅଛି ସତ; କିନ୍ତୁ ଆତ୍ମଗୋପନ ନାହିଁ । ଅନୁବାଦ ଯାହାହେଉନା କାହିଁକି ଉଦ୍ଦେଶ୍ୟ ରକ୍ଷଣରେ ଅପଲାପ ନାହିଁ । କବିତାବଳୀର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ସଂସ୍କୃତ ରଘୁବଂଶର ଅନୁବାଦ, ଅବଶ୍ୟ ଏହା ରଘୁବଂଶର ଆକ୍ଷରିକ ନୁହେଁ, ତଥାପି ମୂଳ ବିଷୟବସ୍ତୁ ସହ ତାଙ୍କର ଅନୁବାଦ ଅନେକ ସ୍ଥଳରେ ଭାବସାମ୍ୟ ରକ୍ଷା କରିଛି । ଏତଦ୍‌ବ୍ୟତୀତ ସେ ମଧ୍ୟ ଉତ୍ତର ରାମଚରିତ ଅନୁବାଦ କରିଥିଲେ । ରଘୁବଂଶରେ ଅଛି—

"ଇମାଂ ତଟା ଶୋକ ଲତାଂଚତନ୍ୱୀ
ସ୍ତନାଭିରାମ ସ୍ତବକାଭିନମ୍ରାମ୍
ତ୍ୱତ୍ପ୍ରାପ୍ତି ବୁଦ୍ଧ୍ୟା ପରିରବ୍‌ଧୁକାମଃ
ସୌମିତ୍ରିଣା ସାଶ୍ରୁରହଂ ନିଷିଦ୍ଧଃ ।"

ଅନୁବାଦରେ ମଧୁସୂଦନ ଲେଖିଥିଲେ—

"ସ୍ତବକ ସ୍ତନରେ ନମ୍ର ଅଶୋକ ବଲ୍ଲରୀ
ଦେଖି ପାଇଲି ତୁମକୁ ଏହା ମନେକରି
ଅଧୀର ହରଷେ ଶୋକ ଆଲିଙ୍ଗନ ଆଶେ
ଅଶ୍ରୁପୂର୍ଣ୍ଣ ନୟନରେ ଧାଆନ୍ତେ ତା ପାଶେ,
ନୁହନ୍ତି ଏ ସୀତାଦେବୀ ସୁମିତ୍ରା ନନ୍ଦନ
ଏମନ୍ତ ବୋଲିଣ ମୋତେ କଲେ ନିବାରଣ ।"

ସଂସ୍କୃତ ରଘୁବଂଶରେ ଅଛି—

"ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ
ତମାଲ ତାଳୀ ବନରାଜିନୀଲା
ଆଭାତିବେଲା ଲବଣାମ୍ବୁରାଶେଃ
ଧାରା ନିବଦ୍ଧେ କଳଙ୍କ ରେଖା ।"

ଅନୁବାଦରେ ମଧୁସୂଦନ ଲେଖିଛନ୍ତି—

"ନୀଳଦେଶେ ତୀର ତାଳୀତମାଳ ମାଳରେ
ଲୌହ ଚକ୍ର ସମ ସିନ୍ଧୁ ଅଛଇ ଆକାରେ ।
ଚକ୍ରର କଳଙ୍କ ରେଖା ପ୍ରାୟ ସେହି ତୀର
ଦୂରରୁ ଦିଶଇ ଦେଖ କେମନ୍ତ ରୁଚିର ।"

ତାଙ୍କ ଅନ୍ୟ ଗୋଟିଏ ଇଂରାଜୀ କବିତା ନିର୍ବାସିତର ବିଳାପ Cowperଙ୍କ 'The Solitude of Alexander Selkrike'ର ଅନୁବାଦ । ଗାଁ ଗଣ୍ଡା, ବନ୍ଧୁ ବାନ୍ଧବ ଓ ଆତ୍ମୀୟସ୍ୱଜନଙ୍କ ନିକଟରୁ ବିଚ୍ଛିନ୍ନ ହୋଇ ନିର୍ବାସିତ ବ୍ୟକ୍ତି ଶୋକାକୁଳ ହୋଇ ନିଜ ଭାଗ୍ୟକୁ ନିନ୍ଦା କରୁଛି । Cowperଙ୍କ କବିତାର ଆରମ୍ଭ—

"I am the monarch of all I survey
My right there is hone to dispute.
From the centre all round to the sea
I am Lord of the fowl and the brute."

ମଧୁସୂଦନ ତାର ଅନୁବାଦରେ ନିର୍ବାସିତ ବିଳାପର ଆରମ୍ଭ କରିଛନ୍ତି—

"ଦେଖଇ ନେତ୍ର ଯାହା ଚଉଦିଗର
ସେ ସବୁର ଅଟଇ ମୁଁ ଅଧୀଶ୍ୱର ।
ମହୀ ମଣ୍ଡଳେ ନାହିଁ ଏମନ୍ତ ଜନ
ମୋ ଅଧିକାର ଲେଭେ କରିବ-ରଣ ।

ଘୂର ଆଡ଼ର ନୀଳ ସମୁଦ୍ର ଯାଏ
ଫୁଲ ଫଳ ଶୋଭିତ ବନ ଲତାଏ ।
କୀଟ, ପତଙ୍ଗ, ପକ୍ଷୀ କେଶରୀ କପି
ପଶୁପକ୍ଷୀ ଯେତେକ ସବୁ ମୋହର ।"

ନିଃସଙ୍ଗ ଜୀବନରେ ମଣିଷ କେତେଦିନ ବଞ୍ଚିପାରେ ? ଘୂରଆଡ଼େ ଖାଲି ସମୁଦ୍ରର ଗର୍ଜନ । ମଣିଷର ଚିହ୍ନ ବର୍ତ୍ତି ନାହିଁ । ନିର୍ବାସିତ ବ୍ୟକ୍ତିର ପ୍ରାଣ ଆକୁଳରେ ଚିତ୍କାର କରି ଉଠୁଛି । ସେ ଏଠୁ ମୁକ୍ତ ହୁଏ୍ଁ । କିନ୍ତୁ ତା' କି କେବେ ସମ୍ଭବପର । ଶୋକାତୁର ଭାବରେ ତା ବେଦନାବୋଧ ପ୍ରାଣର ଆକୁଳତା ସେ ବାୟୁ ଆଗରେ ପ୍ରକାଶ କରି କହୁଛି—

"ରେ ବାୟୁ କ୍ରୀଡ଼ନକ ମୁହିଁ ତୋହର
ମୋର ପ୍ରାର୍ଥନା ବାରେ ଶ୍ରବଣ କର ।
ବନ୍ଧୁଆଣ ସ୍ୱଦେଶ ସୁସମାଗ୍ନର
ପାଇବି ନାହିଁ ଆଉ ଦର୍ଶନ ଯାର ।"

Cowperଙ୍କ ଭାଷାରେ—

"Ye Wind ! That have made me your sports
Convey to this desolate ! Lore
Some cordial endearing report
Of a land I shall visit no more."

ସଂସାରର ସ୍ନେହ ପ୍ରେମ କଥା ମନେ ପକାଇ ନିର୍ବାସିତ ବ୍ୟକ୍ତି ପାଗଳ ହୋଇଛି । ନିର୍ଜ୍ଜନ ଦ୍ୱୀପରୁ ସେ ମୁକ୍ତି ପ୍ରୟାସୀ । ହେଲେ ଏ କେବଳ ଗୋଟିଏ କଳ୍ପନାଛଡ଼ା ଅନ୍ୟ କିଛି ନୁହେଁ । ଘୂରଆଡ଼େ ଘେରି ରହିଛି ତାର ବିଶାଳ ନୀଳ ସମୁଦ୍ର । କିପରି ସେ ଉଦ୍ଧାର ପାଇବ ସେଥିପାଇଁ ସେ ଚିନ୍ତା କରୁଛି ।

"କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର
ଯାର ପ୍ରାପତି ଯୋଗୁଁ ଦେବତା ନର ।"

Cowperଙ୍କ ଭାଷାରେ—

"Sciety, frien ship and love Divinely bestowed upon man."

ମଧୁସୂଦନଙ୍କ ଉକ୍ତ କବିତାଟିକୁ ପାଠକଲେ ଜଣାଯାଏ, ଗମ୍ଭୀର ଭକ୍ତି ଯୋଗୁଁ କବି ଉକ୍ତ କବିତାଟିକୁ ଅନୁବାଦ କରିଛନ୍ତି । ଅବଶ୍ୟ କବିତାଟି ଆକ୍ଷରିକ ନୁହେଁ, କିନ୍ତୁ କବିତାଟିର ଭାବାନୁବାଦ ଉଚ୍ଚକୋଟୀର ।

ଓଡ଼ିଆ ସାହିତ୍ୟରେ କବି ମଧୁସୂଦନଙ୍କୁ ନୂତନ ଗଦ୍ୟ ଶୈଳୀର ପ୍ରବର୍ତ୍ତକ ଭାବରେ ମଧ୍ୟ ଗ୍ରହଣ କରାଯାଇଥାଏ । ତାହାଙ୍କର ପ୍ରଥମ ଗଦ୍ୟରଚନା ହେଉଛି 'ପ୍ରଣୟର ଅଦ୍ଭୁତ ପରିଣାମ ।' ଏହା ସିସିଲି ଦେଶର ଏକ ଗଳ୍ପ ଅବଲମ୍ବନରେ ଲିଖିତ ହୋଇଥିଲା । ଏହା ବ୍ୟତୀତ ସ୍କୁଲମାନଙ୍କରେ ପାଠ୍ୟ ଉପଯୋଗୀ ଅନେକ ଗୁଡ଼ିଏ ପ୍ରବନ୍ଧ ଲେଖିଥିଲେ । ତାହା ପ୍ରବନ୍ଧମାଳା ନାମରେ ୧୮୮୦ ରେ ପ୍ରକାଶ ପାଇଲା । ତାହାଙ୍କ ରଚିତ ହେମମାଳା ଅନ୍ୟ ଏକ କ୍ଷୁଦ୍ର ଗଳ୍ପ । ଏଥିରେ ପ୍ରେମିକର ପ୍ରେମୋନ୍ମାଦ, ବିରହୀର ଶୋକୋଚ୍ଛ୍ୱାସ, ଅନୁରାଗୀର ଅନୁରାଗ, ଭକ୍ତର ଭକ୍ତି ଇତ୍ୟାଦି ପ୍ରକାଶ ପାଇଛି ।

ତାଙ୍କ ପ୍ରବନ୍ଧମାନଙ୍କ ମଧ୍ୟରୁ କେତେକ ଇଂରାଜୀରୁ ଅନୂଦିତ ଓ କେତେକ ମଧ୍ୟ ଇଂରାଜୀ ପ୍ରବନ୍ଧର ଭାବାବଲମ୍ବନରେ ଲିଖିତ ହୋଇଅଛି । ପ୍ରବନ୍ଧମାଳାରେ ଥିବା ପ୍ରବନ୍ଧ ଗୁଡ଼ିକ ମଧ୍ୟରୁ ଧର୍ମନୀତି, ରାଜନୀତି, ରାମାୟଣ, ଶାସନ ପ୍ରଣାଳୀ ପ୍ରଭୃତି ତାଙ୍କର ମୌଳିକ ପ୍ରବନ୍ଧ ଅଟେ । ମାତ୍ର ନେପୋଲିୟନ,, ଆଇଜାକ୍, ବୁଦ୍ଧଦେବ, ଦୁର୍ଗାବତୀ, ଚନ୍ଦ୍ର ଓ ତାରା ପ୍ରଭୃତି ଇଂରାଜୀ ସାହିତ୍ୟର ଅନୂଦିତ ।

ମଧୁସୂଦନ ସଂସ୍କୃତ ଆଦର୍ଶରେ ମାର୍ଜିତ ସାଧୁ ଶବ୍ଦ ସମନ୍ୱିତ ଏକ ନୂତନ ଗଦ୍ୟ ଶୈଳୀ ପ୍ରବର୍ତ୍ତନ କରିଯାଇଅଛନ୍ତି । ତାଙ୍କ ଗଦ୍ୟ ରଚନାବଳୀ ଗିରି ଗହ୍ୱରରୁ ନିଃସୃତ ସ୍ୱଚ୍ଛ ଜଳଧାରାପରି । ତହିଁରେ କୌଣସି କୃତ୍ରିମତା ନାହିଁ । ସଂସ୍କୃତ ଗଦ୍ୟ ତଥା ସଂସ୍କୃତ ଅନୁପ୍ରାଣିତ ବଙ୍ଗଳାର ବିଦ୍ୟାସାଗରୀୟ ଗଦ୍ୟରୀତି ହିଁ ସମ୍ଭବତଃ ତାହାଙ୍କର ଆଦର୍ଶ ଥିଲା । ତାଙ୍କ ଲିଖିତ ପ୍ରବନ୍ଧ-

ଗୁଡ଼ିକ ମୁଖ୍ୟତଃ ଶିକ୍ଷାପ୍ରଦ ଓ ଚିନ୍ତାମୂଳକ ବିଷୟବସ୍ତୁ ଅବଲମ୍ବନରେ ରଚିତ ଥିଲି ।

କବି ମଧୁସୂଦନ ଥିଲେ ଉପନିଷଦର ସାଧକ । ଉପନିଷଦର ଉଦାର ବାଣୀ, ଉପନିଷଦର ମହିମାମୟ ତୁରୀୟ ଉପଲବ୍ଧି କବିଙ୍କ ଚିତ୍ତ, ଚରିତ୍ର ଓ ରଚନାରେ ଅନିର୍ବଚନୀୟ ରୂପ ଲାଭ କରିଛି । ଉପନିଷଦର ମୂଳଗ୍ରନ୍ଥ ହେଉଛି ଆନନ୍ଦର ଛନ୍ଦ ।

"ଆନନ୍ଦୋ ବ୍ରହ୍ମେତି ବ୍ୟାଜାନାତ୍ ।
ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ ।
ଆନନ୍ଦ ପ୍ରୟନ୍ତ୍ୟଭି ସଂବିଶନ୍ତୀତି ।"

ଅର୍ଥାତ୍ ଆନନ୍ଦ ହିଁ ବ୍ରହ୍ମ । କାରଣ ଏଇ ସମସ୍ତ ପ୍ରାଣୀ ଆନନ୍ଦରୁ ହିଁ ଜାତ ଏବଂ ଆନନ୍ଦଦ୍ୱାରା ଜୀବିତ ରହିଛନ୍ତି । ପୁଣି ବିନାଶ ସମୟରେ ଏଇ ଆନନ୍ଦରେହିଁ ସବୁ ବିଲୀନ ହୋଇଯାନ୍ତି । ତେଣୁ ପଙ୍କରୁ ଉତ୍ଥିତ ପଦ୍ମର ସୂର୍ଯ୍ୟାରାଧନାରେ ଆନନ୍ଦିତ ହୋଇ ଉପନିଷଦର ସାଧକ ମଧୁସୂଦନ ନିଜର ସର୍ବଶ୍ରେଷ୍ଠ ଆଶାର ଚରମ ସାର୍ଥକତା ଦେଖିବାକୁ ପାଇଛନ୍ତି—

"ସର୍ବ ଶୋଭାର ସଦ୍ମରେ ପଦ୍ମ ତୋର
ସଙ୍ଗେ ନିଗୂଢ଼ ଯୋଗ ଅଛଇ ମୋର,
ଜୀବନ ମରଣରେ ତୋ ସଙ୍ଗେ ମିଶି
ଥାଉ ମୋ ମନ ପଦ୍ମ ଦିବସନିଶି ।"

କବି ପଦ୍ମ କବିତାରେ ଯେପରି ପରାତ୍ପର ବିଭୁଙ୍କ ନିକଟରେ ନିଜର ଜୀବନକୁ ଦ୍ୱିଧାହୀନ ଭାବରେ ଅତି ବ୍ୟାକୁଳତା ସହିତ ଅଜାଡ଼ି ଦେବାକୁ ଚାହିଁଛନ୍ତି ଠିକ୍ 'ନଦୀପ୍ରତି' କବିତାରେ କବିଙ୍କ ସେହି ବ୍ୟାକୁଳ ନିବେଦନ, ବିଳିଷ୍ଠ ଭାଗବତ ପ୍ରୀତିର ପୂର୍ଣ୍ଣ କଲ୍ଲୋଳ ଉଦ୍‌ବେଳ ହୋଇ ଉଠିଛି । ନଦୀ ସମୁଦ୍ର ମଧ୍ୟରେ ଅଜାଡ଼ି ଦେବାକୁ ଯେଉଁ ତୀବ୍ର ପ୍ରେରଣା ଅନୁଭବ କରିଛି ତାହାହିଁ ହେଉଛି ଭଗବତ୍ ଚରଣରେ କବିପ୍ରାଣର ନିଜକୁ ବିଳୀନ କରିଦେବାର ଆକୁଳ ଆକର୍ଷଣ । ନଦୀପ୍ରତି କବିତାରେ କବି ଲେଖିଛନ୍ତି—

"କେ ମୋତେ ଡାକଇ ଏସନ ?
କେ ଢାଳିଲି ଶ୍ରବଣେ ଅମୃତ ନିସ୍ୱନେ
କରି ମୋ ମନ ଉଚ୍ଚାଟନ ।"

ଏ ସବୁ ସତ୍ତ୍ୱେ ସେ ଏକ ବଳିଷ୍ଠ ଓ ଦୃଢ଼ ଆଶାର ଲଳିତ ମଧୁର ରୂପ କଳ୍ପନା କରି ପାରିଛନ୍ତି । ଈଶ୍ୱର ବିଶ୍ୱାସ ତାଙ୍କୁ ପ୍ରବଳ ଦୃଢ଼ତା ଓ ପ୍ରବଳ ଧୈର୍ଯ୍ୟ ଦାନ କରିଛି । 'ଜୀବନ ଚିନ୍ତା' କବିତାରେ ସେ କହିଛନ୍ତି—

"ଧରି ଧୈର୍ଯ୍ୟ ଘେନରେ ସାନ୍ତ୍ୱନା
ଅଛି ସେହି ମହାଧନ, ସେ ମହାସ୍ପର୍ଶ ରତନ,
ସେ ଅମୃତ ମହୌଷଧି, ଯାହାର କାମନା
ଆଶା ଜାଗ୍ରତ ସତତ କରେ ଉଦ୍ଦୀପନା ।"

ପରଂବ୍ରହ୍ମଙ୍କ ସଂପର୍କରେ ଈଶ୍ୱର ଏବଂ ଏହାଙ୍କ ଦ୍ୱାରା ସାରା ବିଶ୍ୱ ଆଚ୍ଛନ୍ନ ବୋଲି ଉପଲବ୍ଧି କରିବାକୁ, ଏହାଙ୍କର ତ୍ୟାଗକୁ ଭୋଗ କରିବାକୁ ଓ ନିର୍ଲୋଭ ହେବାକୁ ଉପନିଷଦ ନିର୍ଦ୍ଦେଶ ଦେଇଛି । ଈଶୋପନିଷଦରେ କୁହାଯାଇଛି—

"ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ ।"

ଉପନିଷଦର ଏହି ପବିତ୍ର ଉଚ୍ଚାରଣ ଭକ୍ତକବିଙ୍କ ବହୁ କବିତାରେ ରମଣୀୟ ଆବେଗ ସହକାରେ ଧ୍ୱନିତ ହୋଇଛି । 'ଋଷିପ୍ରାଣେ ଦେବାବତରଣ' କବିତାରେ ମଧୁସୂଦନ କହିଛନ୍ତି—

"ଦୂରରୁ ସୁଦୂର, ଚିନ୍ତା ବାକ୍ୟେ ଅଗୋଚର,
ନିକଟୁ ନିକଟ, ପ୍ରାଣ ସମସ୍ତ ପ୍ରାଣର ।"

ମଧୁସୂଦନଙ୍କ ସମଗ୍ର ଜୀବନକୁ ଉତ୍ତମରୂପେ ପର୍ଯ୍ୟାଲୋଚନା କରାଗଲେ ଦେଖାଯିବ ଯେ ତାଙ୍କର ବ୍ୟକ୍ତିଗତ ଜୀବନ ଅପେକ୍ଷା ସେ ସମୂହ ଜୀବନର ନିର୍ବାଣ ପାଇଁ ପ୍ରାର୍ଥନା କରି ଯାଇଛନ୍ତି । ସଂସାରରେ ଜନ୍ମହେଲେ ମରଣ ଅବଶ୍ୟମ୍ଭାବୀ । 'ପଣ୍ଡିତ, ମୂର୍ଖ, ଧନୀ, ନିର୍ଦ୍ଧନ ସମସ୍ତେ ଦିନେ ନା ଦିନେ ସମସ୍ତ ଶୁଭ ଅଶୁଭ କର୍ମଫଳ ସହିତ ମହାକାଳ ବକ୍ଷରେ ଚିର ବିଶ୍ରାମ

ନଥିନ୍ତ—ଏହା ସଂସାରର ଚିରନ୍ତନ ନୀତି । ତେଣୁ ଶାସ୍ତ୍ରପର୍ବର ସଂସ୍କୃତ ଶ୍ଲୋକ ଅକ୍ଷରେ ଅକ୍ଷରେ ସତ୍ୟବୋଲି ପ୍ରତୀୟମାନ ହୋଇଥାଏ—

"ପ୍ରାଜ୍ଞୋ ବା ଯଦ୍ବା ବା ମୂର୍ଖଃ
ସଧନୋ ନିର୍ଦ୍ଧନୋଽପିବା
ସର୍ବକାଳ ବଶଂଯାତି
ଶୁଭାଶୁଭ ସମନ୍ୱିତଃ ।"

ଯେଉଁମାନେ ପରମିତ ପରମାୟୁ, ସୀମାୟିତ ଜୀବନକାଳ ମଧ୍ୟରେ ସାଧାରଣତ୍ୱ ଭିତରୁ ଅସାଧାରଣତ୍ୱ ପ୍ରଦର୍ଶନ କରନ୍ତି, ଦିବ୍ୟଜ୍ଞାନରେ ଶାନ୍ତ ପୃଥିବୀକୁ ଉଦ୍ଭାସିତ କରନ୍ତି, ସେହିମାନେ କେବଳ ଶ୍ରଦ୍ଧା ଆରତିର ଅନିର୍ବାଣ ଦୀପଶିଖା ହୋଇ କାଳବକ୍ଷରେ ଶୋଭାପାଆନ୍ତି ଏବଂ ସେହିମାନଙ୍କର ଅମର କୀର୍ତ୍ତି ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହେ । ଆମର ଆଲୋଚ୍ୟ ମଧୁସୂଦନ ଏହାର ଏକ ଜ୍ୱଳନ୍ତ ପ୍ରମାଣ, ଏହା ଅନସ୍ୱୀକାର୍ଯ୍ୟ । ସେ ଏକାଧାରରେ ଜ୍ଞାନୀ, ଭକ୍ତ, ସାଧକ ଓ ପ୍ରକୃତ ଉପାସକ ଥିଲେ । ନିର୍ମଳ ଭାଗବତ ବିଶ୍ୱାସ ଓ ବୌଦ୍ଧିକ ସଂବେଦନଶୀଳତା ପାଇଁ ସେ ଓଡ଼ିଆ ସାହିତ୍ୟରେ ଋଷିକବି ବା ଭକ୍ତକବି ନାମରେ ଖ୍ୟାତ । ଦର୍ଶନାନୁଚିନ୍ତା ଓ ବିଭୂପରାୟଣତା ତାଙ୍କୁ ଜନଗଣ ହୃଦୟରେ ସ୍ୱତନ୍ତ୍ର ଆସନ ପ୍ରଦାନ କରିଛି । ଈଶ୍ୱର ଅନୁଚିନ୍ତାରେ ତାଙ୍କର ଚିତ୍ତଚକୋର କିପରି ବିଳପୁଥିଲା—ତାହା ସହଜେ ଅନୁମେୟ—

"ଯାହା ମୁଁ କରଇ ଯାହା ମୁଁ କହଇ
ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା, ପରମ ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପ୍ରାଣେ ଅଛନ୍ତି ଦିବସ ରଜନୀ
ମହାପ୍ରଭୁ ପରିହରି
ଏକଥା ସୁମରି ହୃଦୟେ ତାହାଙ୍କୁ
ପୂଜିବି ମୁଁ ନିରନ୍ତର ।"

ବ୍ରହ୍ମଜ୍ଞ ମଧୁସୂଦନଙ୍କର ମୌଳିକ ପ୍ରତିଭାର ଅନ୍ୟ ଏକ ଅଦ୍ଭୁତ ବୈଭବ ହେଉଛି ବ୍ରହ୍ମଜ୍ଞାନ ଭାବନା । ଏହା ତାଙ୍କ ସ୍ତୁତି-ପ୍ରଜ୍ଞାର ପରିପୂରକ ହୋଇଛି । 'ନବବସନ୍ତ ଭାବନା'ରେ ସେ ନିଜକୁ ବ୍ରହ୍ମଜ୍ଞ ଭାବରେ ପରିଚିତ କରାଇବାରେ କୃତକାର୍ଯ୍ୟ ହୋଇଛନ୍ତି—

"ପ୍ରେୟ ପଥ ତେଜି
ଶ୍ରେୟ ପଥ ଆଶ୍ରୟକର
ବ୍ରହ୍ମପଦେ ପ୍ରାଣ ବିସର୍ଜି
ନବ ଜୀବନ ଧର ।"

ପ୍ରକୃତି ଉପାସନାରୁ ସେ କିପରି ପୁଣ୍ୟାନନ୍ଦର ସୁଧାରସ ପାନ କରିବାରେ ମଗ୍ନ ରହୁଥିଲେ, ତାହା ତାଙ୍କ 'ପଦ୍ମ' କବିତାରୁ ସମ୍ୟକ୍ ରୂପେ ଜଣାପଡ଼େ ।

ମଧୁସୂଦନ ଯେ କେବଳ ଜଣେ ବ୍ରହ୍ମଜ୍ଞ ଥିଲେ ତାହା ନୁହେଁ, ସେ ଥିଲେ ଏକାଧାରରେ ଜଣେ ଦାର୍ଶନିକ ଓ ଭକ୍ତକବି । ସୃଷ୍ଟି ଜଗତରୁ ଅଧ୍ୟାତ୍ମ ଓ ଦର୍ଶନରେ କବି ଅମୃତର ସନ୍ଧାନ ପାଇଁ ତତ୍ପର ହୋଇପଡ଼ିଛନ୍ତି । ତାଙ୍କ ସନ୍ଧାନୀ ଇନ୍ଦ୍ରିୟ ଜଗତର ସମତଳଭୂମିକୁ ଅତିକ୍ରମକରି ଇନ୍ଦ୍ରିୟାତୀତର ଉନ୍ନତ ଶିଖରକୁ ଉନ୍ନିତ ହୋଇପାରିଛି । ସେଥିଯୋଗୁଁ ସେ ନୈରାଶ୍ୟବାଦୀ ରାଧାନାଥଙ୍କ ପରି ବସ୍ତୁ ପରିବର୍ତ୍ତେ ଧୂମ, ଜୀବନ ସ୍ଥାନରେ ଜୀବନ୍ମରଣ, ସୁଖ ବଦଳରେ ଦୁଃଖକୁ ସନ୍ଦର୍ଶନ ନକରି, ଦର୍ଶନ କରିଛନ୍ତି, ନିରାନନ୍ଦ ମଧ୍ୟରେ ଆନନ୍ଦ, ଦୁଃଖର ଅନ୍ତରାଳରେ ସୁଖ, ବିଚ୍ଛେଦ ମଧ୍ୟରେ ମିଳନ, ମରୀଚିକାମୟ ତରୁଶୂନ୍ୟ ମରୁପ୍ରାନ୍ତରେ ଅମୃତର ସ୍ରୋତ ଓ ସସୀମ ମଧ୍ୟରେ ଅସୀମର ମହତ୍ତ୍ୱ,
"ସୀମାର ମାଝେ ଅସୀମ ତୁମି ବାଜାଓ ଆପନା ସୁର ।" ( ରବୀନ୍ଦ୍ରନାଥ )
ପାପ ତାପ କ୍ଲିଷ୍ଟ ସଂସାର କବିଙ୍କ ଦୃଷ୍ଟିରେ ଅମୃତମୟ ।

"ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ,
ଜାଗ ନରନାରୀ ଅମୃତ ସନ୍ତତି
ପିଅ ହେ ଅମୃତ ପୟ ହେ ।"

କେଉଁ ସ୍ମରଣାତୀତ କାଳରୁ ଉପନିଷଦ ଯୁଗର ଆର୍ଯ୍ୟ ଋଷିଙ୍କଠାରୁ ଆରମ୍ଭ କରି ରବୀନ୍ଦ୍ରନାଥ, ପ୍ଲେଟୋ, ଅରବିନ୍ଦ, ହୁଇଟ୍‌ମ୍ୟାନ, ଅଚ୍ୟୁତାନନ୍ଦ, ଷ୍ଟିମବେଇ ଓ ମଧୁସୂଦନଙ୍କ ପର୍ଯ୍ୟନ୍ତ ସମସ୍ତେ ଅନ୍ତରରେ ଅନ୍ତର୍ଯ୍ୟାମୀଙ୍କର ଦର୍ଶନ, ଜୀବାତ୍ମାର ପରମାତ୍ମାସହ ମିଳନ, ପିଣ୍ଡରେ ବ୍ରହ୍ମାଣ୍ଡଙ୍କ ଅସ୍ତିତ୍ୱ ଉପଲବ୍ଧି କରିଛନ୍ତି ।

ସର୍ବୋପରି ଭକ୍ତକବି ମଧୁସୂଦନ ପ୍ରାୟ ଅର୍ଦ୍ଧଶତାବ୍ଦୀ ବ୍ୟାପି ନିରଳସ ସାହିତ୍ୟ ସାଧନା କରିବା ଫଳରେ ଓଡ଼ିଆ ଗଦ୍ୟ ଓ ପଦ୍ୟ ସାହିତ୍ୟକୁ ପରିମାଣ ଦୃଷ୍ଟିରୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ସୁନୀତି, ସୁରୁଚିସମ୍ପନ୍ନ ଭାବଧାରା ଓ ନୂତନ ଦୃଷ୍ଟିକୋଣ ସଂଯୋଜନାକରି ଅମରତ୍ୱ ଲାଭ କରି-**ଅଛନ୍ତି** ।

ବଙ୍ଗୀୟ ଆଲୋଚକ ପ୍ରିୟରଞ୍ଜନ ସେନ ତାହାଙ୍କ ସାହିତ୍ୟ ସାଧନା ସମ୍ପର୍କରେ ଯଥାର୍ଥତଃ ଲେଖିଯାଇ ଅଛନ୍ତି ଯେ—"Oriya literature gained from him both in range and content and the gift was spontaneous." □□□

# ଭୂମାନ୍ୱେଷୀ କବି ମଧୁସୂଦନ

ଅଧ୍ୟାପକ ଶରତକୁମାର ମହାନ୍ତି, M. A. B. Ed.

"ଭୂମା" ଶବ୍ଦର ଭାଷା ତାତ୍ତ୍ୱିକ ବା ଆଭିଧାନିକ ତର୍ଜମା (ଭୂମା = ବହୁ + ଇମନ୍ = ନିପାତନ, ତ୍ୱମନ୍ = ବହୁତ୍ୱ = ସର୍ବବ୍ୟାପୀ, ପୁରୁଷ ଭଗବାନ—ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ; ପୃ ୬୧୩୧ ଦ୍ରଷ୍ଟବ୍ୟ), ବେଦ ଉପନିଷଦ ତଥା ଅନ୍ୟାନ୍ୟ ପ୍ରାମାଣିକ ଶାସ୍ତ୍ରମାନଙ୍କରେ ଭୂମା ସଂପର୍କିତ ଦାର୍ଶନିକ ତତ୍ତ୍ୱ, କିମ୍ବା ସାଧକ ଋଷି ବୈଷ୍ଣବ ଗୋସ୍ୱାମୀମାନଙ୍କର ଅନୁଭୂତି ଲବ୍ଧ ଅବବୋଧର ଟ୍ରାଫିକ୍ ପୀଠ (Traffic Stand) ଉପରେ ଦଣ୍ଡାୟମାନ ହୋଇ ବିଦଗ୍ଧ ଗ୍ରାହକମାନଙ୍କୁ ଏ ବାଟରେ କେଉଁ ଦିଗକୁ ହସ୍ତସଙ୍କେତ ନିର୍ଦ୍ଦେଶ କରିବି ? ଯଜୁର୍ବେଦରେ କୁହାଗଲା—

କୋଽଜାତ୍, କସ୍ମାଅଜାତ୍, କାମୋଅଜାତ୍, କାମାସ୍ୱାଜାତ୍, (ଅର୍ଥାତ୍— କିଏ ସେହି ? କାହାକୁ ଏ ଶକ୍ତିପୁଞ୍ଜ ? କେଉଁଠାରୁ ଏହା ଜାତ ? ) । ସେହି ଭୂମା—ପରଂବ୍ରହ୍ମ, ଅନନ୍ତ ଅଚିନ୍ତ୍ୟ, ଅଣାକାର, ଆଦିଅନାଦି, ସର୍ବବ୍ୟାପୀ, ମହାଶୂନ୍ୟ, ସର୍ବନାମ ଭଗବାନ ।

ସର୍ବଂ ଖଳ୍ୱିଦଂ ବ୍ରହ୍ମ । ବ୍ରହ୍ମାଣ୍ଡ ମାଳମାଳ ହୋଇ, ଯା ଲୋମ କୂପେ ବିରାଜଇ—(ଭାଗବତ) । ଅଥର୍ବ ବେଦରେ ଭୂମା ସ୍ୱରୂପ ବର୍ଣ୍ଣନା—

ଅନ୍ତି ସନ୍ତଂ ନ ଦହା—ତ୍ୟନ୍ତି ସନ୍ତଂ ନ ପଶ୍ୟତି ।
ଦେବସ୍ୟ ପଶ୍ୟ କାବ୍ୟଂ—ନମମାର ନଯୀର୍ଯ୍ୟତି ।
(ଅର୍ଥାତ୍ ସେ ନିକଟରେ ଅଛନ୍ତି, କିନ୍ତୁ ସବୁରି ଅଦୃଶ୍ୟ)—
(ଅଥର୍ବ ବେଦ—୧୦।୮।୩୨)

ସ ଶୃଣୋତ୍ୟ କର୍ଣ୍ଣଃ (ସେ ସବୁ ଶୁଣନ୍ତି କିନ୍ତୁ କର୍ଣ୍ଣ ନାହିଁ) । ପୁନଶ୍ଚ ମୁଣ୍ଡକୋପନିଷଦ୍‌ରେ ଭୂମା ଉଲ୍ଲିଖିତ ସେହି ଦିବ୍ୟ ଚିନ୍ମୟୀ ଶକ୍ତିପୁଞ୍ଜ ସଂପର୍କରେ ବନ୍ଦନା ସ୍ତୁତ—

ଅଗ୍ନିର୍ମୂର୍ଧା ଚକ୍ଷୁଷୀ ଚନ୍ଦ୍ର ସୂର୍ଯ୍ୟୌ
ଦିଶଃ ଶ୍ରୋତ୍ରେ ବାଗ୍ ବିବୃତାଶ୍ଚ ବେଦାଃ
ବାୟୁଃ ପ୍ରାଣୋ ହୃଦୟଂ ବିଶ୍ୱମସ୍ୟ
ପଦ୍ଭ୍ୟାଂ ପୃଥିବୀ ହ୍ୟେଷ ସର୍ବଭୂତାନ୍ତରାତ୍ମା ।

(ଅର୍ଥାତ୍—ଅଗ୍ନି ଯାହାର ମସ୍ତକ, ଚନ୍ଦ୍ର ସୂର୍ଯ୍ୟ ଯାର ନେତ୍ର, ଦିଗମାନେ ଯାର କର୍ଣ୍ଣ, ବେଦ ଯାର ବାଣୀ, ବାୟୁ ଯାର ପ୍ରାଣ, ବିଶ୍ୱ ଯାର ହୃଦୟ, ପୃଥିବୀ ଯାର ଚରଣ ସ୍ୱରୂପ ସେହି ବ୍ରହ୍ମ ସର୍ବବ୍ୟାପକ) ।

ଶ୍ରୀମଦ୍ ଭଗବତ୍ ଗୀତାରେ ସେହି ଭୂମାର ବର୍ଣ୍ଣନା—

ତ୍ୱମକ୍ଷରଂ ପରମଂ ବେଦିତବ୍ୟମ୍
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍
ତ୍ୱମ ବ୍ୟୟଃ ଶାଶ୍ୱତଧର୍ମଗୋପ୍ତା
ସନାତନସ୍ତ୍ୱଂ ପୁରୁଷୋତ୍ତମ ମତୋମେ
ଅନାଦି ମଧ୍ୟାନ୍ତ ମନନ୍ତ ବୀର୍ଯ୍ୟ ।

—(ଗୀତା = ୧୧/୧୮-୧୯ ଶ୍ଳୋକ)

ଏହି ଚିରଅବୋଧ ଭୂମାର କଳନା କରି ନପାରି ଆର୍ଯ୍ୟ ବ୍ରହ୍ମର୍ଷି କହନ୍ତି—ନେତି ନେତି—ଅବାଙ୍ମନସଗୋଚରଃ । ସେଣ୍ଟ ଅଗଷ୍ଟାଇନଙ୍କର ତାହାହିଁ ବିମତ ମନ୍ତବ୍ୟ—(ଈଶ୍ୱର ସମ୍ବନ୍ଧରେ ସାଧକର ସର୍ବୋତ୍ତମ ଅଭିବ୍ୟକ୍ତି ଏହା ଯେ ସେ ମୌନ ରହନ୍ତୁ । ) ଚୀନ ଦେଶର ଲଉସିଆନ୍ ଦାର୍ଶନିକଙ୍କ ମତରେ ଭୂମା ବା ପରଂବ୍ରହ୍ମ ସମଧର୍ମୀ ଶବ୍ଦ ହେଉଛି TAO । ଖ୍ରୀ: ପୂ: ଷଷ୍ଠଶତକର ଲମା ଲଓସେଙ୍କର ବ୍ରହ୍ମତତ୍ତ୍ୱ ଏଠାରେ ଉଲ୍ଲେଖ-ଯୋଗ୍ୟ—TAO is ultimately reality, anterior, higher than the heaven, TAO brings tranquility and contentments which can never be acquired

by the worldly minded. Only one who is externally free from earthly passion, can achieve the spiritual essence and pleasure.

--(ଓଡ଼ିଆ ସାହିତ୍ୟରେ ରହସ୍ୟବାଦ—ପୃ୮ ଦ୍ରଷ୍ଟବ୍ୟ)

ଏହି ପରିପ୍ରେକ୍ଷୀରେ ଏକ ସ୍ୱତନ୍ତ୍ର ଧର୍ମ ଦର୍ଶନର ତାତ୍ତ୍ୱିକ ମଞ୍ଚ ଉପରେ ଦଣ୍ଡାୟମାନ କବି ମଧୁସୂଦନ ରାଓଙ୍କର କାବ୍ୟକଳାର ଅନ୍ତର୍ଲୀନ ଲଳିତ ଭାବମୂର୍ତ୍ତି ହିଁ ଆଲୋଚ୍ୟ । ପଣ୍ଡିତ, ସମୀକ୍ଷକ, ବେଦଗ୍ରନ୍ଥପାଠକ ନିକଟରେ ସେ ବ୍ରହ୍ମର୍ଷି, ବ୍ରହ୍ମବାଦୀ, ଭକ୍ତକବିରୂପେ ପରିଚିତ । ସ ଋଷି କବିସ୍ତୁଃ (ଯେପରି ବେଦରେ ଦିବ୍ୟଦ୍ରଷ୍ଟା ଋଷିଙ୍କୁ କବିରୂପେ ଗ୍ରହଣ କରାଯାଏ ।) ମଧୁସୂଦନ ରାଓ ପ୍ରଥମେ ଋଷି ଓ ପରେ କବି କିମ୍ବା ପ୍ରଥମେ କବି ପରେ ଋଷି । ଏ ସାରସ୍ୱତବିବାଦ ଅପେକ୍ଷା ବରଂ ସାହିତ୍ୟ ରାଜ୍ୟର ମୌଳିକ ସତ୍ୟ ଗ୍ରହଣ, କରାଯାଇପାରେ । ଋଷି, ଯୋଗୀ, ବୈଷ୍ଣବ, ଅବୈଷ୍ଣବ, ପ୍ରେମିକ, ପଣ୍ଡିତ, ଅପଣ୍ଡିତ ନିର୍ବିଶେଷରେ ସମସ୍ତଙ୍କର ସମାନ ଅଧିକାର ଥାଏ ସାହିତ୍ୟ ରାଜ୍ୟରେ । ସାହିତ୍ୟରୁ ବ୍ରହ୍ମାନନ୍ଦ, କାବ୍ୟାନନ୍ଦ, ଭୂମାନନ୍ଦ, ପ୍ରେମାନନ୍ଦ, ଇନ୍ଦ୍ରିୟାନନ୍ଦ ସବୁକିଛି ମିଳେ । ବସ୍ତୁତଃ ମଧୁସୂଦନଙ୍କର ସାହିତ୍ୟ ଗନ୍ତାଘର ସେହି ଅମୂଲ୍ୟ ସଂପଦରେ ପରିପୂର୍ଣ୍ଣ ।

ଉତ୍ତମ ସାହିତ୍ୟ ସ୍ରଷ୍ଟାର ଏକ ସାହିତ୍ୟବାର୍ତ୍ତା (Literary Commitment) ଥାଏ । ଭକ୍ତକବି ମଧୁସୂଦନଙ୍କର ଦୃଷ୍ଟିକୋଣ ହେଉଛି ସାହିତ୍ୟରେ ନୀତିବାଦ ପରିପ୍ରଚାର (Art for morality) । ଏ ସାହିତ୍ୟାଦର୍ଶ ପ୍ରାଚୀନ ଭାରତୀୟ କାବ୍ୟସାହିତ୍ୟରେ ସିଦ୍ଧ—(କବି ବଚନାୟତ୍ତା ଲୋକଯାତ୍ରା । ସା ଚ ନିଃଶ୍ରେୟସ ମୂଳଂ = କାବ୍ୟ ମୀମାଂସା— ରାଜଶେଖର) । ମଧୁସୂଦନଙ୍କର ନୈତିକ କାବ୍ୟପ୍ରାଣ ଏହିଭାବ ରୂପାୟନ ପାଇଁ ବ୍ୟାକୁଳ । କାୟମନୋବାକ୍ୟ ଏବଂ ଆଚରଣରେ ସେ ସର୍ବଦା ଭୂମାନ୍ୱେଷୀ । ଭୂମା ନିତ୍ୟସୁଖର ଆଧାର (ଯୋ ବୈଭୂମା ତତ୍ ସୁଖଂ—ନାଳ୍ପେ ସୁଖମସ୍ତି—) ମଧୁସୂଦନ ଯେଉଁ କାବ୍ୟ ରଙ୍ଗମଞ୍ଚ ନିର୍ମାଣିଛନ୍ତି ତାହା ଅମୃତ ପ୍ରଲେପରେ ପବିତ୍ରୀକୃତ ଏବଂ ସେଠାରେ ଧର୍ମ ଦର୍ଶନ, ଦିବ୍ୟବାର୍ତ୍ତା,

ବ୍ରହ୍ମୋପଲବ୍ଧି ତଥା ଅନ୍ୱେଷଣ, ବ୍ରହ୍ମାନନ୍ଦ ପାଇଁ ବ୍ୟାକୁଳତା ଇତ୍ୟାଦି ଉପାଦାନ ସୁଲଭ । ତାଙ୍କ କାବ୍ୟସାଧନାର ମୁଖବନ୍ଧ ଦେଖନ୍ତୁ—

ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ,
ଜଗତର କର୍ତ୍ତା ପରମଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।

(ଗ୍ରନ୍ଥାବଳୀ—ପୃ. ୧)

କବିଙ୍କର ବର୍ଣ୍ଣନାରେ ଭୂମା ଅଚିନ୍ତ୍ୟ, ଅଗୋଚର, ଅକଳ୍ପନୀୟ—

ଅଣଇ ଶବ୍ଦ ଭୂମା ବାକ୍ୟ ଅଗୋଚର—
ଶୁଣଇ ସ୍ତବ୍ଧ ପ୍ରାଣ ସେ ନୀରବ ସ୍ୱର ।
ବିଶ୍ୱବ୍ୟାପୀ ଅନ୍ତ ହ୍ୱର ଓଁକାର ଝଙ୍କାର
ସୁମନ୍ଦ୍ର ଧ୍ୱନିରେ ପୂରେ ନିଖିଳ ସଂସାର ।
କେମନ୍ତେ ବର୍ଣ୍ଣିବ ଦେହି ଭାଷାତୀତ ଭବ
ଜୀବାତ୍ମାରେ ପରମାତ୍ମା-ଭୂମା ଆବିର୍ଭାବ ।

(ଋଷିପ୍ରାଣେ ଦେବାବତରଣ)

କିନ୍ତୁ ସେହି ଚିନ୍ମୟ ଦିବ୍ୟ ଅତୀନ୍ଦ୍ରିୟ ଭୂମା କ୍ରମଶଃ କବିଚିତ୍ତରେ ଉପଲବ୍ଧ ହୁଏ । ଇନ୍ଦ୍ରିୟ ଗ୍ରାହ୍ୟ ହୁଏ, ପ୍ରମୂର୍ତ୍ତ, ବ୍ୟକ୍ତ ରୂପୋପମ ହୁଏ । ଏ ପ୍ରମୂର୍ତ୍ତତା ଏବଂ ବ୍ୟକ୍ତତା କେବଳ ମୁନିଋଷି ବା କବିଙ୍କ ପାଇଁ ସୀମିତ ନୁହେଁ । ନିଖିଳ ସୃଷ୍ଟିର ପ୍ରତ୍ୟେକଙ୍କ ପାଇଁ ଉଦ୍ଦିଷ୍ଟ । ଜ୍ଞାତ ବା ଅଜ୍ଞାତରେ ପ୍ରତ୍ୟେକେ ସେହି ଆଲୋକରେ ଆଲୋକିତ, ଶକ୍ତିରେ ପରିପୁଷ୍ଟ । ଅମୃତ ସ୍ପର୍ଶରେ ପୁଲକିତ । କବି ବର୍ଣ୍ଣନାରେ—

ମୃତ ଜଡ଼ ଆଦି ଆହା କି ଅମୃତମୟ
ବ୍ରହ୍ମ-ନିଃଶ୍ୱସିତେ ପୂର୍ଣ୍ଣ ବ୍ରହ୍ମାଣ୍ଡ ହୃଦୟ
ବ୍ରହ୍ମାଣ୍ଡ ହୃଦୟ ତନ୍ତ୍ରୀ ବାଜେ ଏକତାନେ
ଓଁକାର ଝଙ୍କାରମୟ ମର୍ମଭେଦୀ ଗାନେ ।

(ଋଷିପ୍ରାଣେ ଦେବାବତରଣ)

ସୁତରାଂ ଋଷିପ୍ରାଣେ ଦେବାବତରଣ କବିତାରେ ଋଷି ଚରିତ୍ର ଉପଜୀବ୍ୟ ହୋଇଥିଲେ ମଧ୍ୟ କବିଙ୍କର ବ୍ୟକ୍ତିଗତ ଅନୁଭୂତି ହିଁ ସମଗ୍ର ବିଶ୍ୱକୁ ସେ

କଣାଇ ଦିଅନ୍ତି । ଯେଉଁ ଭୂମା ଶକ୍ତିର ତତ୍ତ୍ୱ କବିଙ୍କର ହୃଦୟରେ ଅନନ୍ତ କମ୍ପନ ସୃଷ୍ଟି କଲା ତାହା କବି ସମସ୍ତଙ୍କୁ ବୁଝାଇ ଦିଅନ୍ତି । ପରମାତ୍ମା-ଜୀବାତ୍ମାର ମିଳନ ବେଦୀରେ ଭୂମାଦର୍ଶୀ କବି କଣ୍ଠରୁ ଉଚ୍ଛୁଳି ଉଠେ ଭୂମା ବନ୍ଦନା—

ହେ ଦେବ ମହାଦେବ ଦ୍ୟାବାପୃଥିବୀର
ଦ୍ୟୁଲୋକ ଭୂଲୋକ ବନ୍ଦେ ଅନନ୍ଦ ଅଧୀର ।
ଅମୃତ ଯାହାର ଛାୟା, ମୃତ୍ୟୁ ଯା କଙ୍କର
ବନ୍ଦଇ ବରେଣ୍ୟଭର୍ଗ ବିଶ୍ୱ ଚରାଚର ।
ଏକମାତ୍ର ଅଦ୍ୱିତୀୟ ପ୍ରଭୁ ସର୍ବ ମୂଳାଧାର,
ଏକମାତ୍ର ପରମାତ୍ମା ବ୍ରହ୍ମନିରାକାର ।

(ଋଷିପ୍ରାଣେ ଦେବାବତରଣ)

ଯେଉଁ ବ୍ରାହ୍ମମୁହୂର୍ତ୍ତରେ, ଦିବ୍ୟାଲୋକ ଅବବୋଧରେ ଋଷି ବ୍ୟାସଦେବ ଶ୍ରୀମଦ୍‌ଭଗବତ୍ ଗୀତା ସୃଷ୍ଟି କରିଥିଲେ, ସେହିପରି ଏକ ଚେତନା, ଏକ ସ୍ୱାଭାବିକ ପ୍ରବଳଭାବାବେଗ (Spontaneous over flow of powerful emotion) ଏକ ଅପୂର୍ବ କଳ୍ପନାର ସମନ୍ୱୟରେ, ବିଶୁଦ୍ଧ ଶବ୍ଦ ଗୁମ୍ଫନ ଶୈଳୀରେ ସୃଷ୍ଟି ହୁଏ ଋଷିପ୍ରାଣେ ଦେବାବତରଣ । ଏ ସଂପର୍କରେ ଅଧ୍ୟାପକ ମଧୁସୂଦନ ପତିଙ୍କର ମନ୍ତବ୍ୟ ପ୍ରଣିଧାନ୍ୟ— (ଏ ସ୍ଥଳେ ଯେଉଁ ଅତୀନ୍ଦ୍ରିୟ ଅନୁଭୂତି ମିଳେ, ସେଇଟା ବ୍ରହ୍ମଧର୍ମୀ ବା ବୈଦିକ ମାତ୍ର ନୁହେଁ—ସେ ସର୍ବକାଳୀନ ଓ ସର୍ବଦେଶୀୟ । ଜୀବାତ୍ମାରେ ପରମାତ୍ମା ଭୂମାର ଆବିର୍ଭାବ ପରି ସାଧକ ଋଷିର ଅନ୍ତରରେ ଯେଉଁ ଆନନ୍ଦ ଆସେ ତାହା ନିରୁଦ୍‌ବେଗ, ଶାନ୍ତ, ସମାହିତ, ଏକାନ୍ତଭାବେ ନିବିଡ଼ ଓ ଅସ୍ପୃଷ୍ଟ । (କୋଣାର୍କ ୧୯୭୯-୪ର୍ଥ ସଂଖ୍ୟା-ପୃ ୭୦-୭୨) ।

"ଋଷିପ୍ରାଣେ ଦେବାବତରଣ ବଙ୍ଗଳାଭାଷାରେ ଅନୂଦିତ ଓ ପ୍ରକାଶିତ ହୁଅନ୍ତେ ରବୀନ୍ଦ୍ରନାଥ ତାହା ପାଠକରି ମନ୍ତବ୍ୟ ପ୍ରକାଶ କରିବାର ଜଣାଅଛି ଯେ ସେ ପ୍ରକୃତରେ ବେଦମନ୍ତ୍ରର ଧ୍ୱନି ଏଥିରେ ଶୁଣି ପାରିଥିଲେ"—
(ଓଡ଼ିଆ ସାହିତ୍ୟର ଇତିହାସ—ପୃ ୨୮୮ – ଡ: ମାନସିଂ) ।

ଯେପରି ପବିତ୍ର ସରସ୍ୱତୀ ନଦୀତଟରେ, ଉଷାକାଳରେ, ବ୍ରାହ୍ମମୁହୂର୍ତ୍ତରେ ଋଷିକବି ପ୍ରାଣରେ ଯେଉଁ ସ୍ୱର୍ଗୀୟ ପୁଲକ, ପ୍ରେମାଶ୍ରୁ, ଅବବୋଧ ସୃଷ୍ଟି ହୋଇଥିଲା ତାହା ନିଃଶେଷଭାବେ "ଋଷିପ୍ରାଣେ ଦେବାବତରଣ" କାବ୍ୟରେ ନିଃସୃତ ହୋଇ ପାରିନଥିଲା ଏବଂ ସେହି ସଞ୍ଚିତ ଅବବୋଧ ବୋଧହୁଏ ପୁନର୍ଜୀବିତ ହୁଏ ଦୀର୍ଘ ୧୮ ବର୍ଷ ପରେ ହିମାଚଳେ ଉଦୟ ଉତ୍ସବକବିତାରେ। (ଋଷି ପ୍ରାଣେ ଦେବାବତରଣ କବିତାର ରଚନାକାଳ ୧୮୯୪ ଏବଂ ହିମାଚଳେ ଉଦୟ ଉତ୍ସବ ଲେଖାହୁଏ ୧୯୧୨)।

ବ୍ରାହ୍ମମୁହୂର୍ତ୍ତ ଅମୃତଲଗ୍ନରେ ହିମାଚଳରେ ଯେତେବେଳେ ବିଚିତ୍ର ବର୍ଣ୍ଣାଢ୍ୟରଶ୍ମି ବିଚ୍ଛୁରିତକାରୀ ଅଂଶୁମାନ (ଯେ କି ବେଦରେ ଜଗତସ୍ୟ ଚକ୍ଷୁ ରୂପେ ବନ୍ଦିତ) ଉଦିତ ହୋଇ ସେତେବେଳେ ଅନନ୍ତଭୂମା, ପ୍ରମୂର୍ତ୍ତିତେଜପୁଞ୍ଜ ରୂପେ ପ୍ରକାଶମାନ ହେବା ଅବବୋଧ କରିଛନ୍ତି। ନିଖିଳ ବିଶ୍ୱ ଆଲୋକମୟ ହୋଇଛି ସେହି ବିଶ୍ୱକର୍ତ୍ତାଙ୍କର ନିର୍ଦ୍ଦେଶରେ (ଯେପରି—ବାଇବେଲରେ ବର୍ଣ୍ଣିତ—God say let there be light and there was light। ତା ସହିତ ରେଣୁରେ ରେଣୁରେ ଅନାହତ ବଂଶୀଧ୍ୱନି-- ଗାୟତ୍ରୀ ଓଁକାର ଧ୍ୱନି—ଏ ସବୁର ଅପୂର୍ବ ମିଳନ. ଅବଲୋକନରେ କବିଚିତ୍ତ ଧୂଳି ଧୂସରିତ କଂକାଳମୟ ପୃଥିବୀଠାରୁ ଊର୍ଦ୍ଧ୍ୱାୟିତ ହୋଇଛି। କବିବରେଣ୍ୟର ବିମୁଗ୍ଧ—

ରେଣୁରେ ରେଣୁରେ ନାଥ ଏ ମହା ବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀ ସ୍ୱର
ପ୍ରାଣେ ପ୍ରତିଧ୍ୱନି ତାର ଉଠୁଛି ସଘନ
ମୋହନ ମୋହନ ତହୁଁ ମୋହନ ମୋହନ।

—(ହିମାଚଳେ ଉଦୟ ଉତ୍ସବ)

ବିଶ୍ୱପ୍ରକୃତିର ରହସ୍ୟମୟ ଅତୀନ୍ଦ୍ରିୟ ଭାବର ସନ୍ଧାନୀ କବିଦୃଷ୍ଟି ଏଠାରେ ଅନ୍ତର୍ଲୀନ ଏବଂ ଦିବ୍ୟଭାବରେ ପରିପୂର୍ଣ୍ଣ, ଦ୍ୱୈତ ଏବଂ ଅଦ୍ୱୈତ ଭାବରେ ନିମଗ୍ନ।

ଜଡ଼ ଜୀବ ସମ୍ମିଳିତ ଅଚ୍ଛେଦ୍ୟ ବନ୍ଧନେ
ବିଶ୍ୱନାଡ଼ି ମୂଳାଧାର ଅନାଦି ଚରଣେ।

ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ
ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ ।
—(ହିମାଚଳେ ଉଦୟ ଉତ୍ସବ)

ପ୍ରକୃତି ବିଭୂମୟ । ଏ ବର୍ଣ୍ଣନା ଇଂରାଜୀ ସାହିତ୍ୟରେ ପ୍ରକୃତ ଅର୍ଥରେ Panthestic description or Spiritual description of nature ଅନ୍ତର୍ଗତ । ଏ ଭାବନା କବି ଓ୍ୱାଡସ୍‌ଓ୍ୱାର୍ଥ, ସେଲି, ଆରନୋଲଡ୍‌ ଏବଂ ପୋପ୍‌ଙ୍କର ସମଧର୍ମୀ ବର୍ଣ୍ଣନା ସ୍ମରଣ କରାଇଦିଏ । କବି ପୋପ୍‌ଙ୍କର ପ୍ରକୃତି ବର୍ଣ୍ଣନାର ପଂକ୍ତିଏ—"All are but parts of one stupendous whole-whose body nature is and God the Soul." କିମ୍ବା ଜର୍ମାନ କବି ଗେଟେଙ୍କ ସ୍ୱରରେ—"Nature is the Living visible garments of God's. କିମ୍ବା The anchor of my purest thought, the nurse the guide, the guardian of my heart and soul of all my moral being."

(Tintern Abbey)—Words Worth

ରୋମାଣ୍ଟିକ୍ କବି ଶେଲିଙ୍କର Intellectual Beauty କବିତାର ବର୍ଣ୍ଣନା ଓ ଭାବ କେତେକାଂଶରେ କବି ମଧୁସୂଦନଙ୍କର ଚିନ୍ତା ଚେତନାର ନିକଟବର୍ତ୍ତୀ ତାହା ନିମ୍ନ ଉଦ୍ଧୃତିରୁ ସ୍ପଷ୍ଟହୁଏ—

The aweful shadows of some unseen power
Floats, though unseen, among us visiting.
This various world with as constant wing.
As summer winds that creep from flower to flower.

(Intellectual Beauly—Shelley)

ହିମାଚଳେ ଉଦୟ ଉତ୍ସବ କବିତାର ନିମ୍ନରେ ପ୍ରଦତ୍ତ ପ୍ରାସଙ୍ଗିକ ବର୍ଣ୍ଣନା--

ମହା ପ୍ରକୃତିର ମହା ପୁରୋହିତ ବେଶେ
ସ୍ଥଳଇ ଶାଶ୍ୱତ ଶ୍ୱେତ ହିମାନୀ ପ୍ରଦେଶେ,
ସହସା ରହସ୍ୟମୟ ମହା ମହୋଲ୍ଲାସେ,
ସେ ଜ୍ୟୋତି ଉଠିଲା ବଳି ପସ୍ତରୀ ଆକାଶେ ।
ସେ ଜ୍ୟୋତି ପରଶେ ଆହା ସେ ପରମ କ୍ଷଣେ
ଧବଳ ତୁଷାରମୟ ସେ ଊର୍ଦ୍ଧ୍ୱ ଭୁବନେ
ଯେସନେ ଉଠଇ ଫୁଟି ମହା ପୁଲକରେ
ତେସନେ ସେ ନୀଳ କାନ୍ତ ଗଗନେ-ସାଗରେ••• ।

ବସ୍ତୁତଃ, କବିତାର ରଚନା ପରିପୂର୍ଣ୍ଣ କଳାତ୍ମକ ସୌନ୍ଦର୍ଯ୍ୟ ମଧ୍ୟରେ ଦ୍ୟାବା ପୃଥିବୀର ପରିଣୟୋତ୍ସବର ଯେଉଁ ବର୍ଣ୍ଣନା ତାହାର ପରିକଳ୍ପନା ୧୮ବର୍ଷ ପୂର୍ବେ ରଚିତ ଋଷିପ୍ରାଣେ ଦେବାବତରଣ କବିତାର ଦ୍ୟାବା-ପୃଥିବୀର ଏ ଦୈବିବାହ ବର୍ଣ୍ଣନାରେ ସଂଘଟିତ । ତଥାପି ପୁନରାବୃତ୍ତି । କାରଣ ଦ୍ୟାବା ପୃଥିବୀର ମିଳନ ସେଇ ଭୂମାତ୍ମା ସହ ଜୀବାତ୍ମା ମିଳନର ଏକ ରୂପକଳ୍ପ (Allegory) । ପ୍ରକୃତି ଓ କବିପ୍ରାଣ ଏକାକାର (ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ•••) ଗୌଡୀୟ ବୈଷ୍ଣବ ଜନୋଚିତ ପ୍ରେମିକ ପ୍ରେମିକା ମିଳନ ବ୍ୟାକୁଳତା ଋଷିକବିଙ୍କୁ ପ୍ରଲୁବ୍ଧ କରିଛି । କବି ସ୍ୱୟମ୍ବରା କୁମାରୀ ହୃଦୟ ନେଇ ବରମାଳା ଦେଇଛନ୍ତି ପ୍ରଣୟୀ ଗଳାରେ ଯୁଗଳ ମିଳନ ପିପାସା ନେଇ । କାବ୍ୟକଳାର ଗରିମା ଦୃଷ୍ଟିରୁ ଏ କବିତାଦ୍ୱୟ ମଧୁସୂଦନ-ଙ୍କର କାବ୍ୟ କୋଣାର୍କ ହେଲେ ମଧ୍ୟ ତାଙ୍କର ସାମଗ୍ରିକ ସାହିତ୍ୟ ସାଧନାରେ ବୈଦିକ ହିନ୍ଦୁ ଦର୍ଶନ, ଆଧ୍ୟାତ୍ମିକ ଚେତନା, ବିଶ୍ୱାନୁଭୂତି ଏବଂ ଆନନ୍ଦବାଦ ପ୍ରତିଧ୍ୱନିତ । ସତେ ଯେପରି ତାଙ୍କର ଆତ୍ମା ଏବଂ ବିହ୍ୱଳିତ ହୃଦୟ ସେହି ଅମୃତମୟ ଭୂମାନ୍ୱେଷ ରେ ହିଁ ପ୍ରମତ୍ତ ଓ ପ୍ରଚେଷ୍ଟ । ଭୂମୈବ ସୁଖଂ, ନାଳ୍ପେ ସୁଖମସ୍ତି—ତାଙ୍କର କାବ୍ୟବାଣୀ । ବ୍ରହ୍ମାଣ୍ଡବର ଆକଣ୍ଠ ସୁଧାପାନରେ ଉନ୍ମାଦ

କବି ମଧୁସୂଦନ ସର୍ବଦା କହୁଥିଲେ—ନିଖିଳ ବିଶ୍ୱର ଏକମାତ୍ର କାରଣ ମଙ୍ଗଳମୟ ପରମେଶ୍ୱରଙ୍କର ପବିତ୍ର ବିଧି ଏବଂ ଆଦେଶ ଜୀବନରେ ଉପଲବ୍ଧି କରି ତାହା ଅନୁଷ୍ଠାନ କରିବା ଉଚିତ । ହେ ମନୁଷ୍ୟ ସର୍ବଦା ଧର୍ମାଚରଣ କର । ଧର୍ମ ଅମୃତମୟ ମଧୁସ୍ୱରୂପ—(ଭକ୍ତକବି ଜୀବନ ସମୀକ୍ଷା ଗ୍ରନ୍ଥ ପୃ:୧୦୭ ରୁ ସଂଗୃହୀତ ) ।

କବିଙ୍କର ସଙ୍ଗୀତମାଳା, ଛନ୍ଦମାଳା, କୁସୁମାଞ୍ଜଳି, କବିତାବଳୀ, ବସନ୍ତ ଗାଥା ପ୍ରଭୃତି କାବ୍ୟ-ଗ୍ରନ୍ଥ-ମନ୍ଦିର ମଧ୍ୟ ସେହି ଗାନ ସେହି କୀର୍ତ୍ତନ, ନାମଧ୍ୱନି ର ଧୂପଧୂପଗନ୍ଧରେ ପରିଣାମିତ ମନେହୁଏ ବିଭୁବାଦର ସଙ୍ଗୀତରେ ମାଳା-ରଚନା କରି କବି ଭକ୍ତ ଗଦ୍‌ଗଦ୍‌ ଚିତ୍ତରେ ତାଙ୍କର ପ୍ରାଣପ୍ରିୟ ବଂଧୁ ଭୂମାଙ୍କୁ ନୈବେଦ୍ୟ ଅର୍ପଣ କରିଛନ୍ତି ।

ସେ ଗୂଢ଼ତ ତତ୍ତ୍ୱକଥା ନଜାଣଇ ଚରାଚର
ବେଦବେଦାନ୍ତ ପୁରାଣ ଦର୍ଶନାଦି ନାନା ଶାସ୍ତ୍ରମାନ
କେହି ସେହି ତତ୍ତ୍ୱଜ୍ଞାନ ନପାଇଲେ ପ୍ରଭୁଙ୍କର
ମହିମାର ପାରିବାର ଭୂମା ଅନନ୍ତ ଈଶ୍ୱର ।
(ସଙ୍ଗୀତମାଳା—ଗ୍ରନ୍ଥାବଳୀ ୩୮।୪)

× × × ×

ଏକମାତ୍ର ଅଦ୍ୱିତୀୟ ଅନନ୍ତ ଅପାର-ଏକମାତ୍ର ସର୍ବବ୍ୟାପୀ ବ୍ରହ୍ମ ନିରାକାର
ଏକମାତ୍ର ସନାତନ ସ୍ୱୟମ୍ଭୂ ଈଶ୍ୱର-ଏକମାତ୍ର ବିଶ୍ୱବନ୍ଦ୍ୟ ଭୂମାପରଂବ୍ରହ୍ମ ।
(ସଙ୍ଗୀତମାଳା — ଗ୍ରନ୍ଥାବଳୀ ପୃ ୩୮୧-୮୨)

ସେହି ଭୂମା ପରଂବ୍ରହ୍ମ କେବଳ ତାତ୍ତ୍ୱିକ ଦୃଷ୍ଟିରୁ ହିଁ ଅଗୋଚର, ଅବାଙ୍ମୟ, ଅରୂପ କିନ୍ତୁ ପ୍ରତି ମୁହୂର୍ତ୍ତରେ ସେ ଯେ କବିପ୍ରାଣର ଚିର ବୋଧ୍ୟ, ଚିର ଆପଣାର । କେବଳ କବିଙ୍କ ପାଇଁ ନୁହନ୍ତି, ବରଂ ସକଳ ଆର୍ତ୍ତ ଜୀବ-ଜଗତପାଇଁ ସେ ଯେ ଚିରଜାଗ୍ରତ, ଚିର ମଙ୍ଗଳମୟ, ଚିର ବିଦ୍ୟମାନ ।

କବିଙ୍କ ବର୍ଣ୍ଣନାରେ—

ଧନ୍ୟ ହେ ମଙ୍ଗଳମୟ, ନିଖିଳ ଭୁବନାଶ୍ରୟ, ଭକତର ବାଞ୍ଛା କଳ୍ପତରୁ

ପ୍ରେମାନନ୍ଦ ସୁଧାଝର ଝରୁଅଛୁ ନିରନ୍ତର ତୁମ୍ଭ ଶ୍ରୀଚରଣ କମଳରୁ ହେ ମହାପ୍ରଭୁ । (ଗ୍ରନ୍ଥାବଳୀ ପୃ ୩୭୬)

ବାରମ୍ବାର ପାପକରି ପାପୀ ଭଗବାନଙ୍କ ଶରଣ ନିଏ, କ୍ଷମାପାଇଁ । କ୍ଷମାର ସାଗର ଅକୁଣ୍ଠିତ ଚିତ୍ତରେ ଅଭୟ ଓ କ୍ଷମାଦାନ କରନ୍ତି ।

ମହା ପାପଭାର ବହି ଶରୀର ବଷାଦେ
ଆସିଲି ମୁଁ ପରମେଶ-ପାଦ-ପଦ୍ମ ପାଶେ
ନିଃଶବ୍ଦ ଯେ କ୍ଷମା ସିନ୍ଧୁ ଜଳେ ବୁଡ଼ିଯିବ
ଫିଙ୍ଗି ଦେଖେ ମେରୁସମ ମୋର ପାପଭାର— ।

ଭାଗ୍ୟ ବିଡ଼ମ୍ବିତ ବୈରାଗୀ କବି ଧୀନକୃଷ୍ଣ ମଧ୍ୟ ସେହି ଅଭୟବାଣୀ ଗାନ କରିଥିଲେ (କୃଷ୍ଣ ନାମରେ ପାପକ୍ଷୟ ଯେତେକ-କରି ନପାରଇ ପାପୀ ପାପ ସେତକ—ରଃକଃ) ଆନନ୍ଦରସ-ଅମୃତ ଉତ୍ସରୁ ହିଁ ସୃଷ୍ଟି ସନ୍ଧିତ (ଅନନ୍ଦାନ ଇମାନି ଭୂତାନି ଜାୟନ୍ତେ) ଭୂମା ଯେ ଅନନ୍ତ ଆନନ୍ଦମୟ । ଅନନ୍ତର-ସମୟ (ରସ ବୈ ସଃ) । ସୃଷ୍ଟି ଅମୃତମୟ, ମାନବ ଅମୃତର ସନ୍ତାନ । ଗରଳ ମଧ୍ୟ ଅମୃତ ନିଃସୃତ । ତେଣୁ ଦୁଃଖ ଶୋକ ଭୟ କାହିଁକି ? ଆଶା ଓ ଆନନ୍ଦର ଗମ୍ଭୀର ତଥା ଉଦାର ସ୍ୱର କବିଙ୍କର ଏ ସୃଷ୍ଟି ଅମୃତମୟ ହେ କବିତାରେ ଝଙ୍କୃତ—

ମଧୁମୟ ସୃଷ୍ଟି, ସୁଧାମୟ ସୃଷ୍ଟି, ଏ ସୃଷ୍ଟି ଅମୃତମୟ ହେ
ଜାଗ ନରନାରୀ ଅମୃତ ସନ୍ତାନ ପିଅ ହେ ଅମୃତ ପୟ ହେ ।

ବୈଦିକ ଧ୍ୱନି "ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ" କିମ୍ବା "ଅନ୍ଧକାରମଧ୍ୟରେ ଅମୃତ ସ୍ୱୟମ୍ଭୂ" ମନ୍ତ୍ରରୁ ହିଁ ଏ ଭାବ ପ୍ରତିଧ୍ୱନିତ । ପୁନଶ୍ଚ ଅମୃତ-ସନ୍ଧାନୀ କବିକଣ୍ଠରୁ ଯେତେବେଳେ ଝରିଆସେ—

ମହାନ ଅନନ୍ତ ଉଦାର ଆକାଶ ତେଜେ ତେଜେ ତେଜୋମୟ ହେ
ଅକୂଳ ଅତଳ ମହା ପାରାବାର ନାଦେ ନାଦେ ନାଦମୟ ହେ ।
ମଳୟ ଲସେ୍ୟ ବା ପ୍ରଳୟ ଭୀଷଣେ ସଦା ଚଞ୍ଚଳ ଅଥୟ ହେ

ଡାଳେ ଡାଳେ ଛାଳେ ମଧୁରସ ଧାରା ଫଳପୁଷ୍ପ କଶଳୟ ହେ ।

× × × ×

ଶ୍ରଦ୍ଧାଭକ୍ତି ପ୍ରୀତି ଦୟା ଶୁଭାକାଂକ୍ଷା ପୁଣ୍ୟ ବିଶ୍ୱାସ ବିନୟ ହେ
ଏ ସକଳ ମଧ୍ୟେ ନିବସନ୍ତି ବିଭୂ ଶାଶ୍ୱତ ଅମୃତ ଚୟ ହେ ।

(ଏ ସୃଷ୍ଟି ଅମୃତମୟ) ଏ ବର୍ଣ୍ଣନା ସ୍ମରଣ କରାଇଦିଏ ଅନ୍ୟ ଏକ ଦିବ୍ୟ ଦର୍ଶୀ କବିଙ୍କର ନିମ୍ନଲିଖିତ ପଙ୍କ୍ତିଚୟର ଭାବାବେଗ—

The golden harvest spring, the unfailing sun,
Sheds light and life,
the fruits, flowers and the trees,
Arise in due succession,
All things speak,
Peace, harmony and love. (Queen Male.)

ଆଙ୍ଗିକ ଏବଂ ସ୍ଥାନିକ ପାର୍ଥକ୍ୟ ସତ୍ତ୍ୱେ କବିତାଂଶର ଆତ୍ମିକଭାବ ଓ ଚେତନାର ନିବିଡ଼ ସଖ୍ୟ ତଥା ସମଧର୍ମିତା ତୁଳନୀୟ ।

ନିଛକ ଦାର୍ଶନିକତା, ଶୁଷ୍କ ତାର୍କିକ ତତ୍ତ୍ୱ, ଅଥବା ଅବୋଧ୍ୟ, ଅନୁପଲଭ୍ୟ କଳ୍ପନା ଯେ କୌଣସି କବିଙ୍କୁ ହୁଏତ ଅଙ୍କିବ ଦାର୍ଶନିକର ଇଲାକାକୁ ନେଇଯାଏ—କିନ୍ତୁ ମଧୁସୂଦନ ହିଁ ଓ ଆଙ୍ଗିକ ଓ ଆତ୍ମିକ ସ୍ୱାତ୍ତ୍ୱରେ ନିସର୍ଗ ସୁନ୍ଦର କାବ୍ୟ ଇଲାକାର ବିମ୍ବିକୃତ, ଅନୁଭୂତିସିକ୍ତ ଉତ୍ତମ କବି ଭାବରେ ପ୍ରତିଷ୍ଠିତ । ସେ କବି—ଦିବ୍ୟାଲୋକ ଅବବୋଧର ଏବଂ ଧୂଳିରେ ଲୋଟିଥିବା ଜୀବନ ଯନ୍ତ୍ରଣାର । ତାଙ୍କର କାବ୍ୟ, କାବ୍ୟାନନ୍ଦରେ ଯେପରି ଟଳଟଳ, ବ୍ରହ୍ମାନନ୍ଦରେ ସେହିପରି ଉର୍ଜ୍ଜସ୍ୱଳ । □□□

# ମଧୁସୂଦନଙ୍କ ସାହିତ୍ୟ : ପ୍ରାଚ୍ୟ ଓ ପାଶ୍ଚାତ୍ୟ ପ୍ରଭାବର ଏକ ମନୋଜ୍ଞ ମଧୁଭଣ୍ଡାର

ଅଧ୍ୟାପକ ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ

କବି ମଧୁସୂଦନ ଓଡ଼ିଆର ଗଣଜୀବନ, ସାମାଜିକ ଜୀବନ, ସାହିତ୍ୟ, ଭାଷା, ସଂସ୍କୃତି, ସଂଗଠନ ଓ ସଂସ୍କାରାଦିର ସମନ୍ୱୟ ଆଣିଥିବାରୁ ଓଡ଼ିଆ ସାହିତ୍ୟ ଦରବାରରେ ତାଙ୍କ ଆସନ ଯେ ସର୍ବଜନାଦୃତ, ଏକଥା ଯେକେହି ସ୍ୱୀକାର କରିବେ ।

ହେଲେ ପରିସ୍ଥିତିର କଷାଘାତରେ, ସମୟର ତାଡ଼ନାରେ ଓ ଯୁଗୋପଯୋଗୀତା୍ୟାସ୍ଥରେ କବିଙ୍କୁ ସାହିତ୍ୟ ସୃଷ୍ଟି ସମୟରେ ଅଧିକାଂଶ କ୍ଷେତ୍ରରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟକୁ ଅନୁସରଣ କରିବାକୁ ପଡ଼ିଛି ।

କବି ଜଣେ ଦାର୍ଶନିକ, ମନସ୍ତତ୍ତ୍ୱବିତ୍ ଓ ଧୁରୀଣ ପଣ୍ଡିତ ଥିବାରୁ ସଂସ୍କୃତ ଓ ଇଂରାଜୀ ସାହିତ୍ୟରେ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା ଏବଂ ଉପନିଷଦ, ମହାଭାରତ ତଥା ରାମାୟଣ ଇତ୍ୟାଦି କବିଙ୍କୁ ଯଥେଷ୍ଟ ମାତ୍ରାରେ ଆକୃଷ୍ଟ କରିଥିଲା ।

ଓଡ଼ିଆ ସାହିତ୍ୟ ବ୍ୟତୀତ ମାର୍ଟିନୋ, ରସ୍କିନ୍, ଇମର୍ସନ, ହ୍ୱିଟ୍ନି, ହ୍ୟୁଗୋ, ମାଥିଉଆରନଲ୍ଡ, ଆର୍ମଷ୍ଟ୍ରଙ୍ଗ, ୱର୍ଡ଼ସ୍‌ୱାର୍ଥ, ଗେଟେ, ଶେକ୍ସପୀଅର, ଟେନିସନ୍ ଓ ଶେଲୀ ଇତ୍ୟାଦି ଇଂରେଜ ଲେଖକ ଓ କର୍ମୀମାନଙ୍କର ଲେଖା ସେ ସୁନ୍ଦର ଭାବରେ ପଢ଼ି ତର୍ଜ୍ଜମା କରିଥିଲେ । ଏହା ବ୍ୟତୀତ କବି ସଂସ୍କୃତ ସାହିତ୍ୟ, ଉତ୍ତର ରାମ ଚରିତ, ମାଳତୀ-ମାଧବ, କୁମାର ସମ୍ଭବ, ରଘୁବଂଶ, ଅଭିଜ୍ଞାନ ଶାକୁନ୍ତଳମ୍, ବାଲ୍ମୀକି ରାମାୟଣ, ଶ୍ରୀମଦ୍ ଭାଗବତ ଓ ବେଦାନ୍ତ ଦର୍ଶନ ଇତ୍ୟାଦି ପାଠ କରିଥିଲେ ।

ଓଡ଼ିଆ ମହାରାଷ୍ଟ୍ରୀ ଭାଷାରେ ସଂଖ୍ୟାଧିକ ପୁସ୍ତକ ସହିତ ଭକ୍ତ ତୁକାରାମଙ୍କ ଉପଦେଶାବଳୀ ପଢ଼ିବାର ସୁଯୋଗ ଲାଭ କରିଥିଲେ ଏବଂ

ବଙ୍ଗଳା ଭାଷାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମାଇକେଲ ମଧୁସୂଦନ, ଭୂଦେବ ମୁଖୋପାଧ୍ୟାୟ, ହେମଚନ୍ଦ୍ର, ନବୀନଚନ୍ଦ୍ର, ବଙ୍କିମଚନ୍ଦ୍ର, ରଙ୍ଗଲାଲ ଓ ରବୀନ୍ଦ୍ରନାଥ ପ୍ରଭୃତିଙ୍କ ରଚନା ସହିତ କାଳୀପ୍ରସନ୍ନ ସିଂହଙ୍କ ମହାଭାରତ ମଧ୍ୟ ପାଠ କରିଥିଲେ ।

ଏତଦ୍‌ଭିନ୍ନ କବିଙ୍କ କାବ୍ୟସାଧନା ଦିଗରେ ଆଦିକବି ସାରଳା ଦାସଙ୍କ ସାରଳା ମହାଭାରତ, ଜଗନ୍ନାଥ ଦାସଙ୍କ ଜଗନ୍ନାଥ ଭାଗବତ, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, କବିସୂର୍ଯ୍ୟ ବଳଦେବ ରଥଙ୍କ ଚମ୍ପୂ ଓ ଗୋପାଳକୃଷ୍ଣଙ୍କ ଗୀତାବଳୀ ଆଦି ଯଥେଷ୍ଟ ସାହାଯ୍ୟ କରିଥିଲା ।

ମଧୁସୂଦନଙ୍କ କବିପ୍ରତିଭା ଧର୍ମାନୁମୁଖୀ ଥିବାରୁ ଜ୍ଞାନ, କର୍ମ ଓ ଭକ୍ତିର ତ୍ରିଧାରା ତାଙ୍କ ସାହିତ୍ୟରେ ସର୍ବଦା ପ୍ରାଧାନ୍ୟ ଲାଭ କରିଥିଲା । କବି ମଧୁସୂଦନ ଥିଲେ ବ୍ରହ୍ମବାଦୀ । ଯେ ବୃହତ୍ତମ, ସବୁଠାରୁ ଶ୍ରେଷ୍ଠ ବା ମହାନ୍ ଏବଂ ବିକାଶ ଯାହାର ଏକମାତ୍ର ଧର୍ମ ବା ଲକ୍ଷ୍ୟ, ତାହାହିଁ ବ୍ରହ୍ମ । ଶଙ୍କରା-ଚାର୍ଯ୍ୟଙ୍କ ଦୃଷ୍ଟିରେ ବ୍ରହ୍ମ ଅନନ୍ତ, ନିତ୍ୟ, ଶୁଦ୍ଧ, ବୁଦ୍ଧ ଏବଂ ମୁକ୍ତ । ତୈତ୍ତିରୀୟ ଉପନିଷଦ୍‌ରେ ଉଲ୍ଲେଖ ଅଛି ଯେ ଥରେ ଭୃଗୁ ତାଙ୍କ ପିତା ବରୁଣଙ୍କୁ ପ୍ରଶ୍ନ ପଚାରିଥିଲେ—"ଭଗବାନ ! ମୋତେ ବ୍ରହ୍ମ ବିଷୟରେ କିଛି ଧାରଣା ଦିଅନ୍ତୁ ।" ଭୃଗୁଙ୍କ ପ୍ରଶ୍ନର ଉତ୍ତରରେ ବରୁଣ କହିଥିଲେ—

"ଯତୋ ବା ଇମାନି ଭୂତାନି ଜାୟନ୍ତେ
ଯେନ ଜାତାନି ଜୀବନ୍ତି । ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ।
ତଦ୍ଵିଜିଜ୍ଞାସସ୍ୱ ତଦ୍ ବ୍ରହ୍ମେତି ।"

ଶାଣ୍ଡିଲ୍ୟ ମଧ୍ୟ ବ୍ରହ୍ମ ଅର୍ଥ 'ତଜ୍ଜଲାନ' ବୋଲି ଆଖ୍ୟା ଦେଇଛନ୍ତି; ଅର୍ଥାତ୍ ସମସ୍ତ ଭୂତ ବ୍ରହ୍ମରୁ ଜନ୍ମ ନେଇଥାନ୍ତି ଓ ବ୍ରହ୍ମ ଉପରେ ଲୟ ରଖିଥାନ୍ତି ଏବଂ ବ୍ରହ୍ମରେ ମଧ୍ୟ ଲୀନ ହୋଇଯାନ୍ତି । ବ୍ରହ୍ମକୁ ସଚ୍ଚିଦାନନ୍ଦ ବୋଲି ମଧ୍ୟ କୁହାଯାଏ । ଉପନିଷଦ୍‌ର 'ତତ୍ତ୍ୱମସି' ଅର୍ଥ ବ୍ୟାଖ୍ୟାକଲେ ଜଣାଯାଏ ଯେ ତତ୍ ଓ ତ୍ୱମ୍ ପଦରେ ଯଥାକ୍ରମେ ବ୍ରହ୍ମ (ପରମାତ୍ମା) ଓ

ଆତ୍ମା (ଜୀବାତ୍ମା)ର ଗୁଣ କୀର୍ତ୍ତନ କରାଯାଇଛି । କବି ମଧୁସୂଦନ ବ୍ରହ୍ମବାଦୀ ଥିବାରୁ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ବ୍ରାହ୍ମଧର୍ମର ପ୍ରଥମ ପଥପ୍ରଦର୍ଶକ ହେଉଛନ୍ତି ମନୀଷୀ ରାଜା ରାମମୋହନ ରାୟ । ହିନ୍ଦୁଧର୍ମର ସମସ୍ତ କୁସଂସ୍କାର ଦୂରକରି ସେ ଯେଉଁ ନୂତନ ଧର୍ମ ପ୍ରତିଷ୍ଠା କରିଥିଲେ, ସେହି ଧର୍ମ ବ୍ରାହ୍ମଧର୍ମ ନାମରେ ପରିଚିତ । ବ୍ରାହ୍ମଧର୍ମର ମୂଳଉଦ୍ଦେଶ୍ୟ ଥିଲା ବସ୍ତୁବାଦୀ ପାଶ୍ଚାତ୍ୟ ସଭ୍ୟତାଠାରୁ ଆଧୁନିକ ମୋହଗ୍ରସ୍ତ ଯୁବକଙ୍କୁ ସଂପୂର୍ଣ୍ଣ ଅଲଗା କରି ରଖିବା । କବି ବ୍ରହ୍ମବାଦୀ ଥିବାରୁ, ସର୍ବୋପରି ବ୍ରାହ୍ମଧର୍ମର ତତ୍ତ୍ୱସମୂହକୁ ନୂତନ ରୁଚି ଓ ପରିମାର୍ଜିତ ଭାଷା ମାଧ୍ୟମରେ ଲୋକଙ୍କଠାରେ ପ୍ରଚାରକରି ସେ ଧନ୍ୟ ହୋଇଛନ୍ତି । ନିଜକୁ ବ୍ରହ୍ମଙ୍କ ଭାବରେ ପରିଚିତ ଓ ପ୍ରତିଷ୍ଠିତ କରିବାକୁ ଯାଇ 'ନବବସନ୍ତ ଭାବନା'ରେ କବି ଲେଖିଛନ୍ତି—

"ପ୍ରେୟ ପଥ ତେଜି<br>
ଶ୍ରେୟ ପଥ ଆଶ୍ରୟ କର<br>
ବ୍ରହ୍ମ ପଦେ ପ୍ରାଣ ବିସର୍ଜି<br>
ନବ ଜୀବନ ଧର ।"

ମଧୁସୂଦନଙ୍କର ପ୍ରାୟ ଅଧିକାଂଶ କବିତାରେ ବ୍ରାହ୍ମଧର୍ମର ବନ୍ଦନା ଗୀତି ଦେଖିବାକୁ ମିଳେ ।

ମଧୁସୂଦନ ଉଭୟ ଶିକ୍ଷକ ଓ କବି ଥିବାରୁ ବ୍ୟକ୍ତିଗତ ଜୀବନ ପରି ତାଙ୍କ ସାହିତ୍ୟ ସୁନୀତି ଓ ସୁରୁଚିର ଏକ ମନୋଜ୍ଞ ଗନ୍ତାଘର ଥିଲା ଏବଂ କବିଙ୍କର କବିତ୍ୱ, ପାଣ୍ଡିତ୍ୟ, ସ୍ୱଦେଶ ପ୍ରେମ ଓ ଜୀବନ ଦର୍ଶନ ଇତ୍ୟାଦିର ସ୍ପଷ୍ଟ ସୂଚନା ତାଙ୍କ ରଚିତ 'କୁସୁମାଞ୍ଜଳି'ର 'ନବବସନ୍ତ ଭାବନା', 'ଏ ସୃଷ୍ଟି ଅମୃତମୟ ହେ', 'ନବଯୁଗର ଅଭିଷେକ', 'ଆଶା', 'ଆତ୍ମସମର୍ପଣ' ଓ 'ଋଷିପ୍ରାଣେ ଦେବାବତରଣ' ଇତ୍ୟାଦି କବିତାରୁ ମିଳୁଥିଲା ।

ଦାର୍ଶନିକ କବି ମଧୁସୂଦନଙ୍କ 'ଏ ସୃଷ୍ଟି ଅମୃତମୟ ହେ' ସମ୍ବନ୍ଧରେ ମତ ବ୍ୟକ୍ତ କରିବାକୁ ଇଚ୍ଛାକରି ଅଧ୍ୟାପକ ଶ୍ରୀଯୁକ୍ତ ଚନ୍ଦ୍ରମଣି ଦାଶ ଯଥାର୍ଥରେ ଲେଖିଛନ୍ତି—

"ସହଜାତ ଧର୍ମପ୍ରବଣତା ସହିତ ଯେଉଁ ଭକ୍ତିପ୍ରୀତି ମନ୍ତ୍ରଟି ଯୋଗୁ ମଧୁସୂଦନଙ୍କୁ ଏ ସୃଷ୍ଟି ଆନନ୍ଦମୟ ଓ ଅମୃତମୟ ରୂପେ ପ୍ରତିଭାତ ହୋଇଥିଲା, ସେ ପ୍ରାଣ ସଂଜୀବନୀ ମନ୍ତ୍ରଟି ହେଉଛି ମୁକ୍ତ ଉପନିଷଦର 'ଆନନ୍ଦରୂପ ମମୃତଂ ଯଦ୍‌ବିଭାତି' । ଏ ଜଗତରେ ଯାହା କିଛି, ତାହା ଆନନ୍ଦମୟ ଓ ଅମୃତମୟ । ଆନନ୍ଦରୁ ସବୁ ଉତ୍ପନ୍ନ, ଆନନ୍ଦ ଯୋଗୁ ସମସ୍ତେ ଜୀବନ ନେଇ ବଞ୍ଚିଛନ୍ତି । ଆନନ୍ଦର ଅଭିମୁଖେ ସମସ୍ତଙ୍କ ପ୍ରାଣ ଚଞ୍ଚଳ ଓ ଗତିଶୀଳ । ବ୍ରହ୍ମ ଆନନ୍ଦମୟ । ରସୋବୈସଃ ରସଂହ୍ୟେବାୟଂ ଲବ୍‌ଧ୍ୱାନନ୍ଦୀ-ଭବତି—ସେ ରସସ୍ୱରୂପ, ସେହି ରସକୁ ଜାଣିଲେ ସମସ୍ତେ ଆନନ୍ଦ ସ୍ୱରୂପ ହୋଇଯାନ୍ତି । କିଏ ସଂସାରରେ ଜୀବନ ଧରି ରହିବାକୁ ଚେଷ୍ଟାକରନ୍ତା, କିଏ ବା ବଞ୍ଚି ରହନ୍ତା ଯଦି ଆକାଶରେ ଆନନ୍ଦ ନ ଥାନ୍ତା ? 'କଃ ପ୍ରାଣ୍ୟାତ୍‌ ଯଦେବ ଆକାଶ ଆନନ୍ଦୋ ନ ସ୍ୟାତ୍‌' । ମନୁଷ୍ୟ ମୃତ୍ୟୁପରେ ସେହି ଆନନ୍ଦକୁ ଫେରିଯାଏ, ସେହି ଆନନ୍ଦରେ ଅଭିସଂବିଷ୍ଟ ହୁଏ ।"

ଏତଦ୍‌ଭିନ୍ନ ମଧୁସୂଦନଙ୍କ ଉପରେ ଉପନିଷଦର ପ୍ରଭାବ କିପରି ପଡ଼ିଥିଲା ଏବଂ 'କୁସୁମାଞ୍ଜଳି' କିପରି ତାଙ୍କ ଜୀବନଦର୍ଶନର ଜ୍ୱଳନ୍ତ ପ୍ରମାଣ ଦେଉଥିଲା, ସେ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଅଧ୍ୟାପକ ଶ୍ରୀଯୁକ୍ତ ଚନ୍ଦ୍ରମଣି ଦାଶ ଲେଖିଛନ୍ତି—

"ଭଗବତ୍‌ ଭକ୍ତି ଥିଲା ମଧୁସୂଦନଙ୍କ ସହଜାତ ସୂକ୍ଷ୍ମ ପ୍ରବୃତ୍ତି । ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରିବା ସମୟରୁ ସେ ଧର୍ମଭାବାପନ୍ନ ଥିଲେ । ଦେବ-ଦର୍ଶନ ନକରି ଅନ୍ନ ଜଳ ସ୍ପର୍ଶ କରୁନଥିଲେ । ଏହି ଧର୍ମୀୟ ଭାବ ଏବଂ ଅଧ୍ୟାତ୍ମପ୍ରବଣତା ଉତ୍ତରୋତ୍ତର ବିକାଶ ଲାଭକଲା ଉପନିଷଦ ପ୍ରଭୃତି ଧର୍ମଶାସ୍ତ୍ର ଅଧ୍ୟୟନ କରି ଏବଂ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇ । ସାକାର ପୂଜା କ୍ରମେ ନିରାକାର ପୂଜାରେ ପରିଣତ ହେଲା । ଆଧ୍ୟାତ୍ମପ୍ରବଣତା କୌଣସି ଗୋଷ୍ଠୀ ବା ଧର୍ମ ସଂପ୍ରଦାୟ ମଧ୍ୟରେ ସଙ୍କୁଚିତ ନ ହୋଇ ଅନନ୍ତ ବିସ୍ତୃତି ଲାଭ କଲା । ଜଳ, ସ୍ଥଳ, ପର୍ବତ, ସାଗର, ସୂର୍ଯ୍ୟ, ଚନ୍ଦ୍ର, ତାରା ସର୍ବତ୍ର ସେ ଏକ ଏବଂ ଅଦ୍ୱିତୀୟ ପରମବ୍ରହ୍ମଙ୍କ ସତ୍ତା ଉପଲବ୍‌ଧି କରି ଆନନ୍ଦରେ ତନ୍ମୟ ହୋଇ ଉଠିଲେ । ଉତ୍କଳର ସୀମିତ ପରିସରକୁ ଅତିକ୍ରମ କରି ଦେଶକାଳ

ଓ ପାତ୍ରର ସୀମାରେଖା ବିଲୁପ୍ତକରି ତାଙ୍କର ଆତ୍ମା ନିଖିଳ ବିଶ୍ୱଜଗତ ଉପରେ ପ୍ରସାରିତ ହେଲା । ସେ ନିଜ ଆତ୍ମା ମଧ୍ୟରେ ପରମାତ୍ମାଙ୍କର ଚିନ୍ମୟ ସତ୍ତା ଉପଲବ୍ଧି କରି ଯେପରି ପ୍ରେମପାଗଳ ହୋଇଉଠିଲେ, ସେହିପରି ନିଖିଳ ବ୍ରହ୍ମାଣ୍ଡର ମାନବ-ସମାଜ ମଧ୍ୟରେ ନିଜର ଆତ୍ମାକୁ ପ୍ରତିବିମ୍ବିତ ଦେଖି ବିଶ୍ୱୈକବୋଧ ଓ ବିଶ୍ୱାନୁଭୂତିରେ ମହୀୟାନ ହୋଇଉଠିଲେ । ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । କଟକ ବ୍ରାହ୍ମ ଅନୁଷ୍ଠାନର ଆଚାର୍ଯ୍ୟରୂପେ ତିରିଶ ବର୍ଷରୁ ଅଧିକ କାଳ ଗୁରୁରୂପେ ନିଜର ଦାୟିତ୍ୱ ନିର୍ବାହ କରିଥିଲେ । ବ୍ରାହ୍ମମାନଙ୍କୁ ଉଦ୍‌ବୋଧନ ଦେବା ନିମନ୍ତେ ଉପାସନା ସଙ୍ଗୀତ ରଚନା କରିଥିଲେ; କିନ୍ତୁ କେଉଁଠାରେ ସେ କ୍ଷୁଦ୍ର ସାଂପ୍ରଦାୟିକ ଭେଦଜ୍ଞାନରେ ନିଜକୁ ସଙ୍କୁଚିତ କରିନାହାନ୍ତି ।

ଧର୍ମବୋଧରେ ମଧୁସୂଦନ ଥିଲେ ସର୍ବଦା ଉଦାର ଓ ପ୍ରଶସ୍ତମନା । ଏହି ନିଃସ୍ୱାର୍ଥ ତ୍ୟାଗମନ୍ତ୍ର ଓ ବିଶ୍ୱପ୍ରାଣତାର ବୀଜ ତାଙ୍କର ଭକ୍ତିପ୍ରବଣ ଚିତ୍ତରେ କିଏ ବପନ କରିଥିଲା ? ଉପନିଷଦର ପ୍ରଧାନତଃ ସେହି ତିନୋଟି ମହାମନ୍ତ୍ର—

(୧) ଯୋ ବୈ ଭୂମା ତତ୍ସୁଖଂ; (୨) ନାଳ୍ପେ ସୁଖମସ୍ତି; (୩) ଭୂମାତ୍ୱେବ, ବିଜିଜ୍ଞାସିତବ୍ୟ ।" (ଜୀବନୀ ଓ ସାହିତ୍ୟାଲୋଚନା)

କବି ମଧୁସୂଦନଙ୍କ ସାହିତ୍ୟରେ ଉପନିଷଦର ପ୍ରଭାବ କିପରି ପ୍ରତି ଛତ୍ରେ ଛତ୍ରେ ଦେଖାଦେଇଛି, ସେ ବିଷୟରେ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ତାଙ୍କ ଗବେଷଣା ପୁସ୍ତକ 'ଓଡ଼ିଆ ସାହିତ୍ୟର ଇତିହାସ'ର ୩୪୬ ପୃଷ୍ଠାରେ ଏକ ସୁନ୍ଦର ଚିତ୍ର ଦେଇ ବର୍ଣ୍ଣନା କରିଛନ୍ତି—"ବିଭିନ୍ନ ଉପନିଷଦର ବିଭିନ୍ନ ମନ୍ତ୍ରରେ ପରଂବ୍ରହ୍ମଙ୍କ ସ୍ୱରୂପ ଓ କାର୍ଯ୍ୟ ବିଶଦଭାବରେ ପ୍ରକଟିତ । ଫଳତଃ ବ୍ରାହ୍ମଧର୍ମାବଲମ୍ବୀ ମଧୁସୂଦନ ଭାରତୀୟ ବିଭିନ୍ନ ଶାସ୍ତ୍ର, ବିଶେଷତଃ ଉପନିଷଦସ୍ଥ 'ବ୍ରହ୍ମ'ଙ୍କ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ । ମଧୁସୂଦନ-ସାହିତ୍ୟ, ତେଣୁ, ଔପନିଷଦିକ-ଅନ୍ତର୍ବାଣୀର ଏକ ମନୋଜ୍ଞ ମଧୁଭଣ୍ଡାର ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁ ବ୍ରହ୍ମବିଦ୍ୟା ବିଭିନ୍ନ ଉପନିଷଦର ପରମ ନିର୍ଯ୍ୟାସ, ମଧୁସୂଦନ ସାହିତ୍ୟ ସେଇ

ବିଦ୍ୟାର ଏକ ଅମଳିନ ସୃଷ୍ଟି-ରୂପମାତ୍ର । ଉପନିଷଦରେ ଅଛି, 'ହେ ସୌମ୍ୟ ! ଉପନିଷଦବର୍ଣ୍ଣିତ ପ୍ରଣବ ଅର୍ଥାତ୍ ଓଁ କାରରୂପ ମହାନ୍ ଧନୁ ନେଇ ଏଥିରେ ଉପାସନାଦ୍ୱାରା ତୀକ୍ଷ୍ଣ କରାଯିବା ବାଣ ଅର୍ଥାତ୍ ଆତ୍ମାକୁ ଚଢ଼ାଅ । ପରେ ବ୍ରହ୍ମଭାବପୂର୍ଣ୍ଣ ଚିତ୍ତଦ୍ୱାରା ଏଇ ବାଣକୁ ଟାଣି ତୁମେ ପରମ ଅକ୍ଷର ପରମେଶ୍ୱର ରୂପକ ଲକ୍ଷ୍ୟକୁ ବିନ୍ଧ । ସାଧକ ପକ୍ଷରେ ଏହି ଲକ୍ଷ୍ୟ ସାଧନ ଅତୀବ କଷ୍ଟସାଧ୍ୟ । କାରଣ ଏହି ଲକ୍ଷ୍ୟକୁ ବିଦ୍ଧ ବାଣ ପରି ଏଥିରେ ତନ୍ମୟ ହେବା ଉଚିତ—ସବୁ ବନ୍ଧନରୁ ମୁକ୍ତ ଓ ସର୍ବଦା ପରମେଶ୍ୱରଙ୍କ ଚିନ୍ତନରେ ତତ୍ପର ରହି ତନ୍ମୟ ହେବା ଆବଶ୍ୟକ । ଆତ୍ମ-ତନ୍ମୟତା ହିଁ ବ୍ରହ୍ମ ଚିନ୍ତନର ସର୍ବଶ୍ରେଷ୍ଠ ପରିଚୟ । ମଧୁସୂଦନ ସାହିତ୍ୟ ଏଇ ତନ୍ମୟତା ଓ ବ୍ରହ୍ମ ଚିନ୍ତନର ଏକ ମୂର୍ତ୍ତି ପ୍ରତୀକ ।' ଉପନିଷଦର ଉଦାର ବାଣୀ କବି ମଧୁସୂଦନ ମର୍ମେମର୍ମେ ଉପଲବ୍ଧି କରିଥିବାରୁ ତାଙ୍କୁ ଉପନିଷଦର ସାଧକ ବୋଲି ଉପଯୁକ୍ତ କାରଣଗୁଡ଼ିକରୁ ପ୍ରମାଣିତ କରାଯାଇଥାଏ । ମଧୁସୂଦନଙ୍କ ସାହିତ୍ୟରେ ଉପନିଷଦର ପ୍ରଭାବ ପ୍ରାୟ ଅନେକ କ୍ଷେତ୍ରରେ ଦେଖା ଦେଇଥିଲେ ମଧ୍ୟ ତାଙ୍କ ସ୍ୱରଚିତ ପଦ୍ମ, ଜୀବନଚିନ୍ତା, ନଦୀପ୍ରତି, ଋଷିପ୍ରାଣେ ଦେବାବତରଣ, ଆତ୍ମ ସମର୍ପଣ, ଏ ସୃଷ୍ଟି ଅମୃତମୟ ହେ, ପୃଥିବୀ ପ୍ରତି କବିତା, ଧ୍ୱନି, ପରମେଶ୍ୱର, ସ୍ତବ, ଶିଶୁ, ସୁନ୍ଦର ସଂସାର ଓ ଆକାଶ ପ୍ରତି କବିତାଗୁଡ଼ିକ ଯେ ଔପନିଷଦିକ-ଅନ୍ତର୍ବାଣୀର ଏକ ମନୋଜ୍ଞ ଗନ୍ତାଘର ଏହା ଅସ୍ୱୀକାର କରିବାର ଅବକାଶ ନାହିଁ ।

ପୁତ୍ର ମାତାକୁ ଯୁଗେ ଯୁଗେ ତାର ନ୍ୟାଯ୍ୟ ସମ୍ମାନ ଦେଇଆସିଛି । ଭିନ୍ନ ଭିନ୍ନ ଯୁଗର ସାହିତ୍ୟିକ ଓ କବିମାନେ ଶିଶୁସୁଲଭ ଦୃଷ୍ଟିରେ ପୃଥିବୀକୁ ମାତା ରୂପରେ କଳ୍ପନା କରି ମାଟିର ଜୈତ୍ରୀ ଗାନ କରିଛନ୍ତି । ବେଦ ଭାରତୀୟ ସଂସ୍କୃତିର ନିୟାମକ ତଥା ଜ୍ଞାନ ବିଜ୍ଞାନର ପ୍ରତିପାଦକ ହୋଇଥିବାରୁ ବୈଦିକ ଯୁଗର ସାହିତ୍ୟିକ ଗୋଷ୍ଠୀଙ୍କୁ ମଧ୍ୟ ଏ ରୂପ-ରସ-ଗନ୍ଧଭରା ପୃଥିବୀର ବର୍ଣ୍ଣ-ମହୋତ୍ସବ ଅତ୍ୟନ୍ତ ଭାବରେ ପ୍ରୀତ ଓ ମୁଗ୍ଧ କରିପାରିଛି । ଋଗ୍‌ବେଦରେ ଦ୍ୟାବା-ପୃଥିବୀ ଯୁଗଳ ଦେବତା ରୂପେ ଗୃହୀତ ହୋଇଥିବେଳେ ଅଥର୍ବବେଦର ଦ୍ୱାଦଶ କାଣ୍ଡର ୬୩ ଶ୍ଳୋକରେ ପୃଥିବୀର ମହନୀୟତା ଅଧିକ ପରିସ୍ଫୁଟ ହୋଇପାରିଛି ।

ଭାରତୀୟ ସାହିତ୍ୟରେ ପୃଥିବୀ ସମ୍ବନ୍ଧୀୟ କବିତାର ବର୍ଣ୍ଣନା ଅଧିକାଂଶ କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କରିଥିବାରୁ, ବେଦର ପ୍ରଭାବରେ ପ୍ରଭାବିତ ହୋଇ ଏହି ପରଂପରା ଉପରେ ହିଁ କବି ମଧୁସୂଦନଙ୍କ 'ପୃଥିବୀ ପ୍ରତି' ରଚିତ । ଏହି କବିତାର ଅନ୍ତରାଳରେ ବୈଦିକ କବିତାର ପ୍ରାଣଧାରା ସଂଚରିତ । ଏହି କବିତାରେ କବି ମଧୁସୂଦନ ପୃଥିବୀକୁ ଜନନୀ ଓ ମନୁଷ୍ୟକୁ ତାପରି ପୁତ୍ର ରୂପେ କଳ୍ପନା କରି ଏହାକୁ ବୈଦିକ କବିତାର ଅନୁରୂପ ବେଦ ହିସାବରେ ପ୍ରାଧାନ୍ୟ ଦେଇଛନ୍ତି, ସେ ବିଷୟ ପ୍ରମାଣ କରିବାକୁ ଯାଇ ଅଧ୍ୟାପକ ଡକ୍ଟର ଶରତଚନ୍ଦ୍ର ପ୍ରଧାନ 'ଝଙ୍କାର' ପଞ୍ଚଦଶ ବର୍ଷ ଅଷ୍ଟମ ସଂଖ୍ୟାରେ ଓଡ଼ିଆ କବିତାରେ 'ମାଟି' ଶୀର୍ଷକରେ ଆଲୋଚନା କରିଛନ୍ତି—

"ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ ।"

ଅ: ୧୨ । ୧ । ୧୨ ।

ମଧୁସୂଦନ—

"ତୁହି ମା ଧରଣୀ ଜନନୀ ମୋହର
ଧରିଛୁ ମା ମୋତେ କୋଳେ ।"

ପୁନଶ୍ଚ ଏ ପୃଥିବୀ ନିର୍ନିମେଷ ନୟନରେ ଆକାଶକୁ ଚାହିଁବା ପର୍ଯ୍ୟାୟରେ ପୃଥ୍ୱୀ ଓ ଆକାଶର ପତିପତ୍ନୀର ସମ୍ପର୍କ ଦ୍ୟୋତିତ ।

ଋକ୍ ବେଦରେ ଅଛି—

"ଦ୍ୟୌଷ୍ପିତଃ ପୃଥିବୀ ମାତର ଧ୍ରୁଗଗ୍ନେ
ଭ୍ରାତର୍ବସବୋ ମୃଳତାନଃ
ବିଶ୍ୱ ଆଦିତ୍ୟା ଅଦିତେ ସଜୋଷା
ଅସ୍ମଭ୍ୟଂ ଶର୍ମ ବହୁଲଂ ବିୟନ୍ତ ।"

ଋ : ୬ । ୫୧ । ୫

ହେ ଜନକ ଆକାଶ, ଜନନୀ ପୃଥିବୀ, ଭ୍ରାତା ଅଗ୍ନି ଓ ବସୁଗଣ ! ତୁମ୍ଭେ ସମସ୍ତେ ଆମ୍ଭମାନଙ୍କୁ ସୁଖ ପ୍ରଦାନ କର । ହେ ଅଦିତି-ପୁତ୍ରଗଣ ଓ ଅଦିତି, ତୁମେ ସମବେଦ ହୋଇ ଆମ୍ଭଙ୍କୁ ସମଧିକ ସୁଖ ପ୍ରଦାନ କର ।

ମଧୁସୂଦନଙ୍କ 'ପୃଥିବୀ ପ୍ରତି'ରେ ଅଛି—

"ରହିଛୁ ଅନାଇ ଅନନ୍ତ ଗଗନେ
ଆନନ୍ଦରେ ଅନୁକ୍ଷଣ
ସେ ମହାଗଗନ ମହା ଆନନ୍ଦରେ
ନିରେଖଇ ତୋ ଆନନ ।"

ସୁତରାଂ ଋଗ୍‌ବେଦରେ ଦ୍ୟାବା ପୃଥିବୀ ଯେପରି ପୁରୁଷ ନାରୀ ରୂପେ କଳ୍ପିତ, (୧) ମଧୁସୂଦନଙ୍କ କବିତାରେ ପୃଥିବୀ ଓ ଗଗନ ସେହିପରି କାନ୍ତା ଓ କାନ୍ତ ରୂପେ ଗୃହୀତ ।

ପୃଥିବୀ-ରମଣୀର ଆନନ୍ଦ ସଂପାଦନ ନିମିତ୍ତ ଗଗନ ଦିବାନିଶି ଓ ସାୟଂ ପ୍ରାତଃ ଆଲୋକ ବିତରଣ କରୁଛନ୍ତି । ପୁଣି ଧରିତ୍ରୀ ଅନନ୍ତ ସ୍ନେହର ଆଧାର । ତାର ନୀଳ ପର୍ବତ କଳଶ ସ୍ତନ୍ୟରୁ ନିର୍ଝରରୂପୀ ପୟ କ୍ଷରେ । ଏହା ଋଗ୍‌ବେଦୀୟ ଧାରଣା ଉପରେ ପ୍ରତିଷ୍ଠିତ । ଋଗ୍ ବେଦରେ ଅଛି—

"ଦିବସ୍ପୃଥି ବ୍ୟୋରବ ଆବୃଣୀମହେ—
ମାତୃସ୍ତସିନ୍ଧୂନ୍ ପର୍ବତାଞ୍ଛର୍ଯ୍ୟଣାବତଃ ।"

ଅର୍ଥାତ୍ ଦ୍ୟାବା ପୃଥିବୀ ଯେପରି ଆମକୁ ରକ୍ଷାକରନ୍ତୁ । ଜନନୀତୁଲ୍ୟ ନଦୀ ଓ ନିର୍ଝରଧାରୀ ପର୍ବତଗଣ ଆମ୍ଭମାନଙ୍କୁ ରକ୍ଷାକରନ୍ତୁ । ଏପରି ଏକ ପରିସ୍ଥିତିରେ ମଧୁସୂଦନ କହିଛନ୍ତି—

"କେତେ କେତେ ଶୋଭା ଧରିଛୁ ଜନନୀ
ତୋହର ବିପୁଳ ଦେହେ
ମାତୃସ୍ତନ ସମ ନୀଳ ପର୍ବତରୁ
ନିର୍ଝର ଝରଇ ସ୍ନେହେ ।"

କବି ମଧୁସୂଦନଙ୍କ ପୃଥିବୀ ଅନନ୍ତ ଭଣ୍ଡାର, ସକଳ ଐଶ୍ୱର୍ଯ୍ୟର ନିଳୟ । ସେ ପୃଥିବୀକୁ କାମଧେନୁ ରୂପେ ଗ୍ରହଣ କରିଛନ୍ତି । ଏହା ଋଗ୍‌ବେଦୀୟ ଉକ୍ତିର ତୁଲ୍ୟ । ଋଗ୍ ବେଦରେ ଅଛି—

"ଅସ୍ମଭ୍ୟଂ ସୁ ତ୍ୱମିନ୍ଦ୍ର ତାଂ ଶିକ୍ଷଯା ଦୋହତେ
ପ୍ରତିବରଂ ଜାରତେ ।
ଅଚ୍ଛିଦୋଧ୍ନୀ ପୀପୟଥ୍ ଯଥାନଃ
ସହସ୍ରଧାରା ପୟସା ମହୀ ଗୋ ।"

ଋ· ୧୦ । ୧୩୩ ।୭

ଅର୍ଥାତ୍ ହେ ଇନ୍ଦ୍ର ! ଆମ୍ଭମାନଙ୍କୁ ତୁମ୍ଭେ ଏଇ ବିଦ୍ୟା ପ୍ରଦାନ କର । ଯାର ପ୍ରଭାବରେ ସ୍ତବକାରୀର ମନୋରଥ ପୂର୍ଣ୍ଣ ହୁଏ । ଏହି ପୃଥିବୀ ରୂପା ଗାଭୀ, ଯେପରି ବିପୁଳ ପାନୀୟ-ବିଶିଷ୍ଟା ହୋଇ ସହସ୍ର ଧାରାରେ ଦୁଗ୍ଧ କ୍ଷରିତ କରି ଆମ୍ଭଙ୍କୁ ପରିତୃପ୍ତ କରେ । ମଧୁସୂଦନ କହିଛନ୍ତି—

"ନର ପଶୁ ପକ୍ଷୀ କୀଟ ତରୁଲତା
କାମଧେନୁ ତୁ ସବୁରି"
ତୋହରି ପ୍ରସାଦେ ସକଳ କାମନା
ଯାଉଅଛୁ ମା ଗୋ ପୂରି । (୨)

ଏ ରୂପେ ବିଚାରକଲେ ମଧୁସୂଦନଙ୍କ 'ପୃଥିବୀ ପ୍ରତି'ରେ ବୈଦିକ ଗୀତି ସୁମନରେ ସୁରଭି ସଂଚାରିତ । ଅଥଚ ଓଡ଼ିଆ ସାହିତ୍ୟରେ ପୃଥିବୀ ଅର୍ଚ୍ଚନା'ର ଏହାହିଁ ପ୍ରଥମ ନୈବେଦ୍ୟ ।

କବିଙ୍କ ଅନୁବାଦର ବୈଶିଷ୍ଟ୍ୟ ହେଉଛି ସେ ସର୍ବଦା ଆକ୍ଷରିକ ଅନୁବାଦ କରିବାକୁ ଚେଷ୍ଟା କରିଥାନ୍ତି । ଅନେକ କ୍ଷେତ୍ରରେ ମୂଳକୃତିର ମୌଳିକ ସୌନ୍ଦର୍ଯ୍ୟ ରକ୍ଷା କରିବା ସମ୍ଭବପର ନ ହୋଇଥିଲେ ମଧ୍ୟ ଅନୁସରଣ ମୂଳକ ଅନୁବାଦରେ ତାଙ୍କର ଅମଳିନ ପ୍ରତିଭା ପରିସ୍ଫୁଟ ହୋଇଥାଏ । ଶୁଦ୍ଧମାର୍ଜିତ, ଶବ୍ଦ ନିର୍ବାଚନ, ଗୁରୁଗମ୍ଭୀର ଭାଷାର ବିନିଯୋଗ, ସର୍ବଶେଷରେ ନିଜ ଧର୍ମ ଧାରଣାର ସମ୍ୟକ୍ ପ୍ରତିଫଳନ ଏ ସମସ୍ତଙ୍କ ସହାୟତାରେ କବିଙ୍କ ଅନୁବାଦ ସାହିତ୍ୟ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାଏ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟର ପ୍ରଭାବରେ ପ୍ରଭାବିତ ହୋଇ କବି ସାହିତ୍ୟର ବିଭିନ୍ନ ବିଭାଗରେ ଯେଉଁ କେତେଗୁଡ଼ିଏ ଅନୁବାଦ ସାହିତ୍ୟ ସୃଷ୍ଟି କରିଛନ୍ତି,

ସେ ଗୁଡ଼ିକ ମଧ୍ୟରୁ William Cowperଙ୍କ ଲିଖିତ The Solitude of Alexander Selkirk ପ୍ରଭାବରେ ପ୍ରଭାବିତ 'ନିର୍ବାସିତର ବିଳାପ' ( ୧୮୭୩-୭୪-କବିତାବଳୀର ପ୍ରଥମଭାଗ ), Lord Tennysonଙ୍କ ଲିଖିତ 'The Brook' ରବୀନ୍ଦ୍ରନାଥଙ୍କ ଲିଖିତ 'ନିର୍ଝରେର ସ୍ୱପ୍ନଭଙ୍ଗ', 'ନଦୀ' ପ୍ରଭାବରେ ପ୍ରଭାବିତ ନଦୀପ୍ରତି ( କାମୋଦବୃତ୍ତ—ଛନ୍ଦମାଳା ଦ୍ୱିତୀୟ ଖଣ୍ଡ) ଇଂରାଜୀ ସାହିତ୍ୟର ଅନୂଦିତ 'ଆତ୍ମସମର୍ପଣ' ( କୁସୁମାଞ୍ଜଳି ୧୮୯୨-୯୩ ), ଇଉରୋପୀୟ Spencerian Stanza ଆଧାରର ଛନ୍ଦ ପ୍ରକୃତରେ 'ଭାରତ ଭାବନା' ( କୁସୁମାଞ୍ଜଳି-୧୮୯୨-୯୩), ବଙ୍ଗଳା ସଙ୍ଗୀତର ଅନୁବାଦ ୬୨ ନମ୍ବର ଲଳିତପତ୍ର କବିତା, '୬୦ ନମ୍ବର କବିତା' (ସଂଗୀତମାଳା-ବଙ୍ଗଳା ରାଗିଣୀରେ (ରଚିତ ୧୮୯୪-୯୫), ମହାକବି ଭବଭୂତିଙ୍କର ସଂସ୍କୃତ ଗ୍ରନ୍ଥର ଅନୁବାଦ, 'ଉତ୍ତର ରାମ ଚରିତ ନାଟକ' ( ୧୯୦୭-୧୯୦୮), ସିସିଲିଆନ ସାହିତ୍ୟର ଅନୁବାଦ 'ପ୍ରେମ୍ୟର ଅଦ୍ଭୁତ ପରିଣାମ' (୧୮୭୩), ଇଂରାଜୀ ସାହିତ୍ୟର ଅନୁବାଦ 'ପ୍ରବନ୍ଧମାଳା'ର କେତେକ ପ୍ରବନ୍ଧ ସହିତ 'ସାହିତ୍ୟ-ପ୍ରସଙ୍ଗ'ର କେବଳ ଗଦ୍ୟାଂଶ 'ବୁଦ୍ଧଦେବ' 'ଉଲ୍‌କାପିଣ୍ଡ' 'ଚନ୍ଦ୍ର ଓ ତାରା', 'ସୂର୍ଯ୍ୟ', 'ଶାସନ ପ୍ରଣାଳୀ', ସଂସ୍କୃତ ରଘୁବଂଶର 14 Cantoର ଅନୁବାଦ, 'ଅଯୋଧ୍ୟା ପ୍ରତ୍ୟାଗମନ' (କବିତାବଳୀ, ଦ୍ୱିତୀୟ ଭାଗ ୧୮୭୩-୭୪) ସଂସ୍କୃତର ଅନୁବାଦ 'ସୀତା ବନବାସ' (କବିତାବଳୀ, ପ୍ରଥମ ଭାଗ ୧୮୭୨-୭୩) ସଂସ୍କୃତର ଅନୁବାଦ 'ଶ୍ରୀରାମ ବନବାସ' (ଛନ୍ଦମାଳା-ଦ୍ୱିତୀୟ ରସକୁଲ୍ୟାବୃତ୍ତ) ସଂସ୍କୃତର ଅନୁବାଦ 'ବାଲରାମାୟଣ' (ବାଳକାଣ୍ଡ, ଅଯୋଧ୍ୟା କାଣ୍ଡ ), ଦୀନକୃଷ୍ଣଙ୍କ ପ୍ରଭାବିତ ଋତୁ ବର୍ଣ୍ଣନା 'ଛନ୍ଦମାଳା'., ଇଂରାଜୀ କବିଙ୍କ ଆଭାସରେ ଲିଖିତ 'ଜୀବନ ଚିନ୍ତା' ( କବିତାବଳୀ ଦ୍ୱିତୀୟଭାଗ ), ଇଂରାଜୀ କବିଙ୍କ ଆଭାସରେ ଲିଖିତ 'ଆକାଶ ପ୍ରତି' (କବିତାବଳୀ ଦ୍ୱିତୀୟ ଭାଗ ୧୮୭୩-୭୪), ଇଉରୋପୀୟ Spencerian stanza ଆଧାରର ଛନ୍ଦ ପ୍ରକୃତରେ, 'ନିଶୀଥ ଚିନ୍ତା, (କବିତାବଳୀ-ପ୍ରଥମଭାଗ ) କବି ମିଲ୍‌ଟନ୍‌ଙ୍କର ପ୍ରଭାବିତ 'ବସନ୍ତଗାଥା' ଓ 'ଚତୁର୍ଦ୍ଦଶ ପଦୀ' କବିତା ଇତ୍ୟାଦ ପ୍ରଧାନ ସ୍ଥାନ ଅଧିକାର କରିଛି ।

କବି ମଧୁସୂଦନଙ୍କ ଉପରେ ସଂସ୍କୃତ କବିମାନଙ୍କ ପ୍ରଭାବ ପଡ଼ିଥିଲେ ମଧ୍ୟ ନିଜର ସହଜ, ସୁଠାମ ପଦଲାଳିତ୍ୟଦ୍ୱାରା କବି ପ୍ରାୟ ପ୍ରତ୍ୟେକ ପାଠକ ପାଠିକାଙ୍କୁ କପରି ଶୋକାଭିଭୂତ କରିଥାନ୍ତି, ତାର ଜ୍ୱଳନ୍ତ ପ୍ରମାଣ କବି କାଳିଦାସଙ୍କ ପ୍ରଭାବିତ କବିତା 'ସୀତା ବନବାସ' ହିଁ। ପତିଙ୍କଦ୍ୱାରା ନିର୍ବାସିତା ହୋଇ ସତୀ ସୀତାଙ୍କ କରୁଣ କ୍ରନ୍ଦନ କପରି ପ୍ରତ୍ୟେକ ପାଠକ ପାଠିକାଙ୍କ ଅନ୍ତରରେ ଦୁଃଖର ବନ୍ୟା ପ୍ଲାବନ ଜଣିଥିଲା ସେ ବିଷୟରେ କବି 'ସୀତା ବନବାସ' କବିତାରେ ଲେଖିଛନ୍ତି—

"ସେ ପଦ ବିନା ଆହେ ରଘୁବପତି
କାହିଁ ଏ ପାପୀୟସୀ ଦାସୀର ଗତି।
ଅତି କଠୋର ପ୍ରଭୁ, ଦାସୀର ଜୀବ
ବଂଚିଛି ଯାହା ଗୁଣ୍ଡି ପଦ ରାଜୀବ।
ଏତିକ ଭିକ୍ଷା ନାଥ ଯେହ୍ନେ ପ୍ରାଣାନ୍ତେ
ଦାସୀ ପାଇବ ସ୍ଥାନ ସେ ପଦ ପ୍ରାନ୍ତେ।"

କବିଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ସଂସ୍କୃତ ରଘୁବଂଶର 14 Cantoର ଅନୁବାଦ। ଏହା ରଘୁବଂଶର ଆକ୍ଷରିକ ଅନୁବାଦ ନ ହୋଇଥିଲେ ମଧ୍ୟ ମୂଳ ବିଷୟ ଦୃଷ୍ଟିରୁ ଅନେକ କ୍ଷେତ୍ରରେ ଅନୁବାଦରେ କପରି ଭାବସାମ୍ୟ ରକ୍ଷା କରାଯାଇଛି, ତାହା ନିମ୍ନ ଉଦାହରଣରୁ ସ୍ପଷ୍ଟ ପ୍ରମାଣ ମିଳେ।
ରଘୁବଂଶରେ ଅଛି—

"ଇମାଂତଟେ ଶୋକ ଲତାଂ ଚତନ୍ୱୀ
ସ୍ତନାଭିରାମ ସ୍ତବକାଭି ରାମ
ତ୍ୱତ୍ପ୍ରାପ୍ତି ବୁଦ୍ଧ୍ୟା ପରିରବ୍ଧୁକାମଃ
ସୌମିତ୍ରିଣା ସାଶ୍ରୁରହଂ ନିଷିଦ୍ଧଃ।"

ଅନୁବାଦରେ ମଧୁସୂଦନ ଲେଖିଛନ୍ତି—

"ସ୍ତବକ ସ୍ତନରେ ନମ୍ର ଅଶୋକ ବଲ୍ଲରୀ
ଦେଖି ପାଇଲି ତୁମକୁ ଏହା ମନେକରି।

ଅଧୀର ହରଷେ ଶୋକ ଆଲିଙ୍ଗନ ଆଶେ
ଅଶ୍ରୁପୂର୍ଣ୍ଣ ନୟନରେ ଧାଆନ୍ତେ ତା ପାଶେ ।
ନୁହନ୍ତି ଏ ସୀତାଦେବୀ ସୁମିତ୍ରା ନନ୍ଦନ
ଏମନ୍ତ ବୋଲିଣ ମୋତେ କଲେ ନିବାରଣ ।"

ରଘୁବଂଶରେ ଅଛି—

"ଦୂରାଦୟଶ୍ଚକ୍ର ନିଭସ୍ୟ ତନ୍ୱୀ
ତମାଳତାଳୀ ବନରାଜି ନୀଳା
ଆଭାତି ବେଳା ଲବଣାମ୍ବୁରାଶେଃ
ଧାରା ନିବଦ୍ଧେବ କଳଙ୍କ ରେଖା ।"

ଅନୁବାଦରେ ମଧୁସୂଦନ ଲେଖିଛନ୍ତି—

"ନୀଳ ଦିଶେ ତୀର ତାଳୀ ତମାଳ ମାଳରେ
ଲୌହ ଚକ୍ର ସମଶିନ୍ଧୁ ଅଟଇ ଆକାରେ
ଚନ୍ଦ୍ରର କଳଙ୍କ ରେଖା ପ୍ରାୟ ସେହି ତୀର
ଦୂରରୁ ଦିଶଇ ଦେଖ କେମନ୍ତ ରୁଚିର ।"

ଆଧୁନିକ ଓଡ଼ିଆ ସାହିତ୍ୟରେ ସନେଟ୍ ବା ଚତୁର୍ଦ୍ଦଶପଦୀ କବିତାର ଆମଦାନୀ ଇଂରାଜୀ ସାହିତ୍ୟରୁ । ଏକାନ୍ତର ମେଳ ପ୍ରଭୃତି ନୂତନ ଛନ୍ଦ ରୀତି ରାଧାନାଥ ପ୍ରଥମେ ବଙ୍ଗଳା ସାହିତ୍ୟରେ ପରୀକ୍ଷା କରାଇଥିଲେ ମଧ୍ୟ କବି ମଧୁସୂଦନ ଓଡ଼ିଆ ସାହିତ୍ୟର ଗୀତି କବିତା (lyric) ଓ ଚତୁର୍ଦ୍ଦଶପଦୀ କବିତା (Sonnet)ର ସଫଳ ପ୍ରବର୍ତ୍ତକ ଭାବରେ ପରୀକ୍ଷୋତ୍ତୀର୍ଣ୍ଣ ହୋଇ-ଛନ୍ତି । ଏଥିପାଇଁ କବି ମଧୁସୂଦନ ଇଂରାଜୀ ସାହିତ୍ୟ ଗଭୀର ଅଧ୍ୟୟନ କରି ତନ୍ମଧ୍ୟରୁ ରୀତି ଆହରଣ କରିବାକୁ ବାଧ୍ୟ ହୋଇଥିଲେ । କବି ମଧୁସୂଦନ ଜଣେ ସୁଦକ୍ଷ ଭକ୍ତ କବିତା ରଚୟିତା ଓ ଗଦ୍ୟ ଲେଖକ ହିସାବରେ ଖ୍ୟାତି ଅର୍ଜନ କରିଥିଲେ ସୁଦ୍ଧା ସେ ଥିଲେ ଓଡ଼ିଆ ସନେଟ୍ ବା ଚତୁର୍ଦ୍ଦଶପଦୀ କବିତାର ଜନ୍ମଦାତା ।

ସନେଟ୍ ପରି 'ନିଶୀଥ ଚିନ୍ତା' ଓ 'ଭାରତ ଭାବନା' ପ୍ରଭୃତି କବିତାରେ ସେ Spencerian stanza ପଦ୍ଧତିର ଅନୁସରଣ କରିଅଛନ୍ତି । ଇଂରାଜୀର ଚତୁଷ୍କ ବା ଏକାନ୍ତର ମେଳ ଓ ଟେରେ୍ ରାଇମ୍ ମେଳ ପଦ୍ଧତି 'ଆକ ଶାନ୍ତି' ଓ 'ଏ ସୃଷ୍ଟି ଅମୃତମୟ ହେ' କବିତାରେ ପରୀକ୍ଷା କରାଇଛନ୍ତି । ଛନ୍ଦର ପ୍ରବହମାନ ଗତିବୈଚିତ୍ର୍ୟ ଯୋଗୁ ଇଂରାଜୀ କବିତାର ରୂପ ସୌନ୍ଦର୍ଯ୍ୟ ଅଭିବୃଦ୍ଧି ଲାଭ କରିଥାଏ । କବିଙ୍କ 'ଭାରତଭାବନା' ଏହାର ସାର୍ଥକ ଉଦାହରଣ । ଗୋଟିଏ ନିର୍ଦ୍ଦିଷ୍ଟ ଭାବ ଗୋଟିଏ ପାଦରେ ପରିପୂର୍ଣ୍ଣତା ଲାଭ ନ କରି ପ୍ରବହମାନ ଗତିରେ ଗୋଟିଏ ପାଦରୁ ଅନ୍ୟ ପାଦକୁ ଯାଇ କିପରି ଭାବ ମୁଖରିତ ହୋଇଉଠେ, ତାହାହିଁ ଏହି କବିତାରେ ସୁସ୍ପଷ୍ଟ । ଏହି ରୀତି ସମ୍ବଳିତ ମାତ୍ରା, ବୃତ୍ତ, ଛନ୍ଦ କବି ମଧୁସୂଦନଙ୍କ 'ଜୟଗାନ', 'ଭାରତୀ ବନ୍ଦନା' ଓ 'ସନ୍ଧ୍ୟା' ପ୍ରଭୃତି ଆଧୁନିକ ଓଡ଼ିଆ ଗୀତି କବିତାରେ ସଫଳଭାବେ ପ୍ରବର୍ତ୍ତିତ ହୋଇପାରିଛି ।

କବି ମଧୁସୂଦନଙ୍କ ସାହିତ୍ୟ କବିତ୍ୱଦ୍ୱାରା ପ୍ରଭାବିତ ହୋଇ ପାଶ୍ଚାତ୍ୟ ସାହିତ୍ୟଦ୍ୱାରା ପରିପୁଷ୍ଟତା ଲାଭ କରିଥିଲା । କବି ପ୍ରଥମେ ସଂସ୍କୃତ ସାହିତ୍ୟର ଅନୁବାଦକ, ଦ୍ୱିତୀୟରେ ଇଂରାଜୀ ଭାଷା ଅଧ୍ୟୟନରତ ଛାତ୍ର ଏବଂ ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମାବଲମ୍ବୀ ଥିବାରୁ ତାଙ୍କ ଗୀତି କବିତାରେ ସଂସ୍କୃତର ପରମ୍ପରା, ପାଶ୍ଚାତ୍ୟ ସାହିତ୍ୟର ନୂତନତା ଓ ବ୍ରାହ୍ମଧର୍ମର ଆହ୍ୱାନ ଦେଖା ଦେଇଥାଏ ।

କବି ମଧୁସୂଦନ ସିସିଲିଆନ୍ ସାହିତ୍ୟର ପ୍ରଭାବରେ ପ୍ରଭାବିତ ହୋଇ 'ପ୍ରଣୟର ଅଦ୍ଭୁତ ପରିଣାମ' ଗଳ୍ପ ଅନୁବାଦ କରିଥିଲେ ମଧ୍ୟ ଅନୁବାଦରେ ମନୋନୀତ କରିବାର ଭାର, ଅର୍ଥାତ୍ ପୃଥିବୀର ଗଳ୍ପରାଶି ମଧ୍ୟରୁ ଅନୁବାଦ ନିମନ୍ତେ ଏହି ଗଳ୍ପଟି ବାଛିବାର ଦାୟିତ୍ୱ କବିଙ୍କର ନିଜସ୍ୱ । ଏହି ଗଳ୍ପରେ ହେନେରି ଓ ମାର୍ଟିଲ୍ଲଡ଼ାଙ୍କ ପ୍ରଣୟ କାହାଣୀ ବର୍ଣ୍ଣନା କରାଯାଇଛି ଏବଂ ଶେଷରେ ହେନେରି ମାର୍ଟିଲଡ଼ାଙ୍କ ପ୍ରଣୟରେ ନିରାଶ ହୋଇ ଯାବଜ୍ଜୀବନ ଅବିବାହିତ ରହି ସର୍ବଦା ନିଜ ହୃଦୟସ୍ଥ-ପ୍ରଣୟିନୀକୁ ସ୍ମରଣ କରି ଶୋକରେ ଜୀବନ ଅତିବାହିତ କରିଛନ୍ତି ।

ସତ୍ୟନିଷ୍ଠ, ସାହିତ୍ୟ ସାଧକ କବି ମଧୁସୂଦନଙ୍କ ସାରସ୍ୱତ ସାଧନା ଫଳରେ ତାଙ୍କ କାବ୍ୟ ଉପବନର ସୁରଭିତ କବିତାଗୁଡ଼ିକର ରୂପବିଗ୍ରହ ପାଠକ ପାଠିକାଙ୍କ ମନକୁ ଯେଭଳି ଭାବରେ ଆକର୍ଷଣ ନ କରେ, ସେମାନଙ୍କର ଭାବ ସୁରଭି ତାର ହୃଦୟକୁ ଅଧିକ ମାତ୍ରାରେ ରସୋଦ୍‌ଫୁଲ୍ଲିତ କରେ । ଏହି ଦୃଷ୍ଟିରୁ ବିଚାରକଲେ ମଧୁସୂଦନଙ୍କ 'ନଦୀପ୍ରତି' ଏକ ଅବିସ୍ମରଣୀୟ କବିତା । ଏହି କବିତାଟି କବିଙ୍କର ଏକ ସମ୍ପୂର୍ଣ୍ଣ ମୌଳିକ କବିତା ନ ହେଲେ ମଧ ଏଥିରେ କବିଙ୍କର ସ୍ୱକୀୟତାର ଯଥେଷ୍ଟ ପ୍ରମାଣ ରହିଛି ଏବଂ ଏହା ଇଂରାଜୀ ଓ ବଙ୍ଗଳା କବିତାର ଭାବ-ସମ୍ପଦ ନେଇ ପରିପୁଷ୍ଟତା ଲାଭ କରିଛି । ମନୁଷ୍ୟ ଜୀବନର ଉତ୍‌ଥାନ ପତନ ବା ଜନ୍ମ ମୃତ୍ୟୁ ଭଳି ନଦୀର କପରି ଉତ୍ପତ୍ତି ଓ ପତନ ଘଟେ, ତାର ଏକ ଲଳିତ ସମନ୍ୱୟ ଏହି କବିତାର ବିଷୟବସ୍ତୁ ।

ମନୁଷ୍ୟ ଜନ୍ମ ଲାଭପରେ ବିଭିନ୍ନାବସ୍ଥା ଦେଇ ଯେପରି ମୃତ୍ୟୁର ସମ୍ମୁଖୀନ ହୁଏ, ନଦୀ ଗିରି କନ୍ଦରରୁ ବାହାରି ଯୌବନ ମୁଖର ହୋଇ ଜୀବନର ଗାନ ଗାଇ ଅବଶେଷରେ କପରି ସମୁଦ୍ର ସଙ୍ଗେ ମିଶିଯାଏ, ସେ ସବୁର ଏକ ସୁଚିତ୍ରିତ ଆଲେଖ୍ୟ ପ୍ରଦାନ କରିବା ହେଉଛି କବିତାର ମୂଳ ଲକ୍ଷ୍ୟ ।

ଇଂରେଜ କବି, Lord Tennysonଙ୍କ 'The Brook' କବିତାର ପ୍ରଭାବରେ ପ୍ରଭାବିତ ହୋଇ ବିଶ୍ୱକବି ରବୀନ୍ଦ୍ରନାଥ 'ନିର୍ଝରେର ସ୍ୱପ୍ନଭଙ୍ଗ' ଓ ପରେ 'ନଦୀ' କବିତା ଲେଖିଥିଲେ । ମଧୁସୂଦନ ଲର୍ଡ଼ ଟେନିସନ ଓ କବି ରବୀନ୍ଦ୍ରନାଥଙ୍କୁ ଅଗ୍ରଜ ଭାବରେ ଗ୍ରହଣ କରି 'ନଦୀ ପ୍ରତି' କବିତା ରଚନା କରିଛନ୍ତି ।

ଇଂରେଜ କବି ଲର୍ଡ଼ ଟେନିସନ ତାଙ୍କ କବିତା 'The Brook'ରେ ନଦୀର ପ୍ରବହମାନ ଅଗ୍ରଗତି ଓ ମାନବ ଜୀବନର ଦର୍ଶନ ପରିସ୍ଫୁଟ କରିବାକୁ ଯାଇ ଲେଖିଛନ୍ତି—

"Men may come and men may go
But I go on forever."

ଅର୍ଥାତ୍ ମନୁଷ୍ୟ ଜୀବନର ଚଳ ବିବର୍ତ୍ତନଶୀଳ । ତାର ଆଗମନ ଓ ପ୍ରୟାଣ ମଧ ଅଛି । ତାର ଜୀବନଚକ୍ରରେ ପୁନରାଗମନ ସୁନିଶ୍ଚିତ; କିନ୍ତୁ

ନଦୀ ଜୀବନରେ ଏହା ନ ହୋଇ ଏହାର ଆଗମନ ଓ ଚର ପ୍ରସ୍ଥାଣ ଥିବାରୁ ଏ ତୁଳନା ବୈଶିଷ୍ଟ୍ୟଶୀଳ । ନଦୀର ଉତ୍ପତ୍ତି ଓ ଗତିବିଧି ସମ୍ପର୍କରେ ବର୍ଣ୍ଣନା କରିବାକୁ ଯାଇ ଟେନିସନ୍ ତାଙ୍କ କବିତା 'The Brook'ରେ ଲେଖିଛନ୍ତି—

"I come from haunts of coot and hern,
I make a sudden sally,
And sparkle out among the ferm,
To bicker down a valley,"

'The Brook'ର ରଚନା ଶୈଳୀ ଓ ଭାବଧାରା ବିଶ୍ୱକବି ରବୀନ୍ଦ୍ରନାଥଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିବାରୁ ଏହାର ପାରମର୍ମ ଉପଲବ୍ଧି କରି କବି ରବୀନ୍ଦ୍ରନାଥ ତାଙ୍କ 'ନିର୍ଝରେର ସ୍ୱପ୍ନଭଙ୍ଗ' କବିତାରେ ଲେଖିଛନ୍ତି—

"ଆଜି ଏ ପ୍ରଭାତେ ରବିର କର
କେମନେ ପଶିଲ ପ୍ରାଣେର ପର ।
କେମନେ ପଶିଲ ଗୁହାର ଆଁଧାରେ
ପ୍ରଭାତ ପାଖିର ଗାନ
ନଜାନି କେନରେ ଏତେଦିନ ପରେ
ଜାଗିୟା ଉଠିଲ ପ୍ରାଣ ।

ଓରେ ଉଥଲି ଉଠେଛେ ବାରି
ଓରେ ପ୍ରାଣେର ବାସନା ପ୍ରାଣେର ଆବେଗ
ରୁଧିୟା ରାଖିତେ ନାରି ।"

ମଧୁସୂଦନଙ୍କ 'ନଦୀ' ମଧ୍ୟ ଗିରିଗୁହା ତ୍ୟାଗପୂର୍ବକ କପର୍ଦ୍ଦିବନ୍ଧର୍ଗତା ଓ ପ୍ରବହମାନା, ସେ ବିଷୟରେ କବି ତାଙ୍କ କବିତା 'ନଦୀ ପ୍ରତି'ରେ ଲେଖିଛନ୍ତି—

"ନମେ ଜନ୍ମି କନ୍ଦରେ ଅଦ୍‌ଭୁତ ଛନ୍ଦରେ
ପଶିଲୁ ତାକ ଜଗତର
ଭଜିଲ ତୋ ସ୍ୱପନ ମେଲିଲୁ ତୁ ନୟନ
ଦେଖିଲୁ ଦିବ୍ୟ ରବିକର
ନବ ସ୍ୱର୍ଣ୍ଣ ରେଖାସର
ପଡ଼ିଲା ବକ୍ଷରେ ତୋହର
ସେ କର ପରଶନେ ଥର ଥର କମ୍ପନେ
ଅଶିଲୁ ବେଗେ ଝର ଝର ।"

× × × ×

ଗିରିଭୂମି ବରଜ ମହାନନ୍ଦେ ଗରଜ
ତୁ ଅବତରିଲୁ ଭୂତଳେ
ତୋତେ ଦେଖିବା ପାଇଁ ଦଶଦିଗରୁ ଧାଇଁ
ଆନନ୍ଦେ ଆସିଲେ ସକଳେ
ଫେନିଲ କଲ୍ଲୋଳ ତୋହର
ଚଞ୍ଚଳ କଳ କଳ ସ୍ୱର
ବିମଳ ଜଳରାଶି ଆନନ୍ଦେ ପରକାଶି
ମୋହିଲୁ ସକଳ ଅନ୍ତର ।

ନଦୀ ତଟ ଭୂମିର ସୌନ୍ଦର୍ଯ୍ୟାବଲୋକନ କଲାବେଳେ ଉଭୟ ମଧୁସୂଦନ ଓ ରବୀନ୍ଦ୍ରନାଥଙ୍କ ଦୃଷ୍ଟିଭଙ୍ଗୀରେ ସାମଞ୍ଜସ୍ୟତା ପରିଲକ୍ଷିତ ହୁଏ । କବି ରବୀନ୍ଦ୍ରନାଥଙ୍କ ଭାଷାରେ —

"କୋଥାଓ ଚଷିଛେ କରଛେ ଚାଷ
କୋଥାଓ ଗୋରୁ ତେ ଖେତେଛେ ଘାସ ।

× × × ×

କୋଆଓ ବସି ପ୍ରାଠଶାଳା ଘରେ
ଯତନ୍ତ୍ରେଲେସ୍ ଠେଁ ଠିଯ୍ରେ ପଢ଼େ ।

× × × ×

ମରେ କୋଆ ଓ ବସେଛେ ହାଟ
ନୋକା ଭରସ୍ଥା ରଯ୍ରେଛେ ଘାଟ ।" (ନ. ସ୍ତ. ଉ.)

କବି ମଧୁସୂଦନଙ୍କ ଭାଷାରେ—

"କାହିଁ ଲୋକ ଗହଳ ବିକା କିଣା ଚହଳ
କାହିଁ ଚଳନ୍ତି ଗୃହୀ ଜନେ
କାହିଁ ବା ଗୃହେ ଗୃହାଳରେ
ପଢ଼ନ୍ତି ପୋଥି ଧୀରେ ଧୀରେ
କାହିଁ ବସିଛି ହାଟ କାହିଁ ରାଜଇ ଘାଟ
ରଚିତ ସୋପାନ ଶ୍ରେଣୀରେ ।" ( ନ: ତ୍ରି: )

Shelly, Biron, Keats, Tennyson ଓ William Crowper ପ୍ରଭୃତି ଇଂରାଜୀ କବିଙ୍କ କବିତାବଳୀ କବି ମଧୁସୂଦନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିବାରୁ ତନ୍ମଧ୍ୟରୁ ଅଧିକାଂଶ କବିତାକୁ କବି ଓଡ଼ିଆରେ ଅନୁବାଦ କରିଛନ୍ତି । ଇଂରାଜୀ କବିତାର ଅବିକଳାନୁବାଦ ସ୍ୱରୂପ 'ନିର୍ବାସିତର ବିଳାପ' କବିତାଟିକୁ ଉଲ୍ଲେଖ କରାଯାଇପାରେ । Cowperଙ୍କ ରଚିତ 'The Solitude of Alexander Selkirk'ର ଏହା ଏକ ଅନୁବାଦ ମାତ୍ର । Alexander Selkerk ଜଣେ ନାବିକ । କୌଣସି କାରଣ ବଶତଃ ଜାହାଜ ଅଧକ୍ଷଙ୍କ ସହିତ ତର୍କବିତର୍କ ହେବାରୁ ତାଙ୍କୁ ଜୁଆନ୍ ପାର୍ଣ୍ଣାଣ୍ଡେଜ୍ ନାମକ ଏକ ନିର୍ଜ୍ଜନ ଦ୍ୱୀପରେ ନିର୍ବାସିତ ହେବାକୁ ହୋଇଥିଲା । ମନୁଷ୍ୟ ସମାଜ ବିଚ୍ୟୁତ ହୋଇ କିପରି ଆର୍ତ୍ତନାଦ କରେ ତାହାହିଁ ଉଭୟ କବିତାର କଥାବସ୍ତୁ । Alexander Selkirkଙ୍କ ପରି ଏକ ନିର୍ବାସିତ ବ୍ୟକ୍ତିର ମନୋଭାବକୁ ପ୍ରକାଶ କରିବାକୁ ଯାଇ William Cowper ତାଙ୍କ କବିତା 'The Solitude of Alexander Selkirk'ରେ ଲେଖିଛନ୍ତି—

"I am the monarch of all I survey,
My right there is none to dispute,
From the centre all round to the sea
I am lord of the fowl and the brute.
O solitude ! Where are the charms
That sages have seen in thy face ?
Better dwell in the midst of alarams
Than reign in the horrible place."

ଠିକ୍ ଏହି ମନୋଭାବକୁ ଓଡ଼ିଆରେ ଅନୁବାଦ କରିବାକୁ ଯାଇ କବି ମଧୁସୂଦନ 'ନିର୍ବାସିତର ବିଳାପ'ରେ ଲେଖିଛନ୍ତି—

"ଦେଖଇ ନେତ୍ର ଯାହା ଚହୁଦିଗର
ସେ ସବୁର ଅଟଇ ମୁଁ ଅଧୀଶ୍ୱର ।
ମହୀ ମଣ୍ଡଳେ ନାହିଁ ଏମନ୍ତ ଜନ
ମୋ ଅଧିକାର ଲୋଭେ କରିବ ରଣ ।
ଘୂରିଆଡ଼ରେ ନୀଳ ସମୁଦ୍ର ଯାଏ
ଫୁଲ ଫଳ ଶୋଭିତ ବନଲତାଏ ।
କୀଟ ପତଙ୍ଗ ପକ୍ଷୀ କେତେକି କହି
ପଶୁ ସୃଷ୍ଟି ଯେତେକ ସବୁ ମୋହରି ।
ବିଜନତା କାହିଁ ତୋ ବେଶ ମୋହନ
ଯେ ବେଶେ ମୋହିଲୁ ତୁ ମୁନି ନୟନ ।
ବରଂ ନିବାସ ଭଲ ରଣ କ୍ଷେତ୍ରରେ
ଭୟରେ ସଦା ଯହିଁ ହୃଦୟ ଥରେ ।
କିନ୍ତୁ ଏ ଭୀମ ସ୍ଥଳେ ରାଜ୍ୟ ପ୍ରାପତି
ଅଟଇ ମୋ ବିଚାରରେ ଅଧମ ଗତି ।"

ଉପର୍ଯ୍ୟୁକ୍ତ ଅନୁବାଦକୁ ଆଲୋଚନା କଲେ ଜଣାଯାଏ ଯେ କବି ମଧୁସୂଦନଙ୍କ ଅନୁବାଦ 'ନିର୍ବାସିତର ବିଳାପ' William Cowperଙ୍କ

ଲିଖିତ 'The solitude of Alexander Selkirk'ର ଆକ୍ଷରିକ ଅନୁବାଦ ନ ହୋଇଥିଲେ ମଧ୍ୟ ଅନୁବାଦଟି ଯଥେଷ୍ଟ ଶିକ୍ଷଣୀୟ, ଭାବପୂର୍ଣ୍ଣ, ଭକ୍ତି ରସାତ୍ମକ ଓ ଉଚ୍ଚକୋଟୀର ଏଥିରେ ସନ୍ଦେହର ଅବକାଶ ନାହିଁ ।

ପ୍ରୟୋଗର ଅନୁପାତ, ବିନ୍ୟାସର ପରିଧିତା, ଗଠନର ରୁଚିସମ୍ପନ୍ନତା ସ୍ଥୂଳତଃ ମାର୍ଜିତ ଭାଷାର ବିଶୁଦ୍ଧ ଯନ୍ତ୍ରନସ୍ତମ ଓ ଶବ୍ଦ ବିନ୍ୟାସରେ ମହାସ୍ଥାନ ସଙ୍ଗୀତର ଦ୍ୟୋତକ ପ୍ରଭୃତି ମଧୁସୂଦନଙ୍କ ସାହିତ୍ୟର ବୈଶିଷ୍ଟ୍ୟ ହେଲେ ମଧ୍ୟ ଅନୁବାଦକ ହିସାବରେ ତାଙ୍କ "ସାହିତ୍ୟ ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବର ଏକ ମନୋଜ୍ଞ ମଧୁଭଣ୍ଡାର" ଏ କଥା ଯେକେହି ମୁକ୍ତ କଣ୍ଠରେ ସ୍ୱୀକାର କରିବ । ☐☐☐

# ସହାୟକ ଗ୍ରନ୍ଥସୂଚୀ


୧ । ମଧୁସୂଦନ ଗ୍ରନ୍ଥାବଳୀ—ଅଧ୍ୟାପକ ଶ୍ରୀ ଚନ୍ଦ୍ରମଣି ଦାଶ

୨ । ମଧୁସୂଦନ ଗ୍ରନ୍ଥାବଳୀ—ପ୍ରକାଶକ ଶ୍ରୀ ଅନନ୍ତ ମିଶ୍ର

୩ । ଭକ୍ତକବି ମଧୁସୂଦନ—ସଂକଳକ ଶ୍ରୀ ବ୍ରଜମୋହନ ମହାନ୍ତି

୪ । କୁସୁମାଞ୍ଜଳି ଆଲୋଚନା—ଆଲୋଚକ ଅଧ୍ୟାପକ ଶ୍ରୀ ଅସିତ କବି

୫ । କୁସୁମାଞ୍ଜଳି—ସମ୍ପାଦନା—ଅଧ୍ୟାପକ ଡକ୍ଟର ଦେବେନ୍ଦ୍ରନାଥ ମହାନ୍ତି

୬ । ଓଡ଼ିଆ ଭାଷା ଓ ସାହିତ୍ୟ—ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସ

୭ । ଓଡ଼ିଆ ସାହିତ୍ୟର ଇତିହାସ—
ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ( ଗବେଷଣା ପୁସ୍ତକ )

୮ । 'ଝଙ୍କାର' ପଞ୍ଚମ ବର୍ଷ ଅଷ୍ଟମ ସଂଖ୍ୟାର—ଓଡ଼ିଆ କବିତାରେ 'ମାଟି'
—ଅଧ୍ୟାପକ ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

୯ । ସାମୟିକ ସାହିତ୍ୟ ସମୀକ୍ଷା—ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ

୧୦ । ସାହିତ୍ୟିକ ଦିଗ୍‌ଦର୍ଶନ—ଅଧ୍ୟାପକ ଡକ୍ଟର ବାସୁଦେବ ସାହୁ ।



Grantha Prakasini, Cuttack-1

ଖ୍ରୀଷ୍ଟ
ମହାବିଦ୍ୟାଳୟ
କଟକ

# ସୃଷ୍ଟି ଓ ସମୀକ୍ଷା

୧୯୮୦-୮୧